ହାଟପାପୁଲିରେ ଜୀବନ
ଡ. ବାସନ୍ତୀ ମହାନ୍ତିଙ୍କ ଗଳ୍ପ ସଂକଳନ

ପ୍ରକାଶକ : ଟା ଇ ମ୍ ପା ସ୍

ପ୍ରଥମ ସଂସ୍କରଣ : ୨୦୧୯



**hâtapâpulire jiban**
*an anthology of odia short-stories* by
**dr basanti mohanty**

published & printed by **timepass**
950 (P), green villa, nk marg, baramunda, bhubaneswar

cover design : saroj bal
first impression : 2019

₹ 145.00

## ଗ ଳ୍ପ କ୍ର ମ

# ହାତପାପୁଲିରେ ଜୀବନ

ସୁନାଧର ବାତ୍ୟା ବିଧ୍ୱସ୍ତ ତାଳ ଖଣ୍ଡେ ପରି ଅଜାଡି ହୋଇପଡିଲା ତା ଅନୁଛ ମାଟପିଣ୍ଡା ଉପରେ। ତା ଫୁଙ୍ଗୁଳା ପିଠି ଛୁଉଁଥିଲା ସମ୍ପାରୀ ହାତରେ ନିଚିପର କରି ଲିପା ପୋଛା ହୋଇଥିବା ମାଟି କାନ୍ଥ। କାନ୍ଥଟା ତାକୁ ସମ୍ପାରି ପାପୁଲିର ଆଶ୍ୱାସ ପରି ମନେ ହେଲା। ତାରି ନିପୁଣ ହସ୍ତ ଚାଳନାରେ ତ ଏ ଘର ହସି ଉଠୁଥିଲା। ବଣରୁ ତୋଳି ଆଣିଥିବା ହରିଡାକୁ ପୋଡି ସେଥିରେ ପାଳ ପାଉଁଶ ଗୋବର ମାଟି ମିଶେଇ ସେ କେତେ ଚିକ୍କଣ କରି ଘର ଲିପୁଥିଲା। ତା ପାଞ୍ଚ ଆଙ୍ଗୁଳିର ଟିପରେ ହାଲ୍‌କା କରି ସେ କଞ୍ଚାମାଟିକୁ ଏମିତି ଲିପି ଦେଇଛି ଯେ ଦାଣ୍ଡଗଲା ଲୋକ ବି ଦଣ୍ଡେ ଫେରି ଚାହିଁବ। ସୁନାଧର ତାର ଶିଥିଳ ପାପୁଲି ଥରେ ବୁଲେଇ ଆଣିଲା କାନ୍ଥରେ। ସମ୍ପାରୀର ମାଟି ଗୋବର ହାତ ଆଉ ଏଠି ବାଜିବ ନାହିଁ। ତା ହାତର ଝାଡୁ ଆଉ ଏ ଅଗଣାର ମଇଳାକୁ ପଦାକୁ ନେବ ନାହିଁ। ଘରର ନୁଆଁଣିଆ ଛଳ ଉପରକୁ ଲାଉଗଛ ଡଙ୍କେଇଲାଣି, ଫୁଲ କଷି ଧରିବ। ଜହ୍ନି କାକୁଡି ଗଛ ବାଡକୁ ଛୁଇଁଲାଣି। ମଞ୍ଚା ଉପରେ କୁନ୍ଦୁରୀ ଲଟା ଶୂନ୍ୟ ଦୃଷ୍ଟିରେ ଚାହିଁ ରହିଛି ଆକାଶକୁ। ଲଙ୍କା ଗଛଟିରେ ଫୁଲ କଷି ଲଦି ହୋଇ ପଡିଲାଣି। ସମ୍ପାରୀ ନିଜ ହାତରେ

ଏସବୁ ଲଗେଇଥିଲା। ଫଳ ତୋଳିବା ପାଇଁ ସେ ରହିଲାନି। ସିଏ ତ ଗଲା ତା ସଙ୍ଗେ ସଙ୍ଗେ ଛୁଆ ଦୁଇଟା ବି ଚାଲିଗଲେ। ନିଜକୁ ଧିକ୍କାରୀ ହେଉଥିଲା ସୁନାଧର। କି ସୁଖ ଆଉ ତାକୁ ଜୀବନ ଦେବ ଯେ ସେ ବଞ୍ଚି କି ଫେରିଆସିଲା।

ଭାଗ୍ୟକୁ ତୁମା ଦେବତାଙ୍କୁ ସୁନାଧର ଅଭିଶାପ ଦେଉଥିଲା। ତାରି ଆଖି ଆଗରେ ମାଆ ଛୁଆ ତିନିଟା ଚାଲି ଗଲା ପରେ ଏମାନେ କାହିଁକି ତାକୁ ବଞ୍ଚେଇ ରଖିଛନ୍ତି ସେ ଆଦୌ ବୁଝି ପାରୁନଥିଲା। ବରଂ ସମ୍ବାରୀ ଓ ଛୁଆ ଦୁଇଟାଙ୍କ ଜାଗାରେ ତାର ଯଦି ମରଣ ହୋଇଥାନ୍ତା କିଛି ଫରକ୍ ପଡିନଥାନ୍ତା। ବଞ୍ଚି ରହି କାହାର ଉପକାରରେ ବା ସେ ଆସୁଥିଲା! ରାତି ପାହିଲେ ସମ୍ବାରୀକୁ ଗୁଡାଏ ଅଶ୍ଳୀଳ ଗାଳି ବର୍ଷଣ ଓ ଛୁଆ ଦୁଇଟାଙ୍କ ଉପରେ ଓ ଖେଙ୍କି କୁକୁର ପରି ହେବା ବ୍ୟତୀତ ପରିବାର ପ୍ରତି ତାର କି ଅବଦାନ ଥିଲା ଯେ। ସମ୍ବାରୀ ଓ ଛୁଆ ଦି'ଟା ତାକୁ ଝୁରି ହେଇଥାନ୍ତେ! ତା ପାଇଁ ତାଙ୍କ ସଂସାର ଅଟକି ଯାଇଥା'ନ୍ତା! ନିଜେ ଯାହା ରୋଜଗାର କରିଆଣୁଥିଲା ତ ତା ମଦପାଣିରୁ ନିଅଣ୍ଟ। କୋଉ ଦିନ ମଦପାଣି ପାଇଁ ପଇସା ନାହିଁ ତ ସମ୍ବାରୀ ଉପରେ ଫଁ ଫଁ। ବେଳ ପଡିଲେ ତାକୁ ବିଧାଏ ଚାପୁଡାଏ କି ଲାତଟାଏ ବି ମହଙ୍ଗା ପଡୁନଥିଲା। ସହି ଯାଉଥିଲା ସମ୍ବାରୀ। ତିନିବେଳେ ତିନି କଂସା ସୁନାଧର ଆଗରେ ବାଢ଼ି ଥୋଉ ଥିଲେ ବି ସୁନାଧରର ଅସ୍ତିତ୍ୱକୁ ଅସ୍ୱୀକାର କରି ତା ସଂସାରକୁ ଚଳେଇ ନେଉଥିଲା ସମ୍ବାରୀ। ତା ପୁରୁଷ ପଣର ସବୁ ଅଦଉତିକୁ ସହି ନେଉଥିଲା। ସୁନାଧର ଭାବୁଥିଲା ସମ୍ବାରୀ କଥା। ତା ଛୁଆ ଦୁଇଟାଙ୍କ କଥା। ଯେତେବେଳେ ସେମାନେ ସୁନାଧରର ଗହିଁବା ପଣକୁ ଝୁରି ହେଉଥିଲେ, ସୁନାଧରର ଆବଶ୍ୟକତାକୁ ନିବିଡ ଭାବରେ ଅନୁଭବ କରୁଥିଲେ ସୁନାଧର ସେମାନଙ୍କଠୁଁ ରହିଲା ଦୂରରେ। ସୁଖ ଦୁଃଖର ସାଥି ହୋଇ ପାରିଲାନି। ସହୁକାର ଘରେ ସପ୍ତାହକରୁ ଛଅଦିନ ଗଧ ଖଟଣି ଖଟିଲା ପରେ ଯେଉଁ ଗୋଟିଏ ଦିନ ଛୁଟି ମିଳୁଥିଲା ସେଦିନ ତା ପାରିଶ୍ରମିକ ହିସାବରେ ସାଉକାର ଟଙ୍କା ପାଞ୍ଚଶହ ଧରେଇ ଦେଉଥିଲା ତା ହାତରେ। ସେତକ ଧରି ସେ ସିଧା ଆସୁଥିଲା ଭାଟିକୁ। ସପ୍ତାହକ ଯାକର ପଇସା ତୁଟେଇ ଦେଇ ସେ ବଳିଥିବା ଦୁଇଶହ ଟଙ୍କାରୁ ଟଙ୍କା ଶହେଟା ବଢ଼େଇ ଦିଏ ଶୁଣ୍ଢୀ ସାଉକାର ହାତକୁ। ନଗଦ ପଇସା ଦେଇ ସେଦିନ ସେ ରାଜାପରି ପିଏ। ଅନ୍ୟ ଦିନମାନଙ୍କ ପରି ସେ ସାଉକାର ପାଖରେ ନାଉଲି ଛାଉଲି ହୁଏନାହିଁ। ସାଉକାରର ଘାଘଡା କଣ୍ଠରୁ ଉଦ୍‌ଗତ ଆଶ୍ରାବ୍ୟ ଗାଳି ବି ଶୁଣିବାକୁ ପଡେ ନାଇଁ। ସେମିତି ସେଇ ନିଶା ଟଳ ଟଳ ବିଛନ୍ଦ ପଦରେ ସେ ଏଇ ଝୁପୁଡି

କୁଡିଆ ପାଖରେ ପହଞ୍ଚେ। ସେତେବେଳକୁ ଛୁଆ ଗୁଡାକ ଶୋଇ ପଡିଥା'ନ୍ତି। କୋଉଦିନ ଯଦି ନିଶାଟିକେ ଉତ୍ତୁରି ଯାଇଥାଏ ତ ବାକି ଶହେ ଟଙ୍କା ସମ୍ଭାରୀ ହାତକୁ ବଢ଼େଇ ଦେଇ ସେ ତା ସାଙ୍ଗରେ ଦୁଃଖ ସୁଖ ହୁଏ। ସମ୍ଭାରୀ ବାଢ଼ିଥିବା ପେଜ ପାଣି ଟିକେ ତୁଣ୍ଡରେ ଦିଏ। ନହେଲେ ସେ ସେମିତି ଭୂଷ୍ କରି ଅଜାଡି ହୋଇ ପଡେ ପିଣ୍ଡାରେ। କେତେବେଳେ ରାତି ପାହେ ଜାଣିପାରେ ନାହିଁ। ସମ୍ଭାରୀ ରବେଇ ଖବେଇ ହୁଏ। ରଇଜଳା, ମରୁଡିଖିଆ, ମଦୁଆ, ଗାଡଶୁଆ, ବାଘଧରା ଆଦି କେତେ କ'ଣ ଶବ୍ଦ ବାଣ ତା ଉପରକୁ ଫିଙ୍ଗିଦିଏ। ତଥାପି ମଣିଷଟା ନଖାଇ ସେମିତି ଖାଡା ଖାଡା ଉପାସ ଶୋଇଲା ବୋଲି ସମ୍ଭାରୀର ମନ ଡହଳ ବିକଳ ହୁଏ। କେତେ ବାଗରେ କେତେ ଢ଼ଙ୍ଗରେ ତାକୁ ଟଳୁ ଉଠେଇବାକୁ ଚେଷ୍ଟା କରେ। ଅଜଗର ପରି ସେ ଖାଲି ଏପଟ ସେପଟ ହେଉଥାଏ। ହୁଁ ହାଁ ମାରୁଥାଏ ସିନା ଉଠେ ନାହିଁ କି ପାଟିରେ କିଛି ଦିଏନାହିଁ। ସେମିତି ଭୂଇଁଟା ଉପରେ କେତେବେଳେ ଚାରିକାତ ମେଲେଇ ତ କେତେବେଳେ କୁଙ୍କୁରୀ କାଙ୍କୁରୀ ହୋଇ ପଡୁଥାଏ। ହତାଶ ହୋଇ ସମ୍ଭାରୀ ଶେଷରେ ତା ଉପରେ ଦରଛିଣ୍ଡା ଚଦର ଖଣ୍ଡେ ଢ଼ାଙ୍କିଦିଏ। ଏମିତି ବିତେ ତାର ରାତି।

ସୁନାଧର ସ୍ମୃତି ରୋମନ୍ଥନ କରୁଥିଲା। ସେଦିନ କିନ୍ତୁ ସେ ବେହୋସ୍ ହୋଇ ଆସିନଥିଲା। ସମ୍ଭାରୀ କାଇଲା ପଡିଥିବାରୁ ସେ ଛୁଟି ମାଗି ଆଣିଥିଲା। ସେତେବେଳକୁ ଚାରିଦିନ ଜରରେ ସମ୍ଭାରୀ ଘୁମୁରୁଥିଲା। ଛୁଆମାନେ ତାଟକା ହୋଇ ବସିଥିଲେ। ବିଛଣାରୁ ଉଠିବାର ଶକ୍ତି ନଥିଲା ଦରମଲା ସମ୍ଭାରୀର। ସୁନାଧରକୁ କିଛି ବୁଦ୍ଧିବାଟ ଦିଶିଲା ନାହିଁ। ସେ ଧାଇଁଲା ପାଖଗାଁ ଡାକ୍ତରଖାନାକୁ। ଡାକ୍ତର ତ ନୁହେଁ, ଗାଁ ସ୍କୁଲର ମାଷ୍ଟର। ଡାକ୍ତରୀ ଗିରି କରେ। ଔଷଧ ଇଂଜେକ୍ସନ୍ ଦିଏ। ଛୋଟ ମୋଟ ବେମାରୀକୁ ଭଲ କରିଦିଏ। ତା ହାତରେ ବଟିକା ଦୁଇଚାରିଟା ଧରେଇ ଦେଇ କହିଲା, ମେଲେରିଆ ଜର ପରି ଲାଗୁଛି। ଜରଟା ବେଶିଦିନ ହେଲା ଧରିଲାଣି, ଇଂଜେକ୍ସନ୍ ଦୁଇ ତିନିଟା ଦେବାକୁ ହେବ। ଖାଇବା ପିଇବା ଅଭାବରୁ ସେ ଦୁର୍ବଳ ହୋଇପଡିଛି। ଭଲ କରି ଖିଆ ପିଆ କଲେ ସେ ଉଠିବସିବ। ସତକୁ ସତ ଔଷଧ ଇଂଜେକ୍ସନ୍‌ରେ ସମ୍ଭାରୀ ଦେହରୁ ଜର କମିଗଲା। କିନ୍ତୁ ଦୁର୍ବଳତା କମିଲା ନାହିଁ। ତା ଦେହ ଥରୁଥିଲା। ଚାଲବୁଲ୍ କରି ପାରୁନଥିଲା। କେବେ ବି ଘରକଥା ବୁଝୁନଥିବା ସୁନାଧର ତା ମୁହଁରେ କ'ଣ ଟିକେ ଦେବ ବୋଲି ବିଚଳିତ ହୋଇପଡିଲା। ଘର ଭିତରଟା ଦରାଣ୍ଡି ଦେଲ। ଟଙ୍କିକିଆ ଚାଉଳ କିଲେ ଦି କିଲେ

ଛଡା ଆଉ କୋଉଠି କିଛି ମିଳିଲା ନାହିଁ। ଚୁଲୀ ଉପରେ ଶିକାଟିଏ କରି ବାଉଁଶ ତାଟଟିରେ ତୁରୁଣ୍ଡା ଶୁଖୁଆ ଟଙ୍ଗେଇ ଥାଏ ସମ୍ବାରୀ। ଅନ୍ଧାରରେ ହାତ ବୁଲେଇ ଆଣିଲା। ମୁଣ୍ଡ କି ଲାଞ୍ଜ ଟିକିଏ ବି ପାଇଲା ନାହିଁ। ତେଲ ବୋତଲଟା ଅଣେଇ ହୋଇ ପଡିଛି। ଲୁଣ ଜାଗାଟି ବି ଖାଲି। ଆଉ ଲଙ୍କା ଫୁଟଣ କି ମସଲା ମସିଲି କଥା କିଏ ପଚାରୁଛି ? ସେ ଅଣ୍ଟାରେ ହାତ ମାରିଲା। ସାଉକାରଠୁଁ ଆଗତ କାଢ଼ିଆ କରି ଆଣିଥିବା ତିନିଶହ ଟଙ୍କାରୁ ସମ୍ବାରୀର ଔଷଧ, ଇଂଜେକ୍ସନ୍ ଆଉ ପାଉଣା ବାବଦକୁ ଦୁଇଶହ ପଚାଶଟଙ୍କା ଦେଇ ସାରିଲାଣି। ନଅ ବରଷର ଝିଅ ହାତକୁ ଟଙ୍କା କୋଡିଏଟା ବଢ଼େଇ ଦେଇ କହିଲା, "ଯା ଦୋକାନରୁ ଲଙ୍କାଲୁଣ ତେଲ, ପିଆଜ, ପାଞ୍ଚଟଙ୍କା ଲେଖାଁର ଆଣି ରଖିଥିବୁ। ମୁଁ ଯାଉଛି ବଣକୁ। ଚଢ଼େଇପଡା (କାଇଅଣ୍ଡା) ପୁଞ୍ଜିଏ ଆଣିଲେ ତୋ ମାଆକୁ ପଥିଟିକେ ରାନ୍ଧିକି ଦେବା। ତୁ ଭାତ ବସେଇ ଦେଇଥିବୁ।"

କାନ୍ଧରେ ଟାଙ୍ଗିଆଟା ପକେଇ ବାହାରିଗଲା ସୁନାଧର। ଚଇତି ମାସିଆ ଦିନ। ସୁରୁଜ ଦେବତା ଢ଼ଳିବାକୁ ବସିଲେଣି। ଏ ପଟରେ ମେଘ ଖଣ୍ଡେ ଉଠେଇଛି। କାଳେ ଅଦିନିଆ ମେଘଟା ବର୍ଷିଯିବ। ତା ପୂର୍ବରୁ ସେ ଫେରି ଆସିବ। ଦୁଇ ଚଢ଼େଇକଟା କାଇବସା ହାଣି ତଳକୁ ଖସେଇ ଦେଲେ କାମ ବଡିଯିବ। ସେ ପାଦର ଗତି ବଢ଼େଇ ଦେଲା।

ଗାଁ ଶେଷ ମୁଣ୍ଡରେ ମଶାଣି ପଦା। ତାକୁ ଅତିକ୍ରମ କରି ଆଗକୁ ଯିବାକୁ ହେବ। ଗାଁ ମଶାଣି, ତିନିଗାଁ ପାଣି। ଭାରି ଭୟଙ୍କର। ସୁନାଧରର ସଶଙ୍କ ଦୃଷ୍ଟିଟିଏ ଲମ୍ବିଗଲା ମଶାଣି ପଦା ଆଡେ। ଭୟ ପରିବର୍ତ୍ତେ ଗୋଟିଏ ଉଲ୍ଲାସ ଭାବ ତାକୁ ବିହ୍ୱଳିତ କରିଦେଲା। ଗୋଟାଏ ଧୋବ ଫରଫର ଜନ୍ତୁଟିଏ ଚଢ଼େଇକାତ ମେଲେଇ ପଡିଛି। ଏଇ ସଙ୍ଗେ ସଙ୍ଗେ ବୋଧହୁଏ, କିଏ ଫିଙ୍ଗିଦେଇ ଯାଇଛି। ଶ୍ୱାନ ଶୃଗାଳ କି କାଉ କୁକୁର ବି ତାର ଟେର୍ ପାଇନାହାଁନ୍ତି। ସେ ଚଢ଼େଇ ଆଡକୁ ଗୋଟାଏ ସତର୍କ ଦୃଷ୍ଟି ବୁଲେଇ ଆଣିଲା। କେହି କୁଆଡ଼େ ଦିଶୁ ନାହାଁନ୍ତି। ଧୀରେ ଧୀରେ ତା ଗତିପଥ ବଦଳେଇ ସେ ସେଇ ଆଡକୁ ଆଗେଇଲା। ଏକଦମ୍ ସଦ୍ୟ ମରିଥିବା ଗାଈଟା। ଗୋଟାଏ ଉଦ୍ଦାମ ଆନନ୍ଦରେ ସେ କୁରୁଳି ଉଠିଲା। କାନ୍ଧରେ ଲଟକେଇଥିବା ଟାଙ୍ଗିଆଟା ଆଣି ଦୁଇ ପାପୁଲିରେ ମୁଠେଇ ଧରିଲା। ଗାଈଟାର ପେଟକୁ ଲକ୍ଷ୍ୟ କରି ଦୁଇ ଚଢ଼େଇ ଚୋଟ ବସେଇ ଦେଲା। କଡ ମଡ ହେଇ ପଞ୍ଜରା ହାଡ ଗୁଡାକ ଖଣ୍ଡ ବିଖଣ୍ଡିତ ହୋଇଗଲା। ଟାଙ୍ଗିଆଟା ତଳେ ଫିଙ୍ଗି ଦେଇ ତାରି ଉପରେ ସେ

ନଇଁ ପଡିଲା । ଟାଙ୍ଗିଆ ଚେଟରେ କ୍ଷତାକ୍ତ ହୋଇଥିବା ଜାଗାରେ ସେ କହୁଣୀ ପର୍ଯ୍ୟନ୍ତ ଡାହାଣ ହାତଟା ଭର୍ତ୍ତି କରିଦେଲା । ଭିତରେ ତାର ଅଭ୍ୟସ୍ତ ପାପୁଲିଟା ଦରାଣ୍ଡି ଦେଇଗଲା କିଛି ସମୟ । ଓଃ-ଇଉରେକ୍କା ଇଉରେକ୍କା । ସୁନାଧର ପାଇଗଲା ତାର ବାଞ୍ଛିତ ବସ୍ତୁ । କଙ୍କଡା ଗାତରୁ କଙ୍କଡା ଟାଣି ଆଣିବା ପରି କଅଁଳ ଥଲ୍‌ଥଲ୍ ହେଉଥିବା ଲାଲ୍ ଟହ ଟହ କଲିଜାଟାକୁ ସେ ବାହାରକୁ ବାହାର କରିଆଣିଲା । ଗୋଟାଏ ଆତତାୟୀର ହାତପରି ସୁନାଧରର କହୁଣି ପାଖରୁ ପାପୁଲି ପର୍ଯ୍ୟନ୍ତ ରକ୍ତାକ୍ତ ଦିଶୁଥିଲା । ସେ ମୁଠେଇ ଧରିଥିବା କଲିଜାରୁ ବୋହି ପଡୁଥିବା ଥପ୍ ଥପ୍ ରକ୍ତରେ ଭିଜିଯାଇଥିଲା ମାଟି । କଲିଜାଟାକୁ ମଲା ଗୋରୁ ଉପରେ ଥୋଇ ନଇଁ ପଡି ରକ୍ତବୋଳା ହାତଟା ଘାସ ଉପରେ ଏପଟ ସେପଟ କରି ଘସିଦେଲା । ବଣ ବୁଦା ଆଡକୁ ମାଡି ଯାଇ ଦୁଇ ଚାରିଟା ଶିଆଳୀପତ୍ର ତୋଳି ଆଣିଲା । ଅଣ୍ଟାରୁ ଗାମୁଛାଟା ଖୋଲି ସେ ତଳେ ବିଛେଇ ଦେଲା । ତା ଉପରେ ଶିଆଳୀ ପତ୍ର ପାରିଦେଲା । ତା' ଉପରେ କଲିଜାଟାକୁ ରଖି ଗାମୁଛାରେ ଗଣ୍ଠିଟା ପକେଇ ଦେଲା । ଟାଙ୍ଗିଆଟାକୁ ବି ଭଲକରି ପୋଛି ଦେଲା ଘାସ ଉପରେ ।

ସୁନାଧରକୁ ଆଉ ଝପଡା ସଂଗ୍ରହ କରିବାକୁ ପଡିଲା ନାହିଁ କି ବଣକୁ ଯିବା ଆବଶ୍ୟକ ହେଲାନାହିଁ । ତର ତର ପାଦରେ ସେ ସିଧା ଗାଁ ମୁହାଁ ହେଲା । ଗାଁ ମୁଣ୍ଡ ବରଗଛ ପାଖରେ ହୋଇଚି କି ନାହିଁ କୋଉଠି ଥିଲେ ଦୁଇଟା ବୁଲା କୁକୁର, ଗୋଟାଏ କଳା ଗୋଟାଏ ଛଉକା, ତା ପଛେ ପଛେ ଧାଇଁଲେ । ତା ଆଗପଛ ଚକ୍କର କାଟିଲେ । ସେ ଗାମୁଛାରେ ବାନ୍ଧି ହାତରେ ଓହଳେଇ ଥିବା ବସ୍ତୁଟି ପ୍ରତି ଆକର୍ଷିତ ହୋଇ ଶୁଙ୍ଘିବାକୁ ଲାଗିଲେ । ସୁନାଧର ଗାମୁଛାଟି କାନ୍ଧ ଉପରେ ଥୋଇ ଦେଲା । ତଥାପି କୁକୁର ଦୁଇଟା ନଛୋଡ ବନ୍ଧା । କୁଁ କୁଁ ହୋଇ ଆଗ ଗୋଡ ଟେକି କେତେବେଳେ ଆଗରୁ ତ କେତେବେଳେ ପଛରୁ ତା କାନ୍ଧ ଉପରକୁ ଚଢ଼ିଯିବା ପାଇଁ ଚେଷ୍ଟା ଚଳେଇଲେ । ସୁନାଧର ପ୍ରାଣପଣେ ସେମାନଙ୍କ କବଳରୁ ପୁଟୁଳିଟିକୁ ବଞ୍ଚେଇବାକୁ ଚେଷ୍ଟା କଲା । ସୁନାଧରର ହେଇକ୍ ହେଇକ୍ ଯାଃ-ଯାଃ ଭାକ୍ ଶଳା ଭାକ୍ - ଆଦି ଶବ୍ଦ ସେମାନଙ୍କ ଉପରେ କିଛି ପ୍ରଭାବ ପକାଇଲା ପରି ଅନୁଭୂତ ହେଲାନାହିଁ । ବରଂ ତା ବାଟ ଓଗାଳି ତାକୁ ଆହୁରି ଅତିଷ୍ଠ କରିଦେଲେ । ଦଳେ ମହୁମାଛି କବଳରୁ ପ୍ରାଣ ରକ୍ଷା କଲାପରି କେତେବେଳେ ଆଗକୁ ତ କେତେବେଳେ ପଛକୁ ପୁଣି କେତେବେଳେ ବାମକୁ ତ ପୁଣି କେତେବେଳେ ଡାହାଣକୁ ମାଡିଯାଇ ଆତ୍ମରକ୍ଷା କରୁଥିଲା ସୁନାଧର ।

ଶେଷରେ ତା କୁଡ଼ିଆ ପାଖରେ ସେ ପହଞ୍ଚିଗଲା। ସେତେବେଳକୁ ସେ ସଂପୂର୍ଣ୍ଣ ଆଣନିଃଶ୍ୱାସୀ ହୋଇସାରିଥିଲା। ପ୍ରାଣ ବିକଳରେ ଡିଆଁଟାଏ ମାରି ସେ ତା ଝୁପୁଡ଼ି କୁଡ଼ିଆ ଭିତରକୁ ପଶିଗଲା। ତାଟି କବାଟଟା ଆଉଜେଇ ଆଣି ପଛପଟୁ ତାକୁ ଚପି ଧରିଲା। ଦାଣ୍ଡ ଦୁଆର ମୁହଁରେ କୁକୁର ଦୁଇଟା କିଛି ସମୟ ଭୋ ଭୋ ହୋଇ ସେମାନଙ୍କ ନିଷ୍ଫଳ କ୍ରୋଧ ଉଦ୍‌ଗୀରଣ କଲେ ଓ ନିରାଶ ହୋଇ ଯେ ଯାହା ବାଟରେ ଚାଲିଗଲେ।

ସମ୍ବାରୀ ଓ ଛୁଆ ଦୁଇଟା ଆଶ୍ଚର୍ଯ୍ୟ ହୋଇ ଦେଖୁଥିଲେ ସୁନାଧରକୁ। ସୁନାଧର ସିଧା ଚୁଲି ପାଖକୁ ଗଲା ଓ ଗାମୁଛାର ଗଣ୍ଠି ଖୋଲୁ ଖୋଲୁ ଝିଅକୁ ଥାଳିଟାଏ ଆଣିବାକୁ କହିଲା।

ରାତିରେ ସୁନାଧର ସମ୍ବାରୀକୁ ବଳେଇ ବଳେଇ ଖୁଆଇଲା ଗୋରୁ କଲିଜାର ତରକାରୀ। ଗୋରୁ କଲିଜା ପେଟରେ ପଡୁ ପଡୁ ବପୁ। କେତେଦିନର ଭୋକିଲା ପେଟ ଓ ଜଗୁଆ ପାଟିକୁ ଭାରି ଭଲ ଲାଗିଲା ସମ୍ବାରିକି। ଛୁଆ ଦୁଇଟାଙ୍କ ସହ ସୁନାଧର ବି ମନଭରି ଖାଇଥିଲା। ବହୁଦିନ ପରେ ଘରେ ପେଟପୁରା ଖାଇଥିଲେ ସମସ୍ତେ। ପରିବାରକୁ କେବେ କିଛି ଭଲମନ୍ଦ ଦେଇ ପାରୁନଥିବା ସୁନାଧର ଆତ୍ମତୃପ୍ତିରେ ଉତ୍‌ଫୁଲ୍ଲିତ ହୋଇ ପଡୁଥିଲା।

ସୁନାଧରର ମନେ ପଡୁଥିଲା। ସେଦିନ ରାତିରେ ସେ ତା ଛୁଆ ଦୁଇଟାଙ୍କୁ ଢ଼େର୍ ରାତି ପର୍ଯ୍ୟନ୍ତ ଗେହ୍ଲା କରିଥିଲା। ସମ୍ବାରୀକୁ ବି ବିଳମ୍ବିତ ରାତ୍ରି ପର୍ଯ୍ୟନ୍ତ ଶୁଆଇ ଦେଇ ନଥିଲା। ଘର ସଂସାରର ଦାୟିତ୍ୱ, ପରିବାରର ମୋହ ଯେ ଏତେ ଆନନ୍ଦଦାୟୀ, ଏତେ ପ୍ରାଣ ଉଲ୍ଲାସକାରୀ, ଏତେ ଆବେଗପୂର୍ଣ୍ଣ ସେ ସେଇ ପ୍ରଥମଥର ଯେମିତି ଅନୁଭବ କଲା। ଖୁସିରେ ଅଧିର ହୋଇପଡିଲା। ସ୍ତ୍ରୀ ଓ ପିଲା ଟୋକୀଙ୍କ ପ୍ରତି ତାର ଦାୟିତ୍ୱ ବୋଧ ଅଛି। କର୍ତ୍ତବ୍ୟ ଅଛି ସେମାନଙ୍କ ସୁଖ ଦୁଃଖରେ ସାମିଲ ହେବାର ଆବଶ୍ୟକତା ଅଛି ସେ ମୁହୂର୍ତ୍ତକ ପାଇଁ ଭୁଲିଗଲା ଯେସେ ସାହୁକାର ପାଖରେ ମୁଣ୍ଡ ବିକିଛି। ସାଉକାର ତାକୁ ଚିପୁଡି ନିଗାଡି କାମ ଆଦାୟ କରୁଛି। ଅଭିଭୂତ ହୋଇ ସେ ଖୁବ୍ ଉପଭୋଗ କରିଥିଲା ସମ୍ବାରୀର ପ୍ରେମ ଭଲପାଇବା, ଛୁଆ ଦୁଇଟାଙ୍କର ମମତାରେ ସେ ବାନ୍ଧି ହୋଇ ପଡିଥିଲା। ମଦ ନିଶାରେ ସେ ସେମାନଙ୍କୁ ବହୁତ ହିନସ୍ଥା କରିଛି। ଅବହେଳା ଅନାଦର କରିଛି। ଅଣଦେଖା କରିଛି। ଆଉ ନୁହେଁ, ସେ ଏଥର ଘରମୁହାଁ ହେବ ବୋଲି ରାଣ ଖାଇଲା ସମ୍ବାରୀ ପାଖରେ।

ତା ରାଣ ନିୟମକୁ ବିଧାତା ସହିଲା ନାହିଁ। ସେଇ ରାତିଟା ଯେମିତି ସୁନାଧର ପାଇଁ ଥିଲା ପ୍ରଳୟର ରାତ୍ରି। ସେଇ ରାତ୍ରି ତା ଜୀବନର ସବୁ ସୁଖଶାନ୍ତି ଗ୍ରାସିନେଇ ଯାଇଛି। ତା ସଂସାର ଉଜୁଡ଼ି ଯାଇଛି। ତା ପରିବାର ବିଧ୍ୱସ୍ତ ହୋଇଯାଇଛି।

ସୁନାଧରକୁ ସେଇ ପଛକଥାଗୁଡାକ ଅଜସ୍ର ପୀଡା ଦେଉଥିଲେ। ତାର ମୃତ୍ୟୁ କାହିଁକି ହେଲାନାହିଁ ବୋଲି ସେ ଡୁମା ଦେବତା ପାଖରେ ଅଭିଯୋଗ କରୁଥିଲା। ସେଇ ରାତିରେ ସୁଖ ସ୍ମୃତି ପରେ ତାର ବି ମୃତ୍ୟୁ ହେବାର ଥିଲା। କିନ୍ତୁ ସେ ମହାପାପୀ ବଞ୍ଚି ରହିଛି। ନିଜ ହାତରେ ନିଜ ପରିବାରର ଅନ୍ତ କରିଛି। ଦୁଇ ଦୁଇଟା ବାଲୁତ ଛୁଆ ଓ ମାଆର ମୃତ୍ୟୁର କାରଣ ସେ ନିଜେ ହୋଇଛି। ସେମାନଙ୍କ ପାଇଁ ଯମ ପାଲଟି ଯାଇଛି। ମାଆ ଛୁଆଙ୍କ ସହ ଯଦି ସେ ନିଜେ ଗ୍ଲିଯାଇଥାନ୍ତା ଏତେ ଯନ୍ତ୍ରଣା ଓ ଅନୁଶୋଚନାରେ ଦଗ୍ଧ ହୋଇନଥାନ୍ତା।

ତା ମସ୍ତକର କହରା କେଶକୁ ଦୁଇ ପାପୁଲିରେ ମୁଠେଇ ଧରି ଆର୍ତ୍ତ ବିଳାପଟିଏ କଲା ସୁନାଧର। ସେଇ କାଳରାତ୍ରୀର ପାହାନ୍ତା ପ୍ରହର। ଦୁଇ ତିନି ଘଣ୍ଟାର ଗଭୀର ସୁଷୁପ୍ତି ପରେ ପ୍ରଥମେ ଯନ୍ତ୍ରଣାରେ ଅତିଷ୍ଠ ହୋଇ ଚିତ୍କାର କରିଥିଲା ସମ୍ବାରୀ। ତା ପେଟରେ ଭୟଙ୍କର ଯନ୍ତ୍ରଣା। ସେ ଅସ୍ତବ୍ୟସ୍ତ ହୋଇପଡିଲା ତାପରେ ଜଣକ ପରେ ଜଣେ ଅସହ୍ୟ ପେଟ ଯନ୍ତ୍ରଣାରେ ଛୁଆ ଦୁଇଟା ଚିରି ଚିରେଇ ଉଠିଲେ। ବ୍ୟତିବ୍ୟସ୍ତ ହୋଇପଡିଲା ସୁନାଧର। ନିଜ ପେଟରେ ଅସହ୍ୟ ଯନ୍ତ୍ରଣା ସତ୍ତ୍ୱେ ପିଲାଙ୍କୁ ଓ ସମ୍ବାରୀକୁ ଆଶ୍ୱାସନା ଦେଇଥିଲା ସୁନାଧର। ରାତି ପାହିଲା ବେଳକୁ ଅବସ୍ଥା ଅସମ୍ଭାଳ ହୋଇପଡିଥିଲା। ପେଟରେ ଅସହ୍ୟ ଯନ୍ତ୍ରଣା ସହ ଝାଡା ଓ ବାନ୍ତି। ବାନ୍ତିରେ ରକ୍ତ। ପରିବାରଟା ଯାକ ଆକ୍ରାନ୍ତ। ଚହଳ ପଡିଗଲା ଗାଁରେ। ସ୍ୱାସ୍ଥ୍ୟକର୍ମୀ ଓ ଅଙ୍ଗନବାଡି କର୍ମୀଙ୍କ ସହାୟତାରେ ସେମାନଙ୍କୁ ଡାକ୍ତରଖାନାରେ ଭର୍ତ୍ତି କରାଗଲା। ସାଧାରଣ ଅଜୀର୍ଣ୍ଣ ଝାଡା ରୋଗ ଏ ନୁହେଁ। ଡାକ୍ତରମାନେ ବ୍ୟସ୍ତ ହୋଇ ପଡିଲେ। କାରଣ ଅନୁସନ୍ଧାନ ଗ୍ଲିଲା। ପରୀକ୍ଷା ନିରୀକ୍ଷା ହେଲା। ଝାଡା ପରିସ୍ରା ରକ୍ତ ସବୁ କିଛି ଯାଞ୍ଚ କରାଗଲା। ଡାକ୍ତରମାନଙ୍କ ଅକ୍ଳାନ୍ତ ପରିଶ୍ରମ ପରେ ନିଷ୍କର୍ଷ ବାହାରିଲା। ପରିବାରଟା ଯାକ ଆନ୍ଥ୍ରାକ୍ସ ରୋଗରେ ଆକ୍ରାନ୍ତ। ଆନ୍ଥ୍ରାକ୍ସ ରୋଗରେ ମୃତ ଗୋରୁ ମାଂସ ଖାଇ ପରିବାରଟି ଯାକ ଅର୍ଜନ କରିଛି ଏ ଦୁର୍ଭୋଗ।

ଘଟଣାଟା ବିଜୁଳି ପରି ଚ୍ଛରିଆଡେ ବ୍ୟାପିଗଲା। ଟି.ଭି. ରେଡ଼ିଓ ସମ୍ବାଦପତ୍ର ମାନଙ୍କରେ ସମ୍ବାଦ ରଚିଗଲା। ସାମ୍ବାଦିକମାନେ ଏନ୍.ଜି.ଓ.ମାନେ

ସମାଜସେବୀମାନେ ଡାକ୍ତରଖାନାକୁ ଧାଡି ଛୁଟିଲେ। ସୁନାଧରର ଓ ତା ସ୍ତ୍ରୀ ପିଲାମାନଙ୍କର ଫଟୋ ଉଠେଇ ନେଲେ। କେବେ ଟିଭି ଖବର କାଗଜ ଦେଖି ନଥିବା ସୁନାଧର ଓ ତା ପରିବାରର ଲୋକଙ୍କ ଛବି ଟିଭି ଓ ଖବର କାଗଜରେ ପ୍ରଦର୍ଶିତ ହେଲା। ରାଜ୍ୟ ସ୍ୱାସ୍ଥ୍ୟ ବିଭାଗ ତତ୍ପର ହୋଇ ଉଠିଲା। କିନ୍ତୁ ସମ୍ପାରୀ ଓ ତା ଛୁଆ ଦୁଇଟାଙ୍କୁ ବଞ୍ଚେଇ ପାରିଲା ନାହିଁ। ସେଇ ଡାକ୍ତରଖାନା ଶଯ୍ୟାରେ ହିଁ ସେମାନଙ୍କ ପ୍ରାଣବାୟୁ ଉଡିଗଲା। ଯମ ଦୁଆରୁ ଫେରି ଆସିଲା ସୁନାଧର।

ସୁନାଧର ଏବେ ଏତେବଡ ଦୁନିଆରେ ସଂପୂର୍ଣ୍ଣ ଏକାକୀ। ନିଜ ହାତରେ ନିଜ ବଂଶ ନିପାତ କରିଥିବା ଜହ୍ଲାଦଟିଏ ପରି ସେ ନିଜକୁ ଅନୁଭବ କଲା। ଡାକ୍ତର ନର୍ସ ସ୍ୱାସ୍ଥ୍ୟକର୍ମୀମାନେ ତା ଶରୀରକୁ ଆନ୍ତ୍ରାକ୍ସ ଜୀବାଣୁ ମୁକ୍ତ କରିଥିଲେ କିନ୍ତୁ ତା ଚେତନା ସ୍ତରରେ ତାକୁ ଅସ୍ଥିର କରୁଥିବା ଆନ୍ଥ୍ରାକ୍ସ ଜୀବାଣୁ ସଂପର୍କରେ ଟେର୍ ପାଇନଥିଲେ। ତାର ଅନ୍ତର୍ବେଦନା ବୃଦ୍ଧି ପାଉଥିଲା। ସେ ବିଚଳିତ ହୋଇ ମାନସିକ ଭାରସାମ୍ୟ ହରେଇ ବସୁଥିଲା କ୍ରମଶଃ। ଯନ୍ତ୍ରଣା ସନ୍ତୁଳିତ ଗ୍ରପକୁ ସେ ଆଉ ସମ୍ଭାଳି ପାରିଲାନାହିଁ। ପାଙ୍ଗିଣି ଲାଗିବା ପରି ସେ ଉଠି ପଡିଲା ଓ ଶୂନ୍ୟ ଆକାଶକୁ ଚାହିଁ ଚିତ୍କାର କରି ଉଠିଲା- ମୁଁ ସୁନାଧର ଟାକ୍ରି। ମୁଁ ଖୁନୀ। ମୁଁ ମଣିଷ ମାରୁ। ମୁଁ ମୋ ମାଇଜୀକୁ ମାରିଛି। ମୋ ପିଲାଟୋକୀଙ୍କୁ ମାରିଛି। ମୁଁ ପାପୀ। ମୁଁ ଅପରାଧୀ। ମତେ ଦଣ୍ଡଦିଅ ହେ ତୁମା ଦେବତା ମାନେ। ମତେ ଅଭିଶାପ ଦିଅ। ମତେ ବାଘଧରୁ। ମତେ ଭାଲୁ ଚଟୁ। ସାପ ଚବୁ। ଶେଷ ଆଡକୁ ସେ କ'ଣ କହୁଥିଲା କିଛି ବୁଝା ପଡୁନଥିଲା। କେବଳ ଶୁଭୁଥିଲା ହାଉ ହାଉ କାନ୍ଦଣା ପରି।

ସୁନାଧରର ଏ ଆର୍ତ୍ତି ତୁମା ଦେବତାଙ୍କ ପାଖରେ ପହଞ୍ଚୁଥିଲା କି ନାଇଁ କେଜାଣି ଗାଁ ଲୋକେ କିନ୍ତୁ ଶୁଣିବାକୁ ଚାହୁଁ ନଥିଲେ ଆଦୌ। ସେମାନେ ତାଟିକବାଟ ପକେଇ ଦେଇଥିଲେ। ଆବାଳ ବୃଦ୍ଧ ବନିତା ଦିଶୁଥିଲେ ଭୟାର୍ତ୍ତ। ଟିକିଏ ଅସତର୍କ ହେଲେ ଘରେ ଘରେ ପଶିଯିବ ଆନ୍ଥ୍ରାକ୍ସ ତୁମା। ଗାଁଟା ସାରା ବ୍ୟାପିଯିବ। ମଣିଷ ଶୂନ୍ୟ ହେଇଯିବ ଗାଁ। ସୁନାଧରର ଦୁଃଖ ଗାଁଟି ସାରା ଲୋକଙ୍କୁ ବେଦନା ବ୍ୟଥିତ କରିଦେଇଥିଲେ ବି କେହି ତା ପାଖ ମାଡୁ ନଥିଲେ। ତା ଘର ଆଡେ ମୁହଁ ଟେକି ଚାହୁଁ ନଥିଲେ। କୋଉ ମୁହୂର୍ତ୍ତରେ ସେ କାହାର ପ୍ରାଣ ପକ୍ଷୀଟା ନେଇ ଚାଲିଯିବ କିଏ ଜାଣିଛି ?

ସତକୁ ସତ ଦିନେ ଗାଁ ମୁଣ୍ଡ ବରଗଛ ଡାଳରେ ସୁନାଧରର ଶବ ଝୁଲୁଥିବାର ଆବିଷ୍କୃତ ହେଲା। ଶଙ୍କା ଗ୍ରସ୍ତ ଜନତା ସ୍ତବ୍ଧ ହୋଇ ଚାହିଁ ରହିଥିଲେ ସୁନାଧରର

ଉଲଗ୍ନ ଝୁଲନ୍ତା ଶବ ଆଡେ। ପିନ୍ଧା ଲୁଙ୍ଗିର ଗୋଟାଏ ପଟ ଫାଶ ହୋଇ ତା ବେକରେ ଗଳିଛି। ଅନ୍ୟ ପଟଟି ଶକ୍ତ ଭାବରେ ବନ୍ଧା ହୋଇଛି ଗଛ ଡାଳରେ। କାହାରି ମୁହଁରେ ଶବ୍ଦ ନାହିଁ। ସତେ ଯେମିତି ସମସ୍ତଙ୍କର ଜୀବନ ନାଟିକା ଏବେ ଏମିତି ସୂତାଖିଅରେ ଝୁଲୁଚି। ଗୋଟାଏ ଆସନ୍ନ ବିଭୀଷିକାର ପରିକଳ୍ପନାରେ ସମସ୍ତେ ଭୀତତ୍ରସ୍ତ ହୋଇ ପଡିଥିଲେ।

ରୋଗଶୋକ ଦୁଃଖ ଦୁର୍ଭୋଗରୁ ଗାଁ ଲୋକଙ୍କୁ ସର୍ବଦା ଅଭୟ ପ୍ରଦାନର ପ୍ରତିଶ୍ରୁତି ଦେଇ ଆସୁଥିବା ଦିଶାରୀ ବିଡ୍‌ବିଡ୍ ହୋଇ କହିଲା -

"ସେଇ ଆନ୍ଥ୍ରାକସ୍ ଡୁମାର କାମ"।

ଭୟାର୍ତ୍ତ ଦେଖଣା ହାରୀ ମୁଣ୍ଡଟିମାନ ଟୁଙ୍ଗାରି

ସମ୍ମତି ସୂଚକ ମତ ଦେଲେ - 'ହଇ ହଇ'।

# ମାଣ୍ଡିଆରାଣୀ ଉପାଖ୍ୟାନ

ମାଣ୍ଡିଆରାଣୀ ରାଇଜ ଛାଡ଼ି ଚାଲିଯାଉଥିଲା ଅଭିମାନରେ। ତାକୁ ସଭିଏ କାଳି କୁତୁରୀ, ଅସୁନ୍ଦରୀ, କୁଜୀ, କରୁପୀ କହୁଥିଲେ। କେହି ଭଲ ପାଉ ନଥିଲେ। ସମସ୍ତେ ଆଦର କରୁଥିଲେ ଧାନ ସୁନ୍ଦରୀକୁ। କେତେ ନିକ ଧାନରାଣୀ ! ଗୋରୀ, ଶ୍ୟାମଳୀ, ନାଲି ଟହ ଟହ କିଏ ଡେଙ୍ଗୀ ତ କିଏ ଗେଡ଼ୀ। କିଏ ପୁଣି ଗୁଣ୍ଡୁଣୀ ହାତୀ ପରି। ପୁଣି କିଏ କଳା ଜିରାପରି। ସମସ୍ତେ ମୋହିତ ହେଉଥିଲେ ରୂପ ରାଇଜର ରାଣୀ ଧାନ ସୁନ୍ଦରୀର ରୂପ ପଣରେ। ତାଙ୍କୁ ନେଇ ବେପାର ବଣିଜ କରୁଥିଲେ। ଖଣି ପକେଇ ରଖୁଥିଲେ। ଅମାରରେ ରଖୁଥିଲେ। ବର ଓଳିଆରେ ସାଇତି ରଖୁଥିଲେ। ଯାହା ପାଖରେ ବେଶି ଧାନ ଥିଲା, ତାକୁ କହୁଥିଲେ ଧନୀ। ମାଣ୍ଡିଆରାଣୀକୁ କେହି ଘେନା କରୁନଥିଲେ। ଦାସୀ ପୋଇଲି ପରି ସେ ଚାଲୁଥିଲା। ଦିନେ ଅଭିମାନରେ ସେ ଉଆସ ଛାଡ଼ି ଗଲା। ତାକୁ ବାଟ ଓଗାଳିଲେ ଲକ୍ଷ୍ମୀ ଠାକୁରାଣୀ। "କୁଆଡେ ଯାଉଚୁ ଲୋ ମାଣ୍ଡିଆରାଣୀ"। ଲକ୍ଷ୍ମୀ ଠାକୁରାଣୀ ପଚାରିଲେ। – ମାଣ୍ଡିଆରାଣୀ ଆଖିରୁ ଟପ୍‌ଟପ୍ ହୋଇ ଗଡ଼ି ପଡିଲା ଦିଧାର ପାଣି। ଲକ୍ଷ୍ମୀ ଠାକୁରାଣୀ ତା' ଆଖି ପୋଛିଦେଲେ। ତା ହାତ ଧରି କହିଲେ, ତିରିଲା ମଣିଷଟା କୁଆଡ଼େ

ଯିବୁ ଏକୁଟିଆ ? ଆ ମୋ ସାଙ୍ଗରେ। ମାଣ୍ଡିଆରାଣୀ ରହିଲା ଲକ୍ଷ୍ମୀ ଠାକୁରାଣୀ ଘରେ।

ଲକ୍ଷ୍ମୀ ଠାକୁରାଣୀ ମୁହଁ ମୋଡି ଦେଲେ। ଦେଶରେ ପଡିଲା ଅକାଳ। ବର୍ଷା ହେଲା ନାହିଁ, ଜମିରେ ଠିଆ ହୋଇଥିବା ଧାନଗଛ ସବୁ ସେମିତି ଠିଆ ଠିଆ ଜଳିଗଲେ। ମାଟି ଫାଟି ଆଁ କଲା। ଲୋକେ ଆକାଶକୁ ଚାହିଁ ହାୟ ହାୟ କଲେ। ସଞ୍ଚି ରଖିଥିବା ମହଣ ମହଣ ଧାନମାନ ସରିଆସିଲା। ଲୋକେ ଖୋଜିଲେ ମାଣ୍ଡିଆରାଣୀକୁ। ମାଣ୍ଡିଆରାଣୀ ଉଆସରେ ନଥିଲା। ଲୋକେ ହତାଶ ହେଲେ। ମାଣ୍ଡିଆରାଣୀ ଧାନ ରାଣୀପରି ଗେଲ ବସର ନୁହେଁ ଯେ ଗଜଦନ୍ତ ପଲଙ୍କରେ ଅଳସ ଭାଙ୍ଗିବ। ସିଏ ତ ଅଭାବୀ ଦୁଃଖି ଦରିଦ୍ରର ସାଥୀ। ଗରିବର ମାଆ ବାପ। ତେବେ ଏମିତି ଅକାଳରେ ସେ ଗଲା କୁଆଡେ ? ସିଏ ଚଢ଼େଇ ଚିରୁଗୁଣୀର ପେଟ କଥା ବୁଝେ। ଦୁଃଖିରଙ୍କୀଙ୍କର ଦୁଃଖରେ ସମଭାଗୀ ହୁଏ, ଏଇ ନିଅଣ୍ଟିଆ ବେଳେ ସିଏ ଥିଲେ କେତେ ସାହା ଭରସା ହୋଇଥା'ନ୍ତା। ସେ ଆଶା ଭରସା ବି ବୁଡିଲା। ସେତିକି ବେଳକୁ ଲକ୍ଷ୍ମୀଠାକୁରାଣୀ ସାଙ୍ଗରେ ଧରି ଆସିଲେ ମାଣ୍ଡିଆରାଣୀକି। ମାଣ୍ଡିଆରାଣୀକି ଅବହେଳା ଅଣଦେଖା କରୁଥିବା ଗର୍ବୀ ଅହଂକାରୀମାନଙ୍କୁ ଧିକ୍କାରିଲେ। ମାଣ୍ଡିଆରାଣୀ ସାଙ୍ଗରେ ଥିଲେ ତମମାନଙ୍କ ଅଭାବ ଅନଟନ ହେବନାହିଁ। ସକାଳୁ ମାଣ୍ଡିଆ ପେଜଟିକେ ପିଇଦେଲେ ଦିନସାରା ଭାତ ନଖାଇଲେ ବି ବାଧିବ ନାହିଁ ଭୋକର ଦାଉ। ଧାନପରି ମାଣ୍ଡିଆରୁ ବି ହବ ଭଳିକି ଭଳି ଖାଦ୍ୟ। ମାଣ୍ଡିଆ ଜାଉ, ମାଣ୍ଡିଆ ପିଠା, ମାଣ୍ଡିଆ ତମ୍ପା, ମାଣ୍ଡିଆ ଛତୁଆ, ମାଣ୍ଡିଆ ପେଜ ସବୁକିଛି। ଢ଼ିପ, ଖାଲ, ଅପାଣିଆ, ପାଣିଆ, ଡଙ୍ଗର ଜମି, ଢ଼ାଲୁ ଜମି ସବୁଠି ସିଏ ପାଦ ଥୋଇବ। ହସି ଖୁସି ଖେଳିବ। ଅଜାଡି ଦେବ ପେଣ୍ଡା ପେଣ୍ଡା ଫସଲ। ପ୍ରଜାମାନେ ଆପଣେଇ ନେଲେ ମାଣ୍ଡିଆରାଣୀକୁ, ଦୁର୍ଭିକ୍ଷ ବାଧିଲାନି। ମାଣ୍ଡିଆରାଣୀ ସବୁ ସମ୍ଭାଳି ନେଲା। ସେଇ ଦିନଠୁଁ ବଣ ଡଙ୍ଗର ମଣିଷମାନଙ୍କର ମାଣ୍ଡିଆ ହେଲା ସବୁଠାରୁ ପ୍ରିୟ ଖାଦ୍ୟ।

ଆଦିବାସୀ ସମାଜରେ ପ୍ରଚଳିତ ଏଇ ଲୋକ କଥାଟିକୁ ବୁଢ଼ାଟି ଯେମିତି ରସିକତାର ସହ ମୋ ଆଗରେ ଉପସ୍ଥାପନା କଲା, ସେଥିରେ ମୁଁ ଅଭିଭୂତ ହୋଇ ପଡିଲି। ମୁଁ ଆସିଥିଲି ସରକାରୀ କାମରେ ନବରଙ୍ଗପୁର। ସୁପ୍ରୀତି କିଛି ମାଣ୍ଡିଆ ଆଣିବାକୁ କହିଥିଲା। ଆମ ଦୁହିଁଙ୍କର ସୁଗାର ଲେବେଲ୍ ବଢୁଥିଲା। ସୁପ୍ରୀତି ଏମିତିରେ ଟିକେ ମୋଟୀ ହୋଇଯାଉଛି। ସେ ପିଲାଦିନୁ ସ୍ୱାସ୍ଥ୍ୟ ସଚେତନ।

ମାଣ୍ଡିଆ ଆଳରେ ଏ ଅଞ୍ଚଳର ଲୋକମାନଙ୍କ ସହ ବି ମୋର ଟିକେ ଭାବ ବିନିମୟ ହୋଇଯିବ। ଆମେ ରାଜଧାନୀରେ ଥାଇ ଲେଖା ଲେଖି କରୁଥିବା ଲୋକମାନଙ୍କ ପାଇଁ ଏ ଅଞ୍ଚଳକୁ ଆସିବାର ସୁଯୋଗ ମିଳିବା ଏକ ସୌଭାଗ୍ୟ।

ବୁଢ଼ା ମୋତିରାମ ଜାନୀ ସହ ବସି ଆଳାପ ଆଲୋଚନା ପ୍ରସଙ୍ଗରେ ମୁଁ ତାକୁ ମାଣ୍ଡିଆ କଥା କହିଥିଲି। ସେଇଥିରୁ ସେ ମୋ ଆଗରେ ଏ ସୁନ୍ଦର ଲୋକ କଥାର ବୟାନ କରିଥିଲା। ମୁଁ ବି ଅଭିଭୂତ ହୋଇ ତା'ର ଗଳ୍ପ କହିବାର କଳାକୁ ତାରିଫ୍ କରିଥିଲି ମନେ ମନେ। ମୋତିରାମ ଟିକେ ଦମ୍ ନେଇ ହସି ହସି କହିଲା, ସେଇ ନଖରୀବାଲି ମାଣ୍ଡିଆରାଣୀକୁ ଖୋଜୁଛ ଯେ ସିଏ ଏବେ ପୁଣି ଉଭାନ୍ ହେବାକୁ ବସିଲାଣି। ତମେ ଜାଣିଛ ବାବୁ, ଆଜିକାଲିକାର ପିଲା ନାକ ଟେକୁଛନ୍ତି ମାଣ୍ଡିଆକୁ। ସ୍କୁଲ କଲେଜ ଯାଉଥିବା ପିଲା ତ ମାଣ୍ଡିଆ ପେଜ ପିଇଲେ ମାନମହତ ଚାଲିଯିବ ବୋଲି ଭାବୁଛନ୍ତି। ଆମ ବେଳେ ଆମେ ଯୁଆଡ଼େ ଯାଉଥିଲୁ ଆମର ସବୁଠାରୁ ବଡ ସାଥୀ ଥିଲା ମାଣ୍ଡିଆ ପେଜ।

ମୁଁ କହିଲି - ନାଇଁ ମଉସା, ମାଣ୍ଡିଆର ମହତ୍ତ୍ୱ ଏବେ ଲୋକେ ପୁଣି ବୁଝିଲେଣି। ଏବେ ଡାକ୍ତରମାନେ ମଧ୍ୟ ମାଣ୍ଡିଆକୁ ପଥ୍ୟ କରିବାକୁ ପରାମର୍ଶ ଦେଲେଣି। ଏବେ ମାଣ୍ଡିଆ ଆଉ ନଥିଲା ବାଲାଙ୍କର ଖାଦ୍ୟ ନୁହେଁ, ଥିଲା ବାଲା ବି ଆଦର କଲେଣି ତାକୁ। ଆମେରିକାର ରାଜାପୁଅ ଆସିଥିଲେ ଆମ ଦେଶକୁ। ଆମଦେଶର ଜଣେ ମହିଳା ବନ୍ଦନା ଶିବା ତାଙ୍କୁ ମାଣ୍ଡିଆ ତିଆରି ଖାଦ୍ୟ ପରଶି ମୁଗ୍ଧ କରିଦେଇଥିଲେ। ବୁଢ଼ା ଅବିଶ୍ୱାସ ଦୃଷ୍ଟିରେ ମୋ ମୁହଁକୁ ଚାହିଁ କହିଲା, ବାବୁ! ଏଇଟା ତ ଆମ ନଥିଲା ମାନଙ୍କର ଖାଦ୍ୟ, ଦେଶୀୟା ମାନଙ୍କର ଜୀବନ ବୋଲି ଲୋକେ ଛି ଛାକର କରୁଥିଲେ। ତମେ ପୁଣି ଏମିତି କଥା କହିଲଣି!

ମୁଁ ତାକୁ ବୁଝେଇଲି, ନାଇଁ ମଉସା! ଇୟେ ଖାଲି ତମମାନଙ୍କର ଖାଦ୍ୟ ବୋଲି କାହିଁକି କହୁଛ? ସାରା ପୃଥିବୀର ଖାଦ୍ୟ ଇୟେ। ଆମ ରାଜ୍ୟ ଛଡ଼ା ଅନ୍ୟ ରାଜ୍ୟ ମାନଙ୍କରେ ବଡ ବଡିଆ ଏ ଖାଦ୍ୟ ଖାଆନ୍ତି। କେରଳ ରାଜ୍ୟ ଯାହାକୁ ଆମେ ସବୁଠୁଁ ଶିକ୍ଷିତ ରାଜ୍ୟ ବୋଲି କହୁ ସେଠି ତ ମୂଳରୁ ହିଁ ମାଣ୍ଡିଆ ବଡ ବଡିଆଙ୍କ ଖାଦ୍ୟ। ଏ ଖାଦ୍ୟର ମୂଲ୍ୟ ବୁଝିଛନ୍ତି ବୋଲି ତ ରାଜସ୍ଥାନରେ ଏହାକୁ କହନ୍ତି ସାତଧାନ। ସାତଟି ଶସ୍ୟ, ଉତ୍ତରା ଖଣ୍ଡରେ କହନ୍ତି ବାରନାଯା, ବାରଟିଶସ୍ୟ। କର୍ଣ୍ଣାଟକରେ କହନ୍ତି ନଉଧନିଆ, ଅର୍ଥାତ୍ ୧୨ଟି ଶସ୍ୟ। ଏତେ ସବୁ ଶସ୍ୟର ଭିଟାମିନ୍ ଅଛି ଏଥିରେ। ବୁଢ଼ା ଆଁ ଫାଡି ମୋ ମୁହଁକୁ ଚାହିଁଥିଲା। ସବୁଶୁଣି ସାରି

କହିଲା - ଆଏଁ, ଏତେ କଥା ? ହେଲେ ଲୋକେ ତ ବୁଝୁନାହାଁନ୍ତି। ଯେଉଁମାନଙ୍କର ଜୀବନ ନାଟିକା ଥିଲା ମାଣ୍ଡିଆ ସେମାନେ ଏବେ ତା ପାଖ ପଶୁନାହାଁନ୍ତି। ସବୁ ଏଇ ଟଙ୍କିକିଆ ଚାଉଳର ଦୋଷ ଆଜ୍ଞା। ସହଜରେ ମିଳିଯାଉଛି ଖାଇବାପାଇଁ ମୁଠେ। ମାଣ୍ଡିଆକୁ ତ ସେମାନେ ଭାବୁଛନ୍ତି ନିଅଣ୍ଟିଆ ଲୋକର ଦରିଦ୍ରର ଖାଦ୍ୟ, ହୀନିମାନିଆ ଖାଦ୍ୟ।

ମୋର ମନେ ପଡିଯାଉଥିଲା ବୋଉର ସେଇ ଶେଷ କେତେ ଦିନର କଥା। ତା'ର ସୁଗାର ବଢ଼ିଗଲା। ନିୟନ୍ତ୍ରଣକୁ ଆସିଲାନାହିଁ। ସେତିକିବେଳେ ପ୍ରୀତି ବହୁକଷ୍ଟରେ କିଛି ମାଣ୍ଡିଆ ସଂଗ୍ରହ କରିଥିଲା ବୋଉ ପାଇଁ। ବୋଉ କିନ୍ତୁ ମାଣ୍ଡିଆ ଖାଇବା ତ ଦୂରକ କଥା, ମାଣ୍ଡିଆ ଜାଉ ଦେଖି ପ୍ରୀତି ଉପରେ ବର୍ଷିଯାଇଥିଲା। ଗଜିଦାସ ଝିଅ ଖାଇବ ମାଣ୍ଡିଆ ଜାଉ ? ତୁ ମତେ କ'ଣ କରି ପାଇଲୁ କି ? ମାଣ୍ଡିଆ ଜାଉ ବାଢ଼ି ଦେଉଛୁ ମୋ ପାଇଁ ?

ବୋଉ ବେଶି ରାଗିଗଲେ ତା ବାପଘରର ଖାନ୍‌ଦାନୀ କଥା କହି ତା ନିଜର ସ୍ଥିତି ଜାହିର କରେ। ପ୍ରକୃତରେ ତା ବାପା (ମୋ ଅଜା) ସେ ଅଞ୍ଚଳର ଖଣ୍ଡମଣ୍ଡଳରେ ନାମଜାଦା ଥିଲେ। ଅର୍ଥ ପ୍ରତିପତ୍ତି ସବୁକ୍ଷେତ୍ରରେ। ବୋଉ ତାଙ୍କର ଚାରିପୁଅରେ ଗୋଟିଏ ଝିଅ ଥିଲା। ସେ ପୁଣି ସବୁଠୁଁ ସାନ। ଅତ୍ୟନ୍ତ ଗେଲ ବସରରେ ବଢ଼ିଥିଲା। ସେ ସରଗର ଚାନ୍ଦ ମାଗିଲେ ବି ତା ବାପା ତା ହାତରେ ଆଣି ଦେଉଥିଲେ। ବାପା ବି କମ୍ ଅୟସରେ ରଖିନଥିଲେ ବୋଉକୁ। ତେଣୁ ତା ଖାଦ୍ୟ ବିଳାସ ତା ବାପଘରେ ଯେମିତି ଥିଲା, ଆମ ଘରେ ବି ସେମିତି ଥିଲା। ବାପା ସବୁବେଳେ ସେଥିପ୍ରତି ସଜାଗ ଥିଲେ। ବାପାଙ୍କଠୁଁ କୁଆଡ଼େ ଏ ପ୍ରତିଶ୍ରୁତି ମୋ ଆଇ ଆଦାୟ କରିନେଇଥିଲା। ସେ ଯେତେବେଳେ ବର ହେଇ ଯାଇଥିଲେ ମୋ ଅଜାଙ୍କ ଘରକୁ। ଏହି ହେତୁ ପ୍ରୀତି ହାତରେ ମାଣ୍ଡିଆ ଜାଉ ଦେଖି ମୋ ବୋଉର ଅଜ୍ଞାନ ହେବାଟାକୁ ମୁଁ ଅସ୍ୱାଭାବିକ ବୋଲି ଭାବି ନଥିଲି। ବୋଉ ଯେ କେବଳ ପ୍ରୀତି ଉପରେ ବିରକ୍ତ ହୋଇଥିଲା ସେତିକି ନୁହେଁ, ମୋ ପାଖରେ ବି ଫେରାଦ୍ ହୋଇ କହିଥିଲା।

"ତୋ ସ୍ତ୍ରୀର ସାହସ ଦେଖ୍। ମୋତେ ଖାଇବାକୁ ଦଉଚି ମାଣ୍ଡିଆ ଜାଉ। ତୋ ବାପା ଯଦି ଆଜି ବଞ୍ଚିଥା'ନ୍ତେ, ତମେମାନେ କ'ଣ ମତେ ଏମିତି ହୀନ କରିଥା'ନ୍ତ ?

ମୁଁ ବୋଉକୁ ବୁଝେଇଥିଲି - ପ୍ରୀତି ତତେ ହୀନକରି ଦେଖୁଛି ବୋଲି ତୁ

କାହିଁକି ଭାବୁଛୁ? ବରଂ ସେ ତୋ ଭଲପାଇଁ ମାଣ୍ଡିଆ ଖାଇବାକୁ ଦେଉଛି। ଡାଇବେଟିସ୍ ରୋଗୀଙ୍କ ପ୍ରାଇଁ ମାଣ୍ଡିଆ ଠାରୁ ଆଉ ଭଲ ଖାଦ୍ୟ ନାହିଁ। ସେ ଆହୁରି ଉତ୍ୟକ୍ତ ହୋଇ କହିଲା - ରଖ୍ ତୋ ଚଟୁଚଲା କଥା। ଆମ ଘରେ ହଳିଆ ଚାକରକୁ ଦିଆ ହେଉଥିଲା ମାଣ୍ଡିଆ ଜାଉ। ସେ କୋହ ରୋକି ନେଲା। ମୁଁ ତାକୁ ଆଉ କିଛି ବୁଝାଇବା ଆବଶ୍ୟକ ମଣିଲି ନାହିଁ। ଏବେ ବୁଢ଼ା କଥାରେ ବି ଦେଖୁଛି ସେଇ ଭାବ। ଆଜି କାଲିକାର ପିଲା ମାଣ୍ଡିଆକୁ ମର୍ଯ୍ୟାଦାଜନକ ଖାଦ୍ୟ ବୋଲି ଗ୍ରହଣ କରୁନାହାଁନ୍ତି। ଏ ସବୁକୁ ମଳି ମୁଣ୍ଡିଆ, ଦୁଃଖୀ ରଙ୍କୀଙ୍କ ଖାଦ୍ୟ ବୋଲି କହି ପତରରେ ପକାଉ ନାହାଁନ୍ତି।

ବୁଢ଼ା ହତାଶ ସ୍ୱରରେ କହିଲା - ବିନା ଖତ ସାର ଔଷଧରେ ମାଣ୍ଡିଆ ଚାଷ ହେଉଥିଲା। ଖାଲି ମାଣ୍ଡିଆ ନୁହେଁ ବାବୁ! କୋଦ, କୋଳଥ, କାଙ୍ଗୁ କାନ୍ଦୁଲ, ଜନା ବାଜରା, ବାଇଲ, ଅଳସୀ ଏମିତି କେତେ କେତେ ଦରବ। ଏସବୁ ଥିଲା ମାଟି ଅମଳ। ଗଦା ଗଦା ଫଳୁଥିଲା। ଆମେ ରଖିବା ପାଇଁ ଜାଗା ପାଉନଥିଲୁ। ଏସବୁ ଏବେ ବୁଡ଼ିବାକୁ ବସିଲାଣି। ବେଳେବେଳେ ତ ଔଷଧ ଟିକେ କରିବାକୁ ବି ମିଳୁନି।

ମୁଁ କହିଲି - କହିଁକି? ଅସୁବିଧା କ'ଣ ହେଉଛି? ଏତେ ସୁବିଧାରେ ହେଉଥିବା ଫସଲକୁ ତମେମାନେ ଚାଷ କରୁନ କାହିଁକି?

ସେ କ୍ଷୋଭପ୍ରକାଶ କରି କହିଲା - ସବୁରି ମୂଳରେ ଏଇ ସରକାରୀ ମକା ଆଉ ସରକାରୀ ଧାନ ବାବୁ! ସାର ଔଷଧ ବିଷ ମାଟି ମାଆର ବଳବପୁକୁ ହରଣ କରିନେଲାଣି। ତା'ର ଶକ୍ତି କ୍ଷୀଣ ହୋଇଗଲାଣି। ସିଏ ଆଉ କି ଫସଲ ଆମ ଅଣ୍ଟିରେ ଅଜାଡି ଦବ ବାବୁ? ଆଉ ଆଜି କାଲିକାର ପିଲାମାନେ ତ ପାଠ ଦି'ଅକ୍ଷର ପଢ଼ିଲେ ଆଗ ହଳ ଛାଡ଼ି ଦେଉଛନ୍ତି। ଆନ୍ଧ୍ରଯିବୁ, ଚେନାଇ ଯିବୁ ବୋଲି ବାୟା ବାତୁଳା ହେଉଛନ୍ତି। ଆଉ ଯିଏ ବା ଚାଷବାସକୁ ମନ ଦେଉଛନ୍ତି ସେମାନେ ଆଉ ମାଣ୍ଡିଆ କାନ୍ଦୁଲ ଜନା ବାଜରା ପାଇଁ ଚାଷ କରୁନାହାଁନ୍ତି। ଆମ ଆହାର ଆଉ ଆମ ଜମିରୁ ବାହାରୁନି ବାବୁ। ସେମାନେ ସାର ଔଷଧ ଦେଇ ଜମିରୁ ଟଙ୍କା ବାହାର କରୁଛନ୍ତି, ସେଇ ଟଙ୍କାରେ ଆମେ ଆମ ପେଟପାଇଁ ଆହାର କିଣୁଛୁ। ଏବେ ତ ଜମିସାରା ଖାଲି ନୀଳଗିରି ଚାଷ। ଗଛ ଲଗାଇବାପାଇଁ କମ୍ପାନୀ ଆଗତ ପଇସା ଫିଙ୍ଗୁଛି, ଲୋକେ ଆଗ ପଛ ଭୁଲି ସେଇ ପଇସା ସାଉଁଟି ଆଣୁଛନ୍ତି। ଗଛ ଲାଗିଲେ ତିନିବର୍ଷକୁ ଥରେ ଲେଖାଏଁ କମ୍ପାନୀ କାଠ କାଟି ନେବ। ଏଥର ତ ଏଇ ଧାନ ମାଣ୍ଡିଆ ଟିକିକ ସପନ ହେବ। ମୁଁ ମୋତିରାମର ଦୁଃଖ ଅନୁଭବ କଲି।

ସେ ପୁଣି ଦୀର୍ଘ ଶ୍ୱାସଟିଏ ଛାଡି କହିଲା – ଆମ ଗାଗର ଏଇ ମାଣ୍ଡିଆ ତମ୍ପାରେ ଗଢ଼ା ହୋଇଥିଲା ବାବୁ। ପିଲାଦିନୁ ମାଣ୍ଡିଆ ପେଜ ପିଇ ପିଇ ଆମେ ମଣିଷ। ସେଇ ମାଣ୍ଡିଆ ଆମର ଜୀବନ ନାଟିକା। ଏବେ ସେଇ ମଣିଷ ମାଣ୍ଡିଆକୁ ଆଉଥରେ ହତାଦର କଲାଣି। ଆମ ପୁରୁବ ପୁରୁଷଙ୍କ ଠାରୁ ଶୁଣିଥିଲୁ ମାଣ୍ଡିଆରାଣୀ ରୁଷି ଥିଲା, ଏବେ ସେଇ ନଖରୀ ବାଲି ପୁଣି ରୁଷିବା ଆରମ୍ଭ କଲାଣି। ଏବେ ସେ ଆମକୁ ଛାଡ଼ି ବାବୁମାନଙ୍କ ଘରେ ପଶିଲାଣି। ସେମାନେ ତାକୁ କୋଳେଇ ନେଲେଣି।

ମୁଁ ଭାବିଲି, ହଁ ବୁଢ଼ା କିଛି ନାକରା କଥା କହୁନାହିଁ ତ ! ଡାକ୍ତରଙ୍କ ପରାମର୍ଶ ଅନୁସାରେ ମୁଁ ମୋ ସହରଛାଡ଼ି ଏତେ ଦୂର ଧାଇଁ ଆସିଛି ମାଣ୍ଡିଆ ପାଇଁ। ମାଣ୍ଡିଆ ଏବେ ହେଉଛି ଆମର ତ୍ରାଣକର୍ତ୍ତା। କୋଲଷ୍ଟ୍ରଲ ମୁକ୍ତ ମାଣ୍ଡିଆର ଅଛି ପ୍ରଚୁର ରୋଗ ପ୍ରତିଷେଧକ ଶକ୍ତି। ସିଏ ଏବେ ସତକୁ ସତ ଅଭିମାନରେ ଗାଁ ଛାଡ଼ି ସହରକୁ ଚାଲି ଯାଉଛି। ଗରିବଙ୍କ ଝୁପୁଡି ବସ୍ତିରୁ ସୁଦୃଶ୍ୟ ପ୍ରାସାଦକୁ ତା'ର ବାସ ଭୂମି ରୂପେ ବାଛିନେଇଛି। ସବୁ ପ୍ରକାର ଅଭାବ ଓ ଅପୁଷ୍ଟିକୁ ଦୂର କରୁଥିଲା ମାଣ୍ଡିଆ। ନିଅଣ୍ଟିଆ ମଣିଷର ସେ ଥିଲା ଆଶା ଓ ଭରସା। ଅର୍ଦ୍ଧାହାରରେ ବଞ୍ଚୁଥିବା ମଣିଷର ରୋଗ ପ୍ରତିରୋଧକ ଶକ୍ତି ବଢ଼ାଉଥିବା ମାଣ୍ଡିଆକୁ ତାଙ୍କ ପାଖରୁ ଛଡେଇ ନିଆଯାଉଛି। ଖାଦ୍ୟ ସୁରକ୍ଷା ଯୋଜନା ଚକ୍ରରେ ଛିଟିକି ପଡୁଛନ୍ତି ଏଇ ମଣିଷମାନେ, ତାଙ୍କ ଓଠରୁ ମାଆର ଥନ କାଢ଼ି ନିଆଯାଇ ଫିଡିଙ୍ଗ ବଟଲ୍ ଜବରଦସ୍ତି ଭରିଦିଆଯାଉଛି। ଆମର ପାରମ୍ପରିକ ଖାଦ୍ୟ ମାଣ୍ଡିଆ ଚାଷକୁ ଉତ୍ସାହିତକରି ତାକୁ କ'ଣ ଚାଉଳ ଗହମ ଡାଲି ପରି ଖାଦ୍ୟ ସୁରକ୍ଷା ପ୍ରକ୍ରିୟାରେ ଅନ୍ତର୍ଭୁକ୍ତ କରାଯାଇ ପାରନ୍ତା ନାହିଁ ? ବୁଢ଼ାର କହିବା ଅନୁସାରେ ମାଣ୍ଡିଆରାଣୀର ମାନ ଭଞ୍ଜନ ହୁଅନ୍ତା। ରାଜାଠାରୁ ରଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ପାଖରେ ପହଞ୍ଚିପାରନ୍ତା ମାଣ୍ଡିଆରାଣୀ।

ମୁଁ ଫେରିଲା ବେଳକୁ ବୁଢ଼ା ଦୁଇ କିଲୋ ମାଣ୍ଡିଆ ମୋ ହାତରେ ଧରେଇ ଦେଲା। ମୁଁ ପକେଟ୍‌ରୁ ପଇସା ବାହାର କରୁଥିଲି। ସେ ଦୁଇ ହାତ ଯୋଡି ଜୁହାର ହୋଇ କହିଲା – ବାବୁ ଜମିରେ ଚାଷ କରିବାଟା। ତମେ ଆମର ଅତିଥି, ତମକୁ ଏତିକି ଦେଲେ ମୋର ସରିଯିବନି ବାବୁ। କେଜାଣି – ଆଗକୁ ଆମକୁ ଆଉ ଏମିତି ବି ଦେବାର ସୌଭାଗ୍ୟ ମିଳିବ କି ନା।

ମୁଁ ଫେରିଆସିଲି। ବେଦନାର ବିନ୍ଦୁଟିଏ ବହୁଦିନ ପର୍ଯ୍ୟନ୍ତ ମୋ ଭିତରେ କୋଉଠି ନା କେଜାଣି ଲଟକି ରହିଯାଇଥିଲା।

# ଶେଷ ସ୍ମୃତି

ମୁଁ ତାଙ୍କ ହାତକୁ ବଢ଼େଇ ଦେଇଥିବା ଲଫାପାଟିରୁ ଚିଠି ଖଣ୍ଡକ ବାହାର କରି ସେ ପଢ଼ିସାରିବା ପରେ ଭାଙ୍ଗିଭୁଙ୍ଗି ଯଥାସ୍ଥାନରେ ରଖିଲେ। ମୁହଁରୁ ଚଷମାଟା ବାହାର କରି ହାତରେ ଧରିଲେ। ଆନନ୍ଦାତିଶଯ୍ୟରେ ତାଙ୍କ ଚକ୍ଷୁରୁ ନିଗିଡି ପଡିଥିବା ଉଷୁମ ଲୁହର ବାମ୍ପରେ ଚଷମାର କାଚ ବୋଧହୁଏ ଧୂଆଁଳିଆ ହୋଇଯାଇଥିଲା। କାନ୍ଧରେ ପଡିଥିବା ସଫେଦ୍ ଗାମୁଛାର ଗୋଟାଏ କୋଣରେ ତାହା ପୋଛୁ ପୋଛୁ ମୋ ମୁହଁକୁ ଚାହିଁଲେ। ତାଙ୍କର ଦୁଇ ଉଜ୍ଜ୍ୱଳ ଆଖି ଆତ୍ମବିଶ୍ୱାସର ଆଭାରେ ଆହୁରି ତେଜସ୍କ୍ରିୟ ଦିଶିଲେ। ତାଙ୍କ ଅନ୍ତରର ସବୁତକ ଖୁସି ଯେମିତି ସେଇ ଦୁଇ ଆଖିବାଟେ ଉବୁକି ଆସୁଥିଲା। ସେ ଗଦ୍‌ଗଦ୍ ହୋଇ କହିଲେ - ଦିନ ଆସିବରେ ଟୁଟୁ ! ଏବେ ଯେଉଁମାନେ ମହାତ୍ମାଗାନ୍ଧୀଙ୍କ ଦର୍ଶନ ଉଭଟ କହି ଥଟ୍ଟା ପରିହାସ କରୁଛନ୍ତି, ୟୁଟୋପିଆ କହି ଉପେକ୍ଷା କରୁଛନ୍ତି, ସେମାନେ ନିଶ୍ଚୟ ତାଙ୍କ ମହତ୍ତ୍ୱ ବୁଝିବେ। ତାଙ୍କ ନୀତି ଆଦର୍ଶରେ ଅନୁପ୍ରାଣିତ ହେବେ। ଗୋଟାଏ ସାମାଜିକ ପରିବର୍ତ୍ତନ ନିଶ୍ଚୟ ଆସିବ। ମୁଁ ରହେ କି ନରହେ, ତୁ ନିଶ୍ଚୟ ଦେଖିବୁ।

ମୁଁ ଆଶ୍ଚର୍ଯ୍ୟ ହେଲି। ସଦା ସର୍ବଦା ଲୋକ ଚରିତ୍ର ଓ ରାଜନେତାଙ୍କ ପ୍ରତି

ଅବସୋସ ଅସନ୍ତୋଷ ଓ ନୈରାଶ୍ୟ ପ୍ରଦର୍ଶନ କରୁଥିବା ମଣିଷଟା ଆଜି ଗଭୀର ଆଶାବାଦ ଓ ଆଶ୍ୱସ୍ତିର କଥା କହୁଛନ୍ତି। ମୁଁ ଖୁସି ହେଲି। ଗୋଟାଏ ମୁହୂର୍ତ୍ତ ପାଇଁ ହେଉପଛେ ପରପିଢ଼ିପାଇଁ ତାଙ୍କ ମନରେ ଆଶା ସୃଷ୍ଟି କରିପାରିଲି, ସେଇଟା ମୋ ପାଇଁ ବଡ଼କଥା। ଗଭୀର ଆଶ୍ୱସ୍ତିରେ ମୁଁ ଦୀର୍ଘଶ୍ୱାସଟିଏ ନେଲି।

ସେ ପୁଣି ଆରମ୍ଭ କଲେ, ତାଙ୍କର ସେଇ ଚିରାଚରିତ କଥା। ତାଙ୍କ ସ୍ମୃତି ଅନୁଭୂତିର କଥା। ଯାହାକୁ ଯେତେ କହିଲେ ବି ସେ କେବେ କ୍ଳାନ୍ତ ଅନୁଭବ କରନ୍ତି ନାହିଁ। ମହାନଦୀ ବାଲିପଠାରେ ମହାତ୍ମାଗାନ୍ଧୀଙ୍କ ସାଧାରଣ ସଭାର ଭାଷଣ ଦେବା, ସ୍କୁଲ କଲେଜରୁ ଛାତ୍ରଛାତ୍ରୀମାନଙ୍କୁ ସେଠିକି ନଛାଡ଼ିବାପାଇଁ ସରକାରଙ୍କର ପ୍ରଧାନଶିକ୍ଷକ ଓ ଅଧକ୍ଷମାନଙ୍କୁ କଡା ଦାଗିଦ୍ କରିବା କଥା, କୌଣସି କଡା ହୁକୁମ୍‌କୁ ଖାତିର ନକରି, ଦୁଇ ସାଙ୍ଗଙ୍କ ସହ ପାଚିରୀ ଡେଇଁ ସେ ସଭାକୁ ଯିବା ଓ ସେଦିନ ରାତିରେ ନୈଶ ଭୋଜନ ବଦଳରେ ତିନି ଜଣଯାକ ଛଅ ବେତ ଲେଖାଁ ଖାଇବା କଥା ଇତ୍ୟାଦି ଇତ୍ୟାଦି।

ସାଧାରଣତଃ ସେ ରହି ରହି କଥା କହନ୍ତି। ଯାହ କହନ୍ତି ଖୁବ୍ ଉଚ୍ଚ ସ୍ୱରରେ। ଯୁଦ୍ଧୋନ୍ମୁଖ ସେନା ବାହୀନିକୁ ଉଦ୍‌ବୋଧନ ଦେବାପରି। କେହି ସେ ସଂପର୍କରେ ପ୍ରଶ୍ନ କଲେ ସେ କହନ୍ତି ପିଲାଦିନୁ ଆମେ କଣ୍ଠ ଫଟେଇ ଉଚ୍ଛ୍ୱାସର ଗୀତ ଗାଇଗାଇ ଶୋଭାଯାତ୍ରାରେ ଯାଉଥିଲୁ। ସେଇ ଅଭ୍ୟାସଟା ରହିଯାଇଛି। ତେଣୁ ଧୀର ସ୍ୱରରେ କହିହୁଏନାହିଁ। ଛଅ ବର୍ଷରୁ ଷାଠିଏ ବର୍ଷ ପର୍ଯ୍ୟନ୍ତ ଯେ କେହି ତାଙ୍କ ସାମ୍ନାରେ ପଡନ୍ତି ତାଙ୍କୁ ପାଖରେ ବସେଇ ଦୁଇପଦ ଗପ ନକରି ଛାଡନ୍ତି ନାହିଁ। ଜଂଜାଳୀ ମଣିଷମାନେ ତାଙ୍କୁ ଦେଖି ଅଧାରୁ ବାଟ ଭାଙ୍ଗି ଚାଲିଯାଉଥିଲେ। କିନ୍ତୁ ଏଇ ଲଗାମ ଛଡା ଅମାନିଆ ଦୁଷ୍ଟପିଲା ଗୁଡାକ ସଂଧ୍ୟା ହେଲେ ତାଙ୍କ ପାଖରେ ରୁଣ୍ଡ ହେଉଥିଲେ। କି କୁହୁକ ଥାଏ ତାଙ୍କ କଥାରେ କେଜାଣି, ବିକ୍ଷୁବ୍ଧ ବିଶୃଙ୍ଖଳିତ ଉଦ୍‌ବାର୍ଯ୍ୟ ଯୁବଶକ୍ତି ତାଙ୍କ କଥାର ଡୋରରେ ବାନ୍ଧି ହୋଇଯାଆନ୍ତି। ନିଜ ଅନୁଭୂତି କଥା କହୁ କହୁ ଗୁଡାଏ ମନଗଢ଼ା କଥା ବି କହି ଯାଆନ୍ତି। କିନ୍ତୁ କେହି ତାଙ୍କୁ ସେ ସଂପର୍କରେ ପାଲଟା ପ୍ରଶ୍ନ କରନ୍ତି ନାହିଁ। ସମସ୍ତେ ମନ୍ତ୍ରମୁଗ୍ଧ ହେଇଯାଆନ୍ତି ତାଙ୍କ ପ୍ରଗଳ୍ଭତାରେ।

ସେ କିନ୍ତୁ କିଛି ଦିନ ହେଲା ଅସ୍ୱାଭାବିକ ଭାବରେ ନିରବୀ ଯାଇଥିଲେ। ଆଉ ଏତେ ଗପୁ ନଥିଲେ। ଗହଳିକୁ ଆଉ ପସନ୍ଦ କରୁନଥିଲେ। କ'ଣ ସବୁ ଦିନରାତି ଲେଖି ଚାଲିଥିଲେ। ନିଜକୁ ସଦା ସର୍ବଦା ନିମଗ୍ନ ରଖୁଥିଲେ ସେଥିରେ। ସବୁଠାରୁ ଭଲ ପାଉଥିବା ତାଙ୍କ ସାନ ନାତିଟା ପାଇଁ ବି ସମୟ ଦେଉନଥିଲେ।

ମୋ ପୁଅର ବର୍ଷ ପୁରାଣି ହୋଇଥାଏ। ବୋଉ ତାଙ୍କୁ ଆମ ଘରକୁ ଡାକି ଆଣିବାକୁ ମୋତେ ନିର୍ଦ୍ଦେଶ ଦେଲା। ମୁଁ କହିଲି, ତୋର ଯଦି କ'ଣ ତାଙ୍କୁ ଦବା କଥା ଦଉନୁ ମୁଁ ନେଇ ତାଙ୍କ ଘରେ ଦେଇଆସିବି। ସେ କ'ଣ ଆସିପାରିବେ? ବୋଉ ଦରଦୀ କଣ୍ଠରେ କହିଲା - ସେ ନିଉଛୁଣା ପରିବାରଟା ତ କାଳମୁଣ୍ଡିପରି ହେଉଛନ୍ତି, ଭଲମନ୍ଦ ଟିକେ ପଠେଇଲେ କ'ଣ ତାଙ୍କ ପାଟି ପର୍ଯ୍ୟନ୍ତ ଯାଏ?

ମୁଁ ଆଉ ବାକ୍ୟବ୍ୟୟ ନ କରି ତାଙ୍କୁ ଆଣିବାକୁ ଗଲି। ସେ ମୋ ବୋଉକୁ ବହୁତ ଶ୍ରଦ୍ଧା କରନ୍ତି। ମୋ ଅଜା ଥିଲେ ସ୍ୱାଧୀନତା ସଂଗ୍ରାମୀ। କହିବାକୁ ଗଲେ କରୁଣୀ ଅଜାଙ୍କ ପଦେ କଥାରେ ମୋ ଅଜା ମୋ ବାପାଙ୍କ ସହ ତାଙ୍କ ଗେହ୍ଲାଝିଅକୁ ବିବାହ ଦେବାର ପ୍ରତିଶ୍ରୁତି ଦେଇଥିଲେ। ଘର ବର ଦେଖା ଆବଶ୍ୟକତା ହୋଇ ନଥିଲା। ଲେଖା ଯୋଖାରେ ମୋ ବାପା ତାଙ୍କର ଭଣଜା ହେଲେ ବି ମୋ ବୋଉକୁ ସେ କେବେ ଭଣଜା ବୋହୂ ଦୃଷ୍ଟିରେ ଦେଖିନାହାଁନ୍ତି। ବୋଉ ବି କେବେ ତାଙ୍କୁ ମଳାଶୁର ମାନ୍ୟତା କରି ମୁଣ୍ଡରେ ଓଢ଼ଣା ଦିଏ ନାହିଁ। ସେ ତା' ବାପଘର ସଂପର୍କ ନେଇ ତାକୁ କକେଇ ବୋଲି ଡାକେ। ସିଏ ବି ମୋ ବୋଉକୁ ଝିଅବୋଲି ସମ୍ବୋଧନ କରନ୍ତି। ସ୍ୱାଧୀନତା ସଂଗ୍ରାମୀ ପରିବାରର ସଦସ୍ୟମାନେ ହିଁ ସେମିତି। ସେମାନଙ୍କ ମଧ୍ୟରେ ଗୋଟାଏ ଭାଗବତ ବନ୍ଧନ ଥାଏ। ମୋ ବୋଉ ଭିତରେ ଶୈଶବରୁ ମୁଁ ଦେଖି ଆସିଛି ଏମିତି ଗୋଟାଏ ବିହ୍ୱଳିତ ଭାବ। ମୋ ଦରମା ପଇସାରେ ମୁଁ ମୋ ପରିବାର ପ୍ରତିପୋଷଣ କରିପାରେ ନାହିଁ। ଟିଉସନ୍ କୋଚିଂ ସେଣ୍ଟର ନେଇ ମୁଁ ସର୍ବଦା ବ୍ୟସ୍ତ ରହେ। ମୋ ଅଜା ମୋ ବୋଉ ଓ କରୁଣି ଅଜାଙ୍କ ଭିତରେ ନିଜକୁ ବିସ୍ତରିଦେବାର ଭାବ ମୋତେ ଚମତ୍କୃତ କଲେ ବି ମୁଁ ସେମାନଙ୍କ ପରି ହୋଇପାରେ ନାହିଁ। ମୁଁ ତ ଅନୁଭବ କରୁଛି, ଏବେ ମୁଁ କେମିତି ଧୀରେ ଧୀରେ ସଂକୁଚିତ ହୋଇଯାଉଛି, ବ୍ଲକ୍‌ଗ୍ରାଣ୍ଟ ପାଉଥିବା ପ୍ରାଇଭେଟ୍ କଲେଜ। ଜୀବନର ପ୍ରତିଟି ମୁହୂର୍ତ୍ତ ପେଟପାଟଣା ପାଇଁ ଉତ୍ସର୍ଗ ନକଲେ ନହୁଏ। ବାହାର ଦୁନିଆ ଠାରୁ ଦୂରେଇ ମୋ ଭିତରେ ସୁରକ୍ଷା ବଳୟଟିଏ ତିଆରି କରି ମୁଁ କଇଁଚଟିଏ ପରି ବଞ୍ଚୁଛି। ବୋଉ ହିଁ ବର୍ଷର ଅଧିକାଂଶ ଦିନ ମୋତେ ମୋ ସଂକୁଚିତ ଦୁନିଆରୁ ବାହାର କରି ଆଣେ। ତା'ର ଛୋଟିଆ ପରିବେଶ ଭିତରେ ସେ ଆମମାନଙ୍କୁ ବୈସୁଧୈକ କୁଟୁମ୍ବକମ୍‌ର ଭାବ ଶିକ୍ଷା ଦେଇଥାଏ। ତା'ର ପୂଜା ପର୍ବ, ଓଷା ବ୍ରତ ଦିନ ସେ ସାକ୍ଷାତ ଅନ୍ନପୂର୍ଣ୍ଣା ପାଲଟି ଯାଏ। ନିଜ ହାତରେ ବିଭିନ୍ନ କିସମର ପିଠାପଣା ପ୍ରସ୍ତୁତ କରେ। ଭାଟ ଭିକାରୀ ଠୁଁ ଆରମ୍ଭ କରି ମାତବର ମଣିଷ ପର୍ଯ୍ୟନ୍ତ

ସମସ୍ତଙ୍କୁ ସେ ସ୍ୱହସ୍ତ ପ୍ରସ୍ତୁତ ବ୍ୟଞ୍ଜନ ବାଢ଼ିଦେବାରେ ବେଶ୍ ଆନନ୍ଦ ପାଇଥାଏ। ସେଇଦିନମାନଙ୍କରେ ମୁଁ ବି ଅନୁଭବ କରେ ମୁଁ ଯେମିତି କୋଉ ସ୍ୱପ୍ନ ରାଇଜର ଯୁବରାଜ ପାଲଟି ଯାଇଛି। ମୋ ବୋଉ ସେଇ ରାଜ୍ୟର ସାମ୍ରାଜ୍ଞୀ। ସେ ସେଦିନ କାହା କଥା ଶୁଣେ ନାହିଁ। ମୋ ସ୍ତ୍ରୀ ଏ ସବୁକୁ ଅଯଥା ଖର୍ଚ୍ଚ କହି ରାମ୍ଫୁଡି ବିଦାରି ହୁଏ। ମୁଁ ବୋଉକୁ ଏ ବିଷୟରେ କହିବି କହି ତାକୁ ଚୁପ୍ କରେଇ ଦିଏ ସିନା, ବୋଉକୁ ଏ ସଂପର୍କରେ କିଛି କହିବାର ଆବଶ୍ୟକତା ମୁଁ ଅନୁଭବ କରେ ନାହିଁ। ବରଂ ଏଭଳି ବୋଉର ପୁଅ ବୋଲି ମୋର ବେଳେବେଳେ ଗର୍ବ ଅନୁଭବ ହୁଏ।

ସେଦିନ କରୁଣୀ କକେଇଙ୍କୁ ମୋ ସ୍କୁଟି ପଛରେ ବସେଇ ଘରକୁ ଆଣିବା ବେଳେ ସେ ମୋତେ କହିଲେ - ମୁଁ ମୋ ସ୍ୱାଧୀନତା ସଂଗ୍ରାମୀ ଜୀବନର ଅନୁଭୂତି, ଭୂଦାନ ଆନ୍ଦୋଳନ ଓ ସର୍ବୋଦୟ ଚେତନା ସବୁକୁନେଇ କିଛି ଲେଖିଛି। ତୁ ସେ ସବୁକୁ ନେଇ ଛାପିବା ବ୍ୟବସ୍ଥା ଟିକେ କରି ଦିଅନ୍ତୁନି ? ତୋ'ର ତ କଟକ ଭୁବନେଶ୍ୱର ଏତେ ଲେଖକ ପ୍ରକାଶକ ସବୁ ଚିହ୍ନା।

ଆଜିକାଲି ବହିଟିଏ ଛାପିବାକୁ ହେଲେ ହାତରୁ ପଇସା ଖର୍ଚ୍ଚ କରିବାକୁ ହୁଏ। କରୁଣୀ କକେଇଙ୍କ ପରି ଜଣେ ମୂଲ୍ୟବୋଧ ସମ୍ପନ୍ନ ନିରୀହ ମଣିଷଙ୍କୁ ମୁଁ ଏକଥା କେମିତି ବୁଝେଇବି ? ତାଙ୍କପରି ଜଣେ ନୀତିବାଦୀ ସରଳ ବିଶ୍ୱାସୀ ମଣିଷ ପାଖରେ ସାହିତ୍ୟ ଜଗତର ଅଳିଆଗଦାର ନକ୍ସାଦେଇ ତାଙ୍କ ମନ ଖରାପ କରିବାକୁ ଚାହିଁଲିନି। ମୁଁ ହାଲ୍କା ଭାବେ କହିଲି, ହଉ, ଦେଖିବା।

ବୋଉ ହାତ ତିଆରି ପିଠାପଣା, ଆମ୍ବ ସନ୍ତୋଷର ସହ ଭୋଜନ କଲେ କରୁଣୀ ଅଜା। ସବୁଦିନ ପରି ସେଦିନ ବି ଅଜାଙ୍କ ସହ ବିତେଇଥିବା ତାଙ୍କ ସ୍ୱାଧୀନତା ସଂଗ୍ରାମର ଅନୁଭୂତିକୁ ଚର୍ବିତ ଚର୍ବଣ କଲେ। ବୋଉ ଯା ପୂର୍ବରୁ ଅନ୍ୟୂନ ଏସବୁ କଥା ଶହେଥର ଶୁଣିଥିଲେ ବି ସଂପୂର୍ଣ୍ଣ ନୂଆ କଥା ଶୁଣିବା ପରି ଅଭିଭୂତ ହୋଇଯାଉଥିଲା କିଶୋରୀଟିଏ ପରି। କରୁଣୀ ଅଜାଙ୍କୁ ତାଙ୍କ ଘରେ ଛାଡ଼ି ଆସିବା ପରଠୁଁ ତାଙ୍କ ବହି ଛାପିବା ପ୍ରସଙ୍ଗ ଆମର ମୁଖ୍ୟ ପ୍ରସଙ୍ଗ ହୋଇଥିଲା। ମୋ ସହ ଯେବେ ବି ତାଙ୍କର ଦେଖା ହୋଇଛି, କେବଳ ସେଇ କଥା ସେ କହନ୍ତି। ମୋ ଉପରେ ତାଙ୍କର ଅଖଣ୍ଡ ଭରସା ଥିଲା। ନିଜ ପୁଅମାନଙ୍କ ଉପରୁ ତ ଅନେକ ଦିନରୁ ଆସ୍ଥା ତୁଟେଇ ସାରିଥିଲେ। ତାଙ୍କ ବଡପୁଅ ମଣ୍ଟୁ ମାମୁଁ ଯିଏ ବାରମ୍ବାର ଦଳବଦଳ କରି ସବୁଦଳରୁ ତଡା ଖାଇ ଏବେ ଗୋଟାଏ ନୂଆ ଦଳ ଗଢ଼ିବା ଯୋଜନାରେ ଅଛନ୍ତି, ଗୋଟାଏ ଛାତତଳେ ଥିଲେ ବି ତାଙ୍କ ସହ କରୁଣୀ

ଅଜାଙ୍କର ପ୍ରାୟ ଦେଖାହୁଏ ନାହିଁ। ତାଙ୍କ ନିଜ ଜୀବନର ବିଫଳତା ପାଇଁ ସେ ସଦାସର୍ବଦା ଦାୟୀ କରୁଥାନ୍ତି କରୁଣୀ ଅଜାଙ୍କୁ। ଜଣେ ସ୍ୱାଧୀନତା ସଂଗ୍ରାମୀ ଓ ସର୍ବୋଦୟ କର୍ମୀଙ୍କର ପୁଅ ହୋଇ ସେ କିଛି ପାଇପାରିଲା ନାହିଁ, ଅଭାବ ଅନଟନ ଦାରିଦ୍ର୍ୟ ଛଡା ତାଙ୍କ ପାଇଁ ଉତ୍ତରାଧିକାର ସୂତ୍ରରେ କିଛି ମିଳିନାହିଁ। ଆଉ କିଛି ମିଳିବାର ବି ନାହିଁ, ଖାଲି ବାପାଙ୍କର ଏକ ଜିଦିଆ ପଣ ପାଇଁ। ଅଯଥା ଫାଙ୍କା ଆଦର୍ଶ ପାଇଁ। ସଭାସମିତିରେ ତାଙ୍କ ଗୋଡ଼ଛୁଇଁ ମୁଣ୍ଡିଆ ମାରୁଥିବା ରାଜନେତା ଓ ସରକାରୀ ଅଫିସରମାନେ ଅଧିକାଂଶ ଚାକିରି ପାଇଁ ଥିବା ସାକ୍ଷାତ୍‌କାରରେ କାର୍‌ପଟଦାର ହୋଇଥା'ନ୍ତି। ବାପାଙ୍କର କଥା ପଦକରେ କେତେ ବଡ଼ ବଡ଼ ଚାକିରି ଆସି ଗୋଡତଳେ ଲୋଟୁଥାନ୍ତା। କିନ୍ତୁ ବାପା କେବେ କାହାକୁ କିଛି କହନ୍ତି ନାହିଁ। ଦଳୀୟ ନିର୍ବାଚନୀ ଟିକେଟ୍ ପଇଁ ତାଙ୍କର ଏତେଟିକେ ସୁପାରିଶ ଯଥେଷ୍ଟ ହୋଇଥାନ୍ତା। ବିଧାନସଭା ପାଇଁ ହେଉ କି ଲୋକସଭା, ରାଜ୍ୟସଭା ପାଇଁ ହେଉ। ବାରମ୍ବାର ଅନୁରୋଧ ଅଭିମାନ, ରାଗ, ରୁଷା, ତାଡନା, ଧିକ୍କାର ସବୁ ବ୍ୟର୍ଥ ଯାଇଛି। ସେ ଦାରୁଭୂତ ମୁରାରି ପଲଟି ଯାଇଛନ୍ତି।

ଅବିବାହିତା ଝିଅର ପଇସାରେ ଚଳେ ଘର। ଝିଅ ୟୁପି ସ୍କୁଲରେ ଶିକ୍ଷକତା କରେ। ବେରୋଜଗାର ସାନ ପୁଅର ପରିବାର, ପତ୍ନୀଙ୍କର ଔଷଧ ଖର୍ଚ୍ଚ, ତାଙ୍କ ନିଜର ଖର୍ଚ୍ଚ ସବୁକିଛି। କେତେ ବା ସେ ପେନ୍‌ସନ୍ ପାଆନ୍ତି ଯେ। ସେମିତି ଦୁଃଖେ ସୁଖେ ଚଳେ ସଂସାର।

ଏବେ ତାଙ୍କ ମୁଣ୍ଡରେ ପଶିଛି ବହି ଛାପିବାର ବ୍ୟାକୁଳତା। ତାଙ୍କଠାରୁ ପାଣ୍ଡୁଲିପିଟି ନେଇ ମୁଁ ମୋ ସାହିତ୍ୟିକ ବନ୍ଧୁମାନଙ୍କ ସହ ପରାମର୍ଶ କଲି, ସମସ୍ତେ ସେଇ ଗୋଟାଏ କଥା କହିଲେ। ପ୍ରତିଷ୍ଠିତ ପ୍ରକାଶକତ ଏ ପାଣ୍ଡୁଲିପି ଛୁଇଁବେ ନାହିଁ। ନୂଆ ପ୍ରକାଶକମାନେ ଛାପିବାକୁ ଆଗଭର। କିନ୍ତୁ ସେମାନଙ୍କୁ ପଇସା ଦରକାର। ପଇସା ପାଇବାପରେ ସେମାନେ ଯେ ବଜାରକୁ ବହି ଛାଡିବେ, ତାହା ନିଶ୍ଚୟ କରି କହିହେବ ନାହିଁ। ଡି.ଟି.ପି. ପରେ ଦଶ କୋଡିଏ ଖଣ୍ଡ ବହି ଛାପି ଦେଇ କିମ୍ବା ଡିଜିଟାଲ ପ୍ରିଣ୍ଟରେ ବାହାର କରି ଜେରକ୍ସ ଦ୍ୱାରା ୧୦/୧୨ ଖଣ୍ଡ ବହି ଦେଇ ସେମାନେ ସେମାନଙ୍କ କାମ ଶେଷ କରନ୍ତି। ତେଣୁ ବହିଟାକୁ ନିଜେ ଛାପିବା ହିଁ ଠିକ୍ ହେବ। ବିକ୍ରି କଥା ପଛକୁ ଥାଉ। ଅନ୍ତତଃ କିଛି ବହିତ ହାତକୁ ଆସିବ। ଆମେ ଯେଉଁମାନେ ବସି ଏ ବିଲୁଆ ବିଚାର କରୁଥିଲୁ ସମସ୍ତେ ଥିଲୁ କପର୍ଦ୍ଦକ ଶୂନ୍ୟ।

ମଣ୍ଟୁ ମାମୁଁଙ୍କ ସହ ଏ ସଂପର୍କରେ ଆଲୋଚନା କଲି। ସେ ବିସ୍ଫୋରଣ କଲାପରି କହିଲେ, ଜୀବନ ସାରା ବହୁତ ସଂଘର୍ଷ କରି ଦି' ପଇସା ରୋଜଗାର କରିଛି। ଏ ନିଶ୍ଚିତ ପଇସାକୁ ଅନିଶ୍ଚିତତା ପଛରେ ବାଜି ଲଗେଇବାକୁ ମୁଁ ପସନ୍ଦ କରେ ନି। କ'ଣ ଦେଇଛନ୍ତି ଆମକୁ ସେ ଗାନ୍ଧି! ଲାଞ୍ଛନା, ଅପମାନ ଦାରିଦ୍ର୍ୟ! ବାପା ଯଦି ପାଠପଢ଼ା ଛାଡ଼ି ଗାନ୍ଧି ଡାକରାରେ ସ୍ୱାଧୀନତା ସଂଗ୍ରାମରେ ମିଶି ନଥାନ୍ତେ, ଚାକିରିଟିଏ କରିଥାନ୍ତେ, ଆମର ପରିବାରର ଅବସ୍ଥା ଏମିତି ନଥାନ୍ତା। ଆମେ ରାଜସୁଖ ଭୋଗିଥାନ୍ତୁ।

ଏମିତି ସଂକଟ ମଧ୍ୟରେ ଥିବାବେଳେ ବହୁ ଦୂରରେ ଆମ ଆଗରେ ଆଶାର ପ୍ରଦୀପଟିଏ ଶିଖା ତୋଳିଲା। ଏ ପ୍ରଦୀପ ଥିଲେ ଜଣେ ସ୍ୱାଧୀନତା ସଂଗ୍ରାମୀଙ୍କର ଏନ୍. ଆର୍. ଆଇ ପୁଅ। ସେ ତାଙ୍କ ପରଲୋକଗତ ପିତାଙ୍କ ଜନ୍ମଶତବାର୍ଷିକୀ ଅବସରରେ ପାଞ୍ଚ ଜଣ ସ୍ୱାଧୀନତା ସଂଗ୍ରାମୀଙ୍କୁ ସମ୍ବର୍ଦ୍ଧନା ଦେବାକୁ ଚାହୁଁଥିଲେ। ପ୍ରତ୍ୟେକଙ୍କୁ କୋଡିଏ ହଜାର ଟଙ୍କାର ଅର୍ଥରାଶି ସହ ମାନପତ୍ର ଓ ଉପଢ୍ୌକନ ଦେବେ। ସେ ପାଞ୍ଚ ଜଣଙ୍କ ମଧ୍ୟରେ କରୁଣୀ ଅଜାଙ୍କ ନାଁ ଥିଲା।

କୋଡିଏ ହଜାର ଟଙ୍କା ପୁରସ୍କାର ରାଶିରେ ତାଙ୍କ ବହିଟି ଛପା ହୋଇଯିବ। ମୁଁ ଉଲ୍ଲସିତ ହୋଇ ପଡିଲି। କରୁଣୀ ଅଜା ଏଥିରେ ଏକମତ ହେଲେ। ତଥାପି ନିଜର ଅସନ୍ତୋଷ ପ୍ରକାଶ କରି କହିଲେ, ଗାନ୍ଧିଦର୍ଶନ ସମ୍ବଳିତ ବହିକୁ ନିଜେ ହାତରୁ ପଇସା ଖର୍ଚ୍ଚ କରି ଛାପିବାକୁ ପଡୁଛି। ମନେ ହେଉଛି ଆଜିକାଲିକାର ପ୍ରକାଶକମାନେ ଗାନ୍ଧିହତ୍ୟାକାରୀ ନାଥୁରାମ ଗଡ଼୍‌ସେ ଠାରୁ କୌଣସି ଗୁଣରେ କମ୍ ନୁହଁନ୍ତି।

ମୁଁ ଅଜାଙ୍କର କ୍ଷୋଭ ହୃଦ୍‌ବୋଧ କଲି। ତାଙ୍କୁ ଆଶ୍ୱାସନା ଦେବାପାଇଁ କହିଲି, ବହିଟିକୁ ଆମେ ନ ଛାପିଲେ ଚୋରକୁ ମାନମାରି ଖପରାରେ ଖାଇବା କଥା ହେବ। ପାଣ୍ଡୁଲିପିରୁ ଯାହା ଜଣା ପଡୁଛି ଶହେ ଦେଢ଼ଶହ ପୃଷ୍ଠା ଭିତରେ ହେବ। ବାଇଣ୍ଡିଂ ନ କରି ପେପର୍ ବ୍ୟାକ୍ କରିବା। କୋଡିଏ ହଜାର ଟଙ୍କା ଭିତରେ ହୋଇଯିବ।

କରୁଣୀ ଅଜାଙ୍କ ମୁହଁରେ ଆଞ୍ଜୁଳାଏ ହସ ଝଲକି ଉଠିଲା। ସେ କହିଲେ – ହଉ ତୁ ଯାହା ଠିକ୍ ଭାବୁଛୁ କର।

କଟକ ସହୀଦ୍ ଭବନର ବର୍ଣ୍ଣାଢ଼୍ୟ ପରିବେଶ ଭିତରେ ଭବ୍ୟ ସମ୍ବର୍ଦ୍ଧନା ଉତ୍ସବ ହୋଇଥିଲା। ଉଦ୍ୟୋକ୍ତାମାନେ ପଠେଇଥିବା କାର୍‌ରେ ମଣ୍ଟୁ ମାମୁଁ ମାଇଁ ଓ

ତାଙ୍କ ଝିଅ ସହ କରୁଣୀ ଅଜାଙ୍କୁ କଟକ ନେଇ ଯାଇଥିଲେ। ଗାଡ଼ିଟା ଥିଲା ଫୋର୍ ସିଟେଡ୍। ମୋ ପାଇଁ ଜାଗା ହେବନାହିଁ। ତେଣୁ ମଣ୍ଟୁ ମାମୁଁ ଦୁଃଖ ପ୍ରକାଶ କରି ବାଇକ୍ କିମ୍ବା ବସ୍‌ରେ ଆସିବା ପାଇଁ ମୋତେ ଅନୁରୋଧ କରିଥିଲେ। ଏତେ ଲୋକ ଯେତେବେଳେ ଯାଉଛନ୍ତି ଅଜାଙ୍କ ଖବର ବୁଝିବାପାଇଁ ମୋର ନିହାତି ଆବଶ୍ୟକ ନାହିଁ ବୋଲି ମୁଁ ମଣ୍ଟୁମାମୁଁଙ୍କୁ ବୁଝେଇ ଦେଇଥିଲି। ସିଏ ବି କରୁଣୀ ଅଜାଙ୍କ ଖବର ବୁଝିବାରେ ଆଦୌ ଅବହେଳା କରିନଥିଲେ। କହିବାକୁ ଗଲେ ସେ ଆବଶ୍ୟକତା ଠାରୁ ସେଥିପ୍ରତି ଅଧିକ ତତ୍ପର ଥିଲେ। ତାଙ୍କ ହାତ ଧରି ମଞ୍ଚକୁ ନେବା, ଅତିଥିମାନଙ୍କ ସହ ଅଜାଙ୍କର ଓ ନିଜ ପତ୍ନୀ କନ୍ୟାଙ୍କ ପରିଚୟ କରାଇବା, ସାମ୍ବାଦିକମାନଙ୍କ ଦ୍ୱାରା ଅଜା ଓ ତାଙ୍କର ଫଟୋମାନ ଉଠାଇବା, ଟିଭି ଚ୍ୟାନେଲ୍‌ମାନଙ୍କର ସାକ୍ଷାତକାର ଓ ସମ୍ବାଦଟି କେମିତି ଅଜା ଓ ତାଙ୍କ ପରିବାରକୁ ହାଇଲାଇଟ୍ କରି ବାହାରିବ ସେ ଦାୟିତ୍ୱ ସେ ନେଇଥିଲେ। ବାପାଙ୍କ ଆଦର୍ଶରେ ସେ କିପରି ଅନୁପ୍ରାଣିତ ହୋଇଛନ୍ତି ସଂକ୍ଷିପ୍ତ ସାକ୍ଷାତ୍‌କାରରେ କହିଥିଲେ। ଉଦ୍ୟୋକ୍ତାମାନଙ୍କୁ ଅନୁରୋଧ କରି ମଞ୍ଚ ଉପରେ ପିତାଙ୍କ ସଂପର୍କରେ ପ୍ରଗଳ୍ଭ ଭାଷଣଟିଏ ବି ଦେଇଥିଲେ।

ମଞ୍ଚ ଉପରେ ଅଜାଙ୍କୁ ମାନପତ୍ର ଉପଢ଼ୌକନ ସହ କୋଡ଼ିଏ ହଜାର ଟଙ୍କାର ଚେକ୍‌ଟିଏ ପ୍ରଦାନ କରାଯାଇଥିଲା। ଫେରିବା ରାସ୍ତାରେ ମଣ୍ଟୁମାମୁଁ ସେଇ ଗାଡ଼ିଭିତରେ ହିଁ ଚେକ୍‌ଟି ତାଙ୍କ ଏକାଉଣ୍ଟରେ ଜମା କରିବାପାଇଁ କରୁଣୀ ଅଜାଙ୍କର ଦସ୍ତଖତ ନେଇଥିଲେ।

ସର୍ତ୍ତ ଅନୁସାରେ ପ୍ରକାଶକଙ୍କ ପାଖରେ ପାଣ୍ଡୁଲିପିଟିର ନବ କଳେବର ପାଇଁ ପ୍ରକ୍ରିୟା ଆରମ୍ଭ ହୋଇଗଲା। ଡି.ଟି.ପି. ପରେ ସେମାନଙ୍କୁ କିଛି ପଇସା ଦେବାକୁ ହେବ। ଅଜାଙ୍କୁ କହଲି। ସେ ମଣ୍ଟୁମାମୁଁଙ୍କୁ ଏ ବିଷୟରେ କିଛି କହିଲେ କି ନାହିଁ କେଜାଣି; ଖାଲି ଏତିକି କହିଲେ, ପ୍ରକାଶକଙ୍କୁ କହ, ସେ ଚଳେଇ ଦେଇଥିବେ। ତାଙ୍କୁ ଏକାବେଳେକେ ସବୁ ପଇସା ଦିଆଯିବ। ପ୍ରକାଶକ ଜଣକ ମୋର ଜଣେ ବନ୍ଧୁ। ପ୍ରତିବର୍ଷ ଅଗଷ୍ଟ ପନ୍ଦରରେ ଆମ ଗାଁ ସ୍କୁଲ୍‌ରେ ବେଶ୍ ଜାକ ଜମକ୍‌ରେ ପାଳିତ ହୁଏ ସ୍ୱାଧୀନତା ଦିବସ। ସେହିଦିନ ବହିଟିର ଉନ୍ମୋଚନ କରିବା ଯୋଜନାରେ ଆମେ ରହିଲୁ। ଦିନ ପାଖେଇ ଆସିଲା। ଯୁଦ୍ଧକାଳୀନ ଭିତ୍ତିରେ ବହି କାମ ବି ସରିଗଲା। ପ୍ରକାଶକ ପଇସା ପାଇଲେ ବହିଦେବେ। ମୁଁ ଅଜାଙ୍କୁ ସେ କଥା କହିଲି। ଅଜା କହିଲେ, ହଉ ମଣ୍ଟୁ ଆସୁ। ସେଦିନ ସଂଧ୍ୟାରେ

ମଣ୍ଟୁମାମୁଁଙ୍କୁ ଅଜା କିଛି କହିବା ପୂର୍ବରୁ ମଣ୍ଟୁମାମୁଁ କହିଲେ, ବାପା ପାର୍ଟି ଅଫିସ୍‌ରେ ମିଟିଂ ଥିଲା, ଆଗାମୀ ନିର୍ବାଚନ ଟିକେଟ ପାଇଁ ଆଶାୟୀ ପ୍ରାର୍ଥୀମାନଙ୍କୁ ନିଜ ନିଜ ନିର୍ବାଚନ ମଣ୍ଡଳିରେ ଶୋଭାଯାତ୍ରା ସହ ଗୋଟିଏ ପାର୍ଟିର ଆୟୋଜନ କରିବାକୁ ହାଇକମାଣ୍ଡ ନିର୍ଦ୍ଦେଶ ଦେଇଛନ୍ତି। ତମେ ତ ଜାଣିଛ ତମ ନାତିର ଇଂଜିନିୟରିଂ ଆଡ୍‌ମିଶନ୍ ପାଇଁ କେତେ କଷ୍ଟରେ ପଇସା ଯୋଗାଡ଼ କରିଥିଲି। ଏବେ ପାର୍ଟିକୁ ଦେବାପାଇଁ ମୋ ସାମର୍ଥ୍ୟ କାହିଁ? ତମର କୋଡ଼ିଏ ହଜାର ଟଙ୍କା ମୁଁ ସେ ବାବଦରେ ଖର୍ଚ୍ଚ କରିଦେଇଛି।

ଆକାଶରୁ ଖସି ପଡ଼ିଲେ ଅଜା। ବ୍ୟସ୍ତ ହୋଇ କହିଲେ - ତୁ ଏମିତି କାହିଁକି କଲୁ? ପ୍ରକାଶକୁ ସେ ପଇସା ଦିଆ ହୋଇଥିଲେ ପ୍ରେସ୍‌ରୁ ବହି ବାହାରିଥା'ନ୍ତା। ତୁ ତ ଥରେ ମତେ ଟଙ୍କା ଉଠେଇବା ପୂର୍ବରୁ ପଚାରି ପାରିଥା'ନ୍ତୁ। ଏବେ କ'ଣ କରାଯିବ? ମଣ୍ଟୁ ମାମୁଁ ମୋ ମୁହଁକୁ ଚାହିଁ କହିଲେ - ତୁ ଟିକେ କୋଉଠୁ ଆଡ୍‌ଜଷ୍ଟ କରିଦେଇଥା। ମୋର ସୁବିଧା ହେଲେ ମୁଁ ତତେ ଦେଇଦେବି। ଆଉ ବେଶି ବାକ୍ୟବ୍ୟୟ ନକରି ମଣ୍ଟୁମାମୁଁ ସେଠାରୁ ଚାଲି ଯାଇଥିଲେ।

ମଣ୍ଟୁ ମାମୁଁଙ୍କର କେବେ ସୁବିଧା ହେବ ମୁଁ ଜାଣେ ନାହିଁ। କିନ୍ତୁ ନିମନ୍ତ୍ରଣ ପତ୍ର ଛପା ସରିଛି। ପଇସା ନଦେଲେ ପ୍ରକାଶକ ବହି ଦେବନାହିଁ। ମୋର ଆଉ କିଛି କରିବାର ନଥିଲା। ମୁଁ ଫେରି ଆସିଲି ଘରକୁ।

ବୋଉ ସବୁ ଶୁଣି ସାରି ତା ବେକର ବିଛା ମାଳିଆ ଚେନ୍‌ଟିଏ ଖୋଲି ମୋ ହାତରେ ଧରେଇ ଦେଇ କହିଲା - ଏଇଟା ମୋ ବୋଉ ମତେ ଦେଇଥିଲା। ବାପାଙ୍କ ଠାରୁ ମୁଁ ଶୁଣିଥିଲି, ମହାତ୍ମାଗାନ୍ଧୀ ଯେତେବେଳେ ଦେଶ ସ୍ୱାଧୀନ କରିବାପାଇଁ ଲୋକମାନଙ୍କ ପାଖରୁ କିଛି ସାହାଯ୍ୟ ମାଗୁଥିଲେ, ସ୍ତ୍ରୀ ଲୋକମାନେ ତାଙ୍କ ଦେହରୁ ଗହଣା ଗାଣ୍ଠିମାନ ଖୋଲି ଦେଉଥିଲେ। ମୁଁ ସେତେବେଳେ ଭାବୁଥିଲି, ମୋ ପାଇଁ ଯଦି ସେମିତି ଅବସର ମିଳିଥା'ନ୍ତା, ମୁଁ ବି ଦେଇଦେଇଥା'ନ୍ତି ମୋ ଗହଣା। କିନ୍ତୁ ମୋ ପାଇଁ ଏପରି ସୌଭାଗ୍ୟ କେବେ ହୋଇନଥିଲା। ଏବେ ମୋର ମନସ୍କାମନା ପୂର୍ଣ୍ଣ ହୋଇଛି। ସେଇ ଗାନ୍ଧି ମହାପୁରୁଷଙ୍କୁ ଗୁରୁ କରି ତାଙ୍କରି ଆଦର୍ଶ ପ୍ରଚାର ପାଇଁ ଅଣ୍ଟା ଭିଡ଼ିଥିବା କରୁଣୀ କକେଇଙ୍କ ବହିପାଇଁ ମୁଁ ଏଇ ହାରଟା ଦେଉଛି। ମୁଁ ସ୍ୱାଧୀନତା ପରିବାରର ଝିଅ। ମୋ ବାପା ତାଙ୍କ ଜୀବନଟା ଉତ୍ସର୍ଗ କରିଦେଇଥିଲେ ଦେଶପାଇଁ। ମୋ ପାଇଁ ଏଇ ଖାନ୍‌ଦାନୀ ହାରଟା କ'ଣ ତା'ଠାରୁ ବେଶୀ ମୂଲ୍ୟବାନ୍?

ମୋର ଉପାୟନ୍ତର ନଥିଲା । ମୁଁ ବୋଉ ହାତରୁ ହାରଟା ଆଣି ଭାବିଯାଉଥିଲି ଆକାଶ ପାତାଳ । ପ୍ରାଇମେରୀ ସ୍କୁଲ ଶିକ୍ଷକ ମୋ ବାପା ଅଦିନରେ ଚାଲିଗଲେ । ଆମକୁ ମଣିଷ କରିବାପାଇଁ ବୋଉ ପାଉଥିବା ଫ୍ୟାମିଲି ପେନ୍‌ସନ୍ ଯଥେଷ୍ଟ ନଥିଲା, ସୁବିଧା ଅସୁବିଧାରେ ସେ ତା'ର ସବୁ ଗହଣା ବିକି ଦେଇଥିଲା, କେବଳ ଏଇ ଗୋଟାକ ଛାଡ଼ି । ଏଇଟା ତା ବୋଉ ସ୍ମୃତିର ସନ୍ତକ ଥିଲା ବୋଲି । ମୁଁ ସେହି ମହାର୍ଘ ସ୍ମୃତି ଚିଜଟିକୁ ହାତରେ ଧରି ଭାବ ବିଗଳିତ ହୋଇଗଲି ମୁହୂର୍ତ୍ତକ ପାଇଁ । ଆଉ କିଛି ବିକଳ୍ପ ପନ୍ଥା ବୋଧେ ଖୋଜୁଥିଲି ମନେ ମନେ ।

ସେ ମୋତେ ଗମ୍ଭୀର ଦେଖି ଆଉଥରେ ତାଗିଦ୍ କଲାପରି କହିଲା - କରୁଣୀ ଅଜାଙ୍କ ଖୁସିଠାରୁ ଏଇ ଗହଣାଟାର ମୂଲ୍ୟ ବେଶି ନୁହେଁରେ । ତୁ ଯା, ଆଉ ଡେରି କର ନାହିଁ ।

ମୁଁ ନୀରବରେ ବାହାରିଗଲି ବାହାରକୁ । ଆଜି ସଂଧ୍ୟା ଭିତରେ ଯେମିତି ହେଉ ବହିଗୁଡିକ ଆଣିବାକୁ ପଡ଼ିବ । ରାତି ପାହିଲେ ଅଗଷ୍ଟ ପନ୍ଦର, ସ୍ୱାଧୀନତା ଦିବସ । ଆହୁରି କେତେ କାମ ବାକି ପଡିଛି ।

# ଲିଭିଲା ନିଆଁର ତାତି

ଘର ଭିତରେ ଦୀର୍ଘ ସମୟ ଧରି ରାଜୁତି କରୁଥିଲା ଗୋଟାଏ ଭୌତିକ ନୀରବତା, ବାତ୍ୟା ବିଧ୍ୱସ୍ତ ପୃଥିବୀର ସ୍ତବ୍ଧତା ପରି। ଗୁଡାଏ ନିଷ୍ଫଳ ଗର୍ଜନତର୍ଜନ କରି ବାପା ବି କ୍ଳାନ୍ତ ହୋଇ ବସି ପଡିଛନ୍ତି ଖଟ ଧାରରେ। ଖଟ ବାଡକୁ ଆଉଜି ଠିଆ ହୋଇଛି ପୁଅ। ମାଆ ଚଟାଣରେ ଗୋଡ଼ ଲମ୍ବେଇ ତଳକୁ ମୁହଁ କରି ବସିଛି। ଝିଅଟା ଥିଲେ ଘରଟା ଭିତରେ ଏପଟ ସେପଟ ହୋଇଥାନ୍ତା। କେତେବେଳେ ରୋଷେଇ ଘରେ ଟୁଂ ଟାଂ ଖୁଡ୍ ଖାଡ୍ କରିଥାନ୍ତା, ବାପା ମାଆଙ୍କୁ ବର୍ଷିଯାଇ କହିଥା'ନ୍ତା, ବେଳ ଆସି ତିନିଟା ବାଜିବାକୁ ବସିଲାଣି। ଆଜି ଖିଆପିଆ ହବ ନା ନାହିଁ? ନହେଲେ କପଡା ଖଣ୍ଡେ ଧରି ଘରର ଯାବତୀୟ ଜିନିଷ ପୋଛି ପରିଷ୍କାର ପରିଛନ୍ନ କରୁଥା'ନ୍ତା। ତାର ଏଇ ଅନୁପସ୍ଥିତି ତ ହେଉଚି ସବୁ ଚିନ୍ତାର କାରଣ। ଗୋଟାଏ ଭୟାବହ ପରିସ୍ଥିତିକୁ ଆମନ୍ତ୍ରଣକରି ଆଣିଛି। କୋଉ ମୂହୁର୍ତ୍ତରେ କି ପ୍ରକାର ପ୍ରଳୟ ଅପେକ୍ଷା କରିଛି, ଚିନ୍ତା କରି ବିଚଳିତ ହୋଇପଡିଲା ମା'। ଆଉ କିଛି ଅନିଶ୍ଚିତତାକୁ ଭାବିବାକୁ ଯାଇ ବାପା ଉଦ୍ଦେଶ୍ୟରେ ମୁହଁ ଖୋଲିଲା -

ଝିଅ ପିଲାଟା। ଦିନେ ନା ଦିନେ ତ ପର ଘରକୁ ଯାଇଥା'ନ୍ତା। ସିଏ ଯଦି

ତା ଇଚ୍ଛାରେ ଗଲା ତ ଯାଉ। କାହିଁକି ବ୍ୟସ୍ତ ତମେ ହେଉଛ ? ଭଲରେ ରହିଲେ ହେଲା।

ବିସ୍ଫୋରଣ କଲାପରି କହିଲେ ବାପା। ଛି-ଛି- ଭଲରେ ରହିବ। କରଣ ଘର ଝିଅ। କେଉଟ ଘର ବୋହୂ ହେବ, ମାଛ ବିକିଯିବ ବଜାରକୁ। କ'ଣ ନା- ଭଲରେ ରହିବ। ଆହୁରି କି ଅଶ୍ରାବ୍ୟ ଶବ୍ଦ ବାହାରି ଆସୁଥିଲା ତାଙ୍କ ତୁଣ୍ଡରୁ। ମା' ତାଙ୍କୁ ରୋକିଲା। ପାଟିଟା କାହିଁକ କରୁଚ ? ଟିକେ ଚୁପ୍ ରୁହ। ସାଇପଡିଶା ଶୁଣିବେ। ଦୁନିଆ ହୁରିହାଟ ହେବ।

ହୁରିହାଟ ପାଇଁ କ'ଣ ବାକି ରଖିଛି ଯେ, ମୁଁ ଚୁପ୍ ରହିବି ? ଖାଲି ତମରି ପାଇଁ ସେ ଏମିତି କାମ କରିଛି ? ମାଆ ହୋଇ ଝିଅର ଖବର ରଖିବନି ତ ଆଉ କିଏ ରଖିବ ? ଆହୁରି ଫେରାଦ ହଉଚ କିର୍ତ୍ତୀମୟୀ ପାଇଁ! ଲାଜ ସରମ ନାହିଁ ତମକୁ ?

ମାଆ କହିଲା, ଛୋଟିଆ ଝିଅ ହୋଇଚି ଯେ ମୁଁ ତାକୁ କାନିତଳେ ରଖିବି ? ଯାହା ହେଇଚି ତ ହେଇଚି, ଆଉ କଥା ବଢ଼ାଅନି। ସେମାନେ ଭଲରେ ଭଲରେ ଫେରିଆସନ୍ତୁ।

ଆଉ ଫେରି ଆସିବାର ପ୍ରଶ୍ନ ନାହିଁ। ବାପା କଣ୍ଠ ଫଟେଇ ବଜ୍ରପାତଟିଏ ପରି ଚରମ ବାଣୀ ଶୁଣେଇ ଦେଲେ। ଯଦି ଫେରିବ ତା ଲାସ୍ ଫେରିବ। ଏଇଟା ମୋର ଶେଷ କଥା।

ଭୋ' କିନା ରଡି ଦେଇ କାନ୍ଦିଲା କଣ୍ଠରେ ମା କହିଲା, କାହିଁକି ଏମିତି କାଳ କଥାଗୁଡ଼ା ତୁଣ୍ଡରେ ଧରୁଛ ମୋ ଛୁଆଟା ପାଇଁ ?

ବାପା ସେମିତି ଗର୍ଜିଲା ସ୍ୱରରେ କହିଲା - କେହି ବି ତା ପାଇଁ ଟୋପାଏ ଲୁହ ଗଡେଇବେନି ଏ ଘରେ। ପ୍ରଳୟ କରିଦେବି ମୁଁ। ଶାଗୁଣା ବିଲୁଆ ବି ଲାସ୍‌ର ପତା ପାଇବେନି।

+୨ ଫେଲ୍ ହୋଇ ବାଲୁଙ୍ଗା ଟୋକାଙ୍କ ସହ ମିଶି ଗୁଣ୍ଡାଗର୍ଦ୍ଦି କରୁଥିବା ପୁଅ କହିଲା, ତମର କିଛି କରିବା ଦରକାର ନାହିଁ ବାପା। ଯାହା କରିବି ମୁଁ କରିବି।

ବାପପୁଅଙ୍କ ଆଖିରେ ନିଆଁ ଜଳୁଥିବା ଦେଖି ମା ଆଖିରେ ନାଚିଗଲା ଆଉ ଗୋଟାଏ ହାଡ ଥରା ସ୍ମୃତି। ଯାହା ମନେ ପଡିଲେ ଏବେ ବି ତା ଦେହର ରକ୍ତ କଞ୍ଚାପାଣି ହୋଇଯାଏ, ଆତଙ୍କରେ ସେ ଶିହରି ଉଠେ। ଗାଁ ସ୍କୁଲରୁ ପଞ୍ଚମ

ପାଶ୍ ପରେ ଗାଁଠାରୁ ତିନି କିଲୋମିଟର ଦୂର ସ୍କୁଲ୍‌କୁ ଗାଁର ପିଲାମାନେ ଯାଆନ୍ତି ପାଠପଢ଼ି। ସାଙ୍ଗସାଥୀଙ୍କ ସହ ସିଏ ଯାଉଥିଲା। ଦଶମ ଶ୍ରେଣୀ ହେଲା ବେଳକୁ ଗାଁର ସବୁଝିଅ ପାଠ ଛାଡ଼ି ସାରିଥିଲେ। କେହି ଫେଲ୍ ହୋଇତ ଆଉ କେହି ଘରକରଣା ଶିଖିବା ପାଇଁ। ଜଣେ ଅଧେ ବାହା ବି ହୋଇଯାଇଥିଲେ। କେବଳ ଏକମାତ୍ର ସେ ରହିଯାଇଥିଲା। ତା ପାଠପଢ଼ା ଆଗକୁ ଜାରି ରହିବା ନେଇ ପ୍ରଶ୍ନ ଉଠିଲା। ଏକୁଟିଆ ଝିଅଟା, ପୁଅ ପିଲାଙ୍କ ସାଙ୍ଗରେ କେମିତି ଯିବ ଏତେ ଦୂର ପାଠ ପଢ଼ି ? ସେ ଭଲ ପାଠପଢୁଥିଲା। ଦ୍ୱିତୀୟ ହେଉଥିଲା ଶ୍ରେଣୀରେ। ଶିକ୍ଷକମାନେ ତା ବାପାଙ୍କୁ ଅନୁରୋଧ କରି ତା ପାଠ ପଢ଼ା ଚାଲୁ ରଖିଥିଲେ। ବିଦ୍ୟାଳୟ ପରିସରରେ ସ୍ୱତନ୍ତ୍ର ସୁରକ୍ଷା ଦେବାପାଇଁ ବି ପ୍ରତିଶ୍ରୁତି ବଦ୍ଧ ହୋଇଥିଲେ ଶିକ୍ଷକମାନେ। ସେଇ ତରଳ ବୟସରେ ବାହ୍ୟ ସୁରକ୍ଷା ସିନା ଦେଇହେବ। ମନ ତଳେ ଉଠୁଥିବା ଝଡକୁ କ'ଣ ବାଡ଼ବତା ଦେଇହେବ ? ମଳିକ ସାହିର ପୋକିଆ ମଳିକ ପୁଅ ସୁକାନ୍ତ। ପଢୁଥିଲା ଦଶମରେ। ଗାଁ ମୁଣ୍ଡରେ ଘର। ସିଏ ବି ଯାଉଥିଲା ସାଙ୍ଗରେ। କ୍ଲାସ୍‌ରେ ସୁକାନ୍ତ ପ୍ରଥମ ହେଉଥିଲା। ପିଲାଟା ଶାନ୍ତ ସ୍ୱଭାବର। ତା ସାଙ୍ଗକୁ ଲାଜକୁଳା। ଭଲ ପାଠ ତ ପଢୁଥିଲା। ଗୀତ ବି ଗାଉଥିଲା ଭଲ। ଛବି ଆଙ୍କୁଥିଲା, ଗାଁ ସ୍କୁଲ ସରସ୍ୱତୀ ପୂଜା, ଗଣେଶ ପୂଜା ବେଳେ ରଙ୍ଗୀନ୍ କାଗଜ ସୁନ୍ଦର ସୁନ୍ଦର ଡିଜାଇନ୍ କରି କାଟୁଥିଲା। ଗାଁର ଝିଅବୋହୂ ମାନେ ତିଆରି କରୁଥିବା ଫଟୋ, ବ୍ୟାଗ୍, ପରଦା, ଘର ସଜେଇବା ଜିନିଷ, ସୋରିଷ ଓ ସାଗୁଦାନା ମିଶେଇ ବିଭିନ୍ନ ଡିଜାଇନ୍‌ର ଘରସଜା ଦ୍ରବ୍ୟର ନକ୍ସା ଆଙ୍କୁଥିଲା। ଏଇ ପ୍ରତିଭାବାନ୍ ପିଲାଟା ପ୍ରତି ଆସକ୍ତ ହୋଇ ଯାଇଥିଲା ସେ। ସେଇଟା ପ୍ରେମ ଥିଲା କି ନିଛକ ସ୍ନେହ ମମତା ଥିଲା, ଏବେବି ଭଲ ଭାବରେ ନିଜକୁ ସେ ବୁଝାଇ ପାରିନି। କିନ୍ତୁ ଆବଶ୍ୟକ ଥାଉ ବା ନ ଥାଉ ସୁକାନ୍ତ ସହ କଥା ହେବାପାଇଁ ତାକୁ ଭଲ ଲାଗୁଥିଲା। ତା'ର ସାନ୍ନିଧ ତାକୁ ଆନନ୍ଦ ଦେଉଥିଲା। ତା'ର ବୁଦ୍ଧିଦୀପ୍ତ କଥାବାର୍ତ୍ତାରେ ସେ ଅଭିଭୂତ ହୋଇପଡୁଥିଲା। ସୁକାନ୍ତ ବି ବେଳ ଅବେଳରେ ବହିପତ୍ର ଆଦାନ ପ୍ରଦାନ ସୂତ୍ରରେ ତାଙ୍କ ଘରକୁ ଆସୁଥିଲା। ଘରର ପୁରୁଷ ଲୋକଙ୍କ ଆଖିରେ ସେ ସବୁ ପଡୁଥିଲେ ବି କେହି ଗୁରୁତ୍ୱ ଦେଉନଥିଲେ।

ସେ ଦିନ କିନ୍ତୁ ଘଟଣା ଥିଲା ସମ୍ପୂର୍ଣ୍ଣ ଅଲଗା। ଖରାଦିନିଆ ଦି' ପ୍ରହର। ଖଞ୍ଜାର ପୁରୁଷମାନେ ବିଶ୍ରାମ ନେଉଥିବା ବେଳେ ଢ଼ିଙ୍କି ଚାଳିଆରେ ମାଇପି ମେଳା ବସେ। ଝିଅ ବୋହୂମାନେ ଏକାଠି ହୁଅନ୍ତି। ଢ଼ଗଢ଼ମାଳି କାନ୍ଦଣା ଗୀତ

ଶିକ୍ଷା ପାଖରୁ ହସ୍ତକର୍ମର କ୍ଲାସ୍ ପର୍ଯ୍ୟନ୍ତ, ସବୁ ସେଇଠି ଚାଲିଥାଏ। ଗୋଟାଏ କପଡାରେ ଫଟୋ ବୁଣିବା ପାଇଁ ଦୁଇଟି ହରିଣର ଚିତ୍ର କରିବାପାଇଁ ସେଦିନ ଡକାଯାଇଥିଲା ସୁକାନ୍ତକୁ। ସୁକାନ୍ତ ତା କାମ ସାରି ଫେରିଯାଉଥିଲା। କେହି ଜଣେ ରସିକା ମହିଳା ସୁକାନ୍ତକୁ ଗୀତଟିଏ ଗାଇବାକୁ ଅନୁରୋଧ କଲା। ତା ପଛକୁ ପଛ ଅନ୍ୟମାନେ ବି ଗୀତ ଶୁଣିବାକୁ ଚାହିଁଲେ ଓ ସୁକାନ୍ତ ସେମାନଙ୍କୁ ଯେମିତି ହେଉ ଗୀତ ଶୁଣାଇବାକୁ ପଡିବ ବୋଲି ଅଡି ବସିଲେ। ଅଗତ୍ୟା ସୁକାନ୍ତ ଜଗନ୍ନାଥଙ୍କ ଭଜନଟିଏ ଆରମ୍ଭ କରିଦେଲା। ତା'ର ମନ ପସନ୍ଦର ଗୀତ।

କୋଠ ଭୋଗ ଖିଆ ମୋ ଚକା ଆଖିଆ

ଉଠ ହେ ପହଡ ଭାଙ୍ଗି - ଉଠ ହେ ପହଡ ଭାଙ୍ଗି....

ଚକା ଆଖିଆଙ୍କ ପହଡ଼ ଭାଙ୍ଗି ଥିଲା କି ନାହିଁ କେଜାଣି, ଏଇ ସୁଲଳିତ ଗୀତର ଛନ୍ଦରେ ବଡବାପାଙ୍କର ପହଡ ଭାଙ୍ଗି ଯାଇଥିଲା। ଖରାବେଳଟାରେ ଏତେ ସୁନ୍ଦର ଗୀତ କୋଉ ଭାଟ ଭିକାରୀ ଗାଉଛି; ପୁଣି ଗମ୍ଭୀରା ଭିତରୁ ? ଢ଼ିଙ୍କି ଚାଲିଆରୁ ଆସୁଛି ଶବ୍ଦ। କୌତୂହଳୀ ହୋଇ ନିଦ ମଳମଳ ଆଖିରେ ବଡ଼ବାପା ପହଞ୍ଚିଗଲେ ଢ଼ିଙ୍କି ଚାଲିରେ। ଦୃଷ୍ଟି ପଥାରୁଢ଼ ହେଲା ସୁକାନ୍ତ। ସେଇ ରୌଦ୍ରଦଗ୍ଧ ମଧ୍ୟାହ୍ନ ଯେମିତି ଲାଭା ଉଦ୍‌ଗୀରଣ କଲା। ଖଞ୍ଜା ତ ଖଞ୍ଜା ଆଖପାଖ ଦଶଖଣ୍ଡି ଗାଁର ଲୋକେ କରପତ୍ରଯୋଡି ରହୁଥିବା ବଡବାପାଙ୍କ ରୁଦ୍ର ମୂର୍ତ୍ତି ଦେଖି ଝିଅ ବୋହୂମାନେ କିଏ କୁଆଡେ ଧାଇଁଲେ। ଏକା ରହିଗଲେ ସୁକାନ୍ତ ଆଉ ସେ। ବଡ଼ବାପାଙ୍କ ଓଠରୁ ତଥାପି ଅଗ୍ନି ବର୍ଷୁଥିଲା। ତୋ'ର ଏତେ ସାହସରେ ମେଞ୍ଚଡ ଟୋକା ! ବାଘ ଘରେ ମିରିଗ ନାଟ କରୁଚୁ ? ଥାପଡଟିଏ ଦେବି ଯେ ତୋ ଗଣ୍ଡିରୁ ମୁଣ୍ଡଟା ଅଲଗା ହୋଇଯିବ। ଆଉ ଦିନେ ଯଦି ତୁ ଚୌଧୁରୀ ଘର ସୀମା ମାଡିଛୁ ତୋ ବଂଶ ଉଛନ୍ନ କରିଦେବି। ଲଜ୍ଜା ଅପମାନ ଓ ଅବଦମିତ କ୍ରୋଧରେ ବରଡାପତ୍ରପରି ଥରୁଥିଲା ସୁକାନ୍ତ। ବଡବାପାଙ୍କ ମୁହଁରୁ ଆଉ କିଛି ଶୁଣିବା ପୂର୍ବରୁ ସେ ନୀରବରେ ମୁଣ୍ଡପୋତି ବାହାରି ଯାଇଥିଲା। ବଡ ବାପାଙ୍କ ଆଗରେ ସେ ରହିଯାଇଥିଲା ଏକା। ତା ପାଦତଳର ମାଟି ଗୁଡାକ ପାତାଳକୁ ଖସି ପଡିଲା ପରି ଲାଗିଥିଲା। ମୁଣ୍ଡ ଚକ୍କର ଖାଇଗଲା। ତଳେ ପଡିଯିବା ଆଗରୁ ସେ କାନ୍ଥଧରି ବସି ପଡିଲା ଢ଼ିଙ୍କି ଉପରେ। ବଡବାପାଙ୍କ ମୁହଁରୁ ତଥାପି ବନ୍ଧୁକରୁ ଗୁଳି ଫୁଟିବା ପରି ବାହାରୁଥିଲା ଶବ୍ଦ ପୁଞ୍ଜ। ପ୍ରଳୟ କରିଦେବି। ଶାଗୁଣା ବିଲୁଆ ବି ଲାସ୍‌ର ପତ୍ତା ପାଇବେନି।

ଯେମିତି ଝଡ଼ପରି ଆସିଥିଲେ ସେମିତି ତୋଫାନ ପରି ଚାଲିଗଲେ

ବଡବାପା । ସ୍ତବ୍ଧ ହୋଇଯାଇଥିଲା ସିଏ । କାହା ଶବର ପତ୍ତା ଶାଗୁଣା ବିଲୁଆ ପାଇବେନି ବଡବାପା କହିଲେ ? ଏକଥା ହୃଦ୍‌ବୋଧ କରିବା ପାଇଁ ତାଙ୍କୁ ବେଶି କାଳ ଲାଗି ନଥିଲା । ସବୁ ବର୍ଷ ପରି ସେ ବର୍ଷ ଖରାଛୁଟି ପରେ ସ୍କୁଲ ଖୋଲିଲା । ସେତେବେଳକୁ ସବୁ ଓଲଟ ପାଲଟ ହୋଇସାରିଥିଲା । ତା'ର ପାଠପଢ଼ାରେ ଡ଼ୋରି ବନ୍ଧା ହୋଇଥିଲା । ତରବରିଆ ଭାବରେ ସଜ ଲଗ୍ନ ସଜ ବାହାରେ ଦିନ୍‌କା ଦିନ୍ ତା'ର ବାହାଘର ହୋଇଯାଇଥିଲା । ମାଲ୍‌କାନଗିରିରେ ଫରେଷ୍ଟ ଗାର୍ଡ ଚାକିରି କରୁଥିବା ଅନାମଧେୟ ବଂଶର ପୁଅ ସହ । ଯାହାର ଆଗପଛ କରି ୩ ଭଉଣୀ ବାହାହେବାପାଇଁ ଥିଲେ । ମୋଟା ଅଙ୍କର ଯାନୀ ଯୌତୁକ ଓ ଟଙ୍କା ସହ ଏମାନଙ୍କର ବାହାଘର ଖର୍ଚ୍ଚ ଉଠେଇ ଦେବାର ସର୍ତ୍ତ ରଖିଥିଲେ ବଡବାପା । ଗାଁରେ ପ୍ରଚାର ହୋଇଥିଲା ବର ଫରେଷ୍ଟ ରେଞ୍ଜର । ଭଲ ପ୍ରସ୍ତାବ ଜୁଟିଲା । ହାତଛଡା କାହିଁକି କରିବା ? ଯୌତୁକ ଦାବି ନାହିଁ । ପିଲାଟା ଟିକେ କଳା, ସେଥିରେ କ'ଣ ଅଛି ? ପୁଅ ପିଲାର କ'ଣ ରୂପ ଖୋଜାଯାଏ ? ସେ ସବୁ ଝିଅମାନଙ୍କ ପାଇଁ ସିନା ! କଟକରେ ବଡ ଖାନାନ୍‌ଦାନୀ ଘର ପିଲା । ବଂଶ ମର୍ଯ୍ୟାଦା ଅଛି, ଏମିତି ପ୍ରସ୍ତାବ କ'ଣ କିଏ ହାତଛଡା କରେ ? ସିଏତ ସୁଖରେ ହେଉ କି ଦୁଃଖରେ ହେଉ, ଘର ସଂସାର କଲା । ପୁଅ ଝିଅର ମାଆ ହେଲା । ସୁକାନ୍ତର କିନ୍ତୁ ଆଉ ଖୋଜ ଖବର ମିଳିଲା ନାହିଁ । ଛୁଟି ପରେ ଆଉ ସିଏ ସ୍କୁଲକୁ ଆସିଲା ନାହିଁ । ତା ସଂପର୍କରେ ଗୁଡାଏ ଶୁଣା କଥା – ଶୁଣିବାକୁ ମିଳୁଥିଲା, କେହି କହୁଥିଲା ସିଏ ଆସାମ ଯାଇଚି ତ ଆଉ କିଏ କହୁଥିଲା ସୁରାଟ । କଟକରେ କୋଉ ସିନେମାରେ ଗୀତ ଗାଇବାକୁ ସୁଯୋଗ ମିଳିଛି ବୋଲି ବି କେହି କେହି କହୁଥିଲେ । ଭୁବନେଶ୍ୱରରେ ଘର ଘର ବୁଲି ଟିଉସନ୍ କରୁଛି ବୋଲି ବି ବେଳେବେଳେ ଖବର ଆସୁଥିଲା । ଖଞ୍ଜାର ଜଣେ ଭାଉଜ ଯିଏ ତା ସହ ଅତି ଅନ୍ତରଙ୍ଗ ଥିଲା, ମନ ଖୋଲି ତା ସହ କଥା ହୋଇପାରୁଥିଲା, ସିଏ ତାକୁ ଚିଠି ଲେଖି ଦେଇଥିଲା ଏସବୁ ଥରେ । ବହୁ ଦିନ ପର୍ଯ୍ୟନ୍ତ ଭାଉଜ ସହ ତା'ର ଚିଠିପତ୍ରର ସଂପର୍କ ରହିଥିଲା । କିନ୍ତୁ ଶେଷ ପର୍ଯ୍ୟନ୍ତ ସୁକାନ୍ତର କେହି ସଠିକ୍ ଖବର ଦେଇ ପାରିନଥିଲେ ।

ସ୍ୱାମୀ ସନ୍ତାନର ସଂସାର ଭିତରେ ସୁକାନ୍ତର ସ୍ମୃତି ତାକୁ ବେଳେବେଳେ ପୀଡା ଦେଉଥିଲା । ଅପରାଧ ବୋଧରେ ତା ହୃଦୟ ଖଣ୍ଡ ବିଖଣ୍ଡିତ ହୋଇଯାଉଥିଲା । ସୁକାନ୍ତ ଯେ ଜୀବନରେ ନାହିଁ ତା'ର ପରତେ ଯାଉ ନଥିଲା ଜମା । ବଡବାପାଙ୍କର ସେଇ ଶାଗୁଣା ବିଲୁଆ ବି ଲାସ୍‌ର ପତ୍ତା ପାଇବେନି ବାକ୍ୟ ବାଣ ମନେ ପଡିଲେ

ତା ମନ ଥରି ଉଠୁଥିଲା। ସୁକାନ୍ତର ସବୁ ଦୁର୍ଯୋଗ ପାଇଁ ସେ ନିଜକୁ ଦାୟୀ କରିଥିଲା। ଡ଼ିଙ୍କି ଚେଲିଆକୁ ସିଏ ତାକୁ ଡାକିଥିଲା। ଭଲ ପିଲାଟିଏ ବୋଲି, ଭଲ ପଢୁଥିଲା ବୋଲି, ଭଲ ଚିତ୍ର ଆଙ୍କୁଥିଲା ବୋଲି, ଭଲ ଗୀତ ଗାଉଥିଲା ବୋଲି। ସୁକାନ୍ତର ସବୁ ଭଲ ପଣ ତା ଆଖିରେ ଶତ ଗୁଣିତ ହୋଇ ଝଟକି ଉଠୁଥିଲା। ହୃଦୟର କେଉଁ ଏକ ନିଭୃତ କୋଣରେ ସୁକାନ୍ତ ପାଇଁ ବିନ୍ଦୁଏ ଆବେଗ ଛଳ ଛଳ ହେଉଥିଲା। ସେଇ ଛଳ ଛଳ ବିନ୍ଦୁଟି ସ୍ଥିର ରୂପ ନେବା ପୂର୍ବରୁ ସବୁ ଶେଷ ହୋଇଯାଇଥିଲା। ତାକୁ ଏକ ଅବାଂଛିତ, ଅନାକାଙ୍‌କ୍ଷିତ ଓ ପ୍ରେମ ପ୍ରୀତି ହୀନ ଦୁନିଆ ସହ ସାଲିସ କରିବାକୁ ହୋଇଥିଲା। ସେ ତୁଣ୍ଡ ଖୋଲି ନଥିଲା। ବଡବାପା ଝିଅଟାକୁ ପଚେଫଳ ପରି ଏ ପରିବାରରେ ଯେମିତି ଗୁଞ୍ଜି ଦେଲେ, ତା'ର ଖୁଣ୍ଟା ବି ମିଳୁଥିଲା ଅଗ୍ନିଦେବତାକୁ ସାକ୍ଷୀ ରଖି ବାହା ହୋଇଥିବା ସ୍ୱାମୀଟା ଠାରୁ। ଏକା ଗେରସ୍ତ ସାତ ସଉତୁଣୀ। ସଉତୁଣିଆ ଗଞ୍ଜଣାରୁ ଏ ପର୍ଯ୍ୟନ୍ତ ବି ସେ ମୁକ୍ତି ପାଇ ନଥିଲା। ସନ୍ଦେହ ଅବିଶ୍ୱାସ ଅସୂୟାର ହୁଲି ଡଙ୍ଗାଟିରେ ବସି ସେ ସଂସାର ସାଗର ପାର ହେବାପାଇଁ ପ୍ରାଣାନ୍ତକ ଉଦ୍ୟମ କରୁଥିଲା। ସେ ବଞ୍ଚୁଥିବା ଜୀବନଟା ଜୀବନ୍ତ ମରଣ ହିଁ ଥିଲା। ଦୀର୍ଘ ଦିନ ଧରି ତା ମନତଳେ ଚେପି ହୋଇ ରହିଥିବା ନୀରବ ବିଦ୍ରୋହ ଏବେ ବିସ୍ଫୋରକ ରୂପ ନେଇଥିଲା। ଝିଅଟା ଯେ ଭୁଲ୍ କରିଛି, ଏହା ତା ଅନ୍ତରାତ୍ମା ଆଦୌ ମାନୁ ନଥିଲା। ଝିଅଟା ଯାଇଛି, ତା ମନର ମଣିଷଟା ସହ ତ ଯାଇଛି। ସିଏ ତାକୁ ସୁଖରେ ରଖିବ। ନିରୋଳା ଭଲ ପାଇବା ଟିକେ ଦେବ। ସ୍ନେହ ପ୍ରେମ ପ୍ରଣୟରେ ଛଳ ଛଳ ହେବ ତା ଜୀବନ। ପ୍ରୀତିମୟୀ ହୋଇ ସେ ବଞ୍ଚିବ ମାଆ ପରି ଶୁଷ୍କ ରକ୍ଷ ନିଷ୍କରୁଣ ତତଲା ବାଲି ଉପରେ ପଦ ଥାପି ଛଟପଟ ହେବନାହିଁ। ସେ ଠିକ୍ କରିଛି। ବୁଦ୍ଧିମତୀ ପରି କାମ କରିଛି। ପିଲାଟାର ନାଁ ବାପା କାନରେ ପଡୁ ପଡୁ ବାପା ଝିଅକୁ ବିଷ ଦେବାର ଚରମ ନିଷ୍ପତ୍ତି ଶୁଣେଇ ଥିଲେ, ସିଏ କେବେ ବି କେଉଟ ଘର ପିଲା ସହ ଝିଅକୁ ବାହା ଦେଇ ନଥାନ୍ତେ। ମାଆ ଠାରୁ ବଳି ଝିଅର ଯନ୍ତ୍ରଣା ବଢ଼ି ଯାଇଥା'ନ୍ତା। ଆଉ ଦୁର୍ବଳ ହେଲା ନାହିଁ ମାଆ। ଶାଗୁଣା ବିଲୁଆ ଶବର ସନ୍ଧାନ ନପାଇବାର ଧମକରେ ସେ ଥରେ ନୀରବ ରହି ଯେଉଁ ଅପରାଧ କରିଛି, ସେ ତା'ର ପ୍ରାୟଶ୍ଚିତ କରିବ। ପଚିଶ ବର୍ଷ ତଳୁ ଲିଭି ଯାଇଥିବା ଅଗ୍ନି ସ୍ଫୁଲିଙ୍ଗଟିଏ ଏବେ ପାଉଁଶ ତଳୁ ଆତ୍ମସତ୍ତା ଜାହିର କରୁଥିଲା। ଜିକି ଜିକି ହୋଇ ତା'ର ସର୍ବାଙ୍ଗକୁ ସଞ୍ଚରି ଗଲା। ସେ ବିଚଳିତ ହୋଇପଡିଲା। କୌଣସି ପରିସ୍ଥିତିରେ ସେ ସେଇ ଲୋକହର୍ଷଣକାରୀ ଇତିହାସର ପୁନରାବୃତ୍ତି

କରିବାକୁ ଦେବ ନାହିଁ। ମିଛ ଅହମିକା ଗ୍ରସ୍ତ ଜରଦ୍‌ଗବଙ୍କ ସର୍ବଗ୍ରାସୀ କବଳରୁ ଦୁଇଟା ନିରୀହ ନିଷ୍ପାପ ଜୀବନକୁ ବଞ୍ଚାଇବାକୁ ହେବ। ସେ ସେମାନଙ୍କର ସୁରକ୍ଷା କବଚ ହେବ। ତା' ଭିତରେ ଯେମିତି ସେଇ ସୁପ୍ତ ଅଗ୍ନି ସ୍ଫୁଲିଙ୍ଗଟି ଲହ ଲହ ଶିଖା ତୋଳି ନାଚି ଉଠିଲା। ସବୁ ଭୟ ଭ୍ରାନ୍ତି ଅସହାୟତା ଅପସରିଗଲା ନିମିଷକେ। କି ଏକ ଦିବ୍ୟ ତାଡନାରେ ସେ ଉଠି ପଡ଼ିଲା ଚଟାଣରୁ। ତଳେ ଲୋଟି ପଡିଥିବା ଶାଢ଼ୀର ଅଞ୍ଚଳକୁ ଉଠେଇ ଆଣି ବୀରଦର୍ପରେ ଅଣ୍ଟା ଚାରିପଟେ ଭିଡି ନେଲା। କାଳିସି ଲାଗିଲା ପରି ସେ ଧାଇଁ ଆସିଲା ରାଜ ରାସ୍ତାକୁ। ଠିକ୍ ସେତିକି ବେଳକୁ ସାମ୍ନାପଟୁ ଆସୁଥିଲା ଅଟୋଟିଏ। ସେ ଦୁଇ ବାହୁ ବିସ୍ତାରି ସେଇ ଅଟୋ ଆଗରେ ଠିଆ ହୋଇଗଲା। ସତେ ଅବା ହୁତୁହୁତୁ ଅଗ୍ନି ପିଣ୍ଡୁଳାଟିଏ। ଅଟୋଟା ଧଡ୍‌ଧଡ୍ କରି ଠକ୍ ହୋଇ ରହିଗଲା। ଅଟୋ ଚାଳକ ଆଶ୍ଚର୍ଯ୍ୟ ହୋଇ ଏଇ ମଙ୍ଗଳମୟୀ ଅଥଚ ରୁଦ୍ରମୂର୍ତ୍ତିକୁ ଜିଜ୍ଞାସୁ ଦୃଷ୍ଟିରେ ଚାହିଁଲା - ସେ ଆଦେଶ ଦେବା ଶୈଳୀରେ କହିଲା -

"ପୋଲିସ୍ ଷ୍ଟେସନ୍"

"ପଚାଶ ଟଙ୍କା ନେବି"

ସେ ଗମ୍ଭୀର ହୋଇ କହିଲା - "ଠିକ୍ ଅଛି"।

ଅଟୋ ଛୁଟି ଚାଲିଲା ଆଗକୁ।

# ଜଉ ପେଡିରେ ଜୀବନ

ଶଙ୍ଖାରୀ ଘରର ଝିଅ ଶକୁନ୍ତଳା। ତା ହାତ ତିଆରି ଜଉଶଙ୍ଖାରେ କେତେ ଅଭିଆଡୀ ଝିଅଙ୍କର ବାଡୁଅ ଦୋଷ କଟୁଥିଲା। ଅଥଚ ସେ ନିଜେ ରହିଗଲା ସେମିତି ଅଭିଆଡୀ ହୋଇ। ସେ ହାତରେ ଚୁଡି ପିନ୍ଧୁଥିଲା। କିନ୍ତୁ ତାହା ସଧବାର ସନ୍ତକ ନଥିଲା। ଘର ସଂସାର କରିବା ତା କପାଳରେ ଲେଖା ନଥିଲା। ଯେଉଁ ସମୟରେ ଝିଅଟାଏ ରଙ୍ଗୀନ୍ ସ୍ୱପ୍ନରେ ମସ୍‌ଗୁଲ ରହିବା କଥା ସେତେବେଳେ ବଣରୁ ଅଣାଯାଇଥିବା କଳା କିଟିକିଟି ଅପରିଷ୍କାର ଲାଖମାନଙ୍କୁ ରଙ୍ଗୀନ୍ କରିବା କାର୍ଯ୍ୟରେ ନିଜକୁ ବ୍ୟସ୍ତ ରଖିଲା। ସେଥିରୁ କାଠିକୁଟା ଧୂଳିମଳି ବାହାର କରି ବାଲ୍ଟିବାଲ୍ଟି ପାଣିରେ ଧୋଇଲା। ନିଆଁ ଉହ୍ମେଇ ପାଖରେ ସିଝି ଲାଖକୁ ତରଳେଇ ତାକୁ ବିଶୋଧନ କଲା। ବିଶୋଧିତ ଲାଖକୁ ବାଉଁଶ ନଳାରେ ବୋଳିଲା। ସେଇ ବାଉଁଶ ନଳାକୁ ପୁଣି ନିଆଁ ଧାସରେ ତରଳାଇ ମଣ୍ଡ ପ୍ରସ୍ତୁତ କଲା। ସେଇ ମଣ୍ଡରେ ମିଶେଇଲା ରଙ୍ଗ। ତାହା ବି ସେଇ ନିଆଁ ଉହ୍ମେଇରେ। ସେଇ ରଙ୍ଗମିଶା ଜଉମଣ୍ଡକୁ ଟେରା କୋଟା କାମ ଉପରେ ବୋଳି ନାନା ପ୍ରକାର କୋଟୀକମରେ ଚିତ୍ର ବିଚିତ୍ର କଲା। ଖାଲି ମାଟିର ଟେରାକୋଟା ନୁହେଁ, ବାଉଁଶ ତିଆରି ପେଡି, ପଇଡ, ବେଲ ଆଦି ଉପରେ

ଜଉପୁଟ ଦେଇ ଯେଉଁ କାମ ହୁଏ ତାହା ବି ସେଇ ନିଆଁ ଉହ୍ମେଇରେ । ତା ଜୀବନର ସବୁ ତାତି ସେଇ ଜଉମଣ୍ଡକୁ ଆହୁରି ରଙ୍ଗୀନ କରିଦେଇଥିଲା । ଆହୁରି କାରୁକଳା ପୂର୍ଣ୍ଣ କରି ଦେଇଥିଲା । ଭୋକ ଶୋଷ ଭୁଲି ସେ ସେଇ ନିଆଁ ଉହ୍ମେଇ ପାଖରେ ବସୁଥିଲା ଦିନରାତି । ତା'ର ସୁନା ଖଡ଼ିକା ପରି ଗୋରା ତକ୍ ତକ୍ ଦେହଟା ସିଝି କଳାକାଠ ପଡିଲା । ନିଆଁ ଧାସରେ ବସି ବସି ତା ପେଟଟା ଏମିତି ବିଗିଡ଼ି ଗଲା ଯେ ମାଣ୍ଡିଆ ପେଜ ପଖାଳ ତୋରାଣି ବିନା ତାକୁ ଆଉ କିଛି ରୁଚିଲା ନାହିଁ । ନାହିଁ ନଥିବା ପେଟ ଯନ୍ତ୍ରଣାରେ ସଢ଼ିଲା । ତଥାପି ସେ ସେଇ ନିଆଁ ଉହ୍ମେଇର ପାଖ ଛାଡିଲା ନାହିଁ । ମାଆ ଆରପାରିକୁ ଯିବାର ୪୦ ବର୍ଷ ବିତି ଗଲାଣି । ମାଆର ମୃତ୍ୟୁ ଶଯ୍ୟା ପାଖରେ ସେ ତାକୁ ଯେଉଁ ପ୍ରତିଶ୍ରୁତି ଦେଇଥିଲା, ତାକୁ ରକ୍ଷା କରିବାପାଇଁ ନିଜର ସୁଖ, ସ୍ୱପ୍ନ, କଳ୍ପନା ଭବିଷ୍ୟତ ସବୁ କିଛି ନେଇ ନିଆଁ ଉହ୍ମେଇରେ ଅଜାଡି ଦେଲା । ଶଙ୍ଖାରୀ ବଂଶର କୌଳିକ ବୃତ୍ତି, ଐତିହ୍ୟ, ପରମ୍ପରା, ସ୍ୱାଭିମାନ ଅକ୍ଷୁଣ୍ଣ ରଖିବାର ସଂକଳ୍ପ ନେଲା । ତା ବାପାକୁ ସିଏ ଦେଖି ନଥିଲା । ସେଇ ନିଆଁ ଉହ୍ମେଇ ପାଖରେ ବସି କାମ କରୁକରୁ ତାକୁ ଗ୍ୟାସଷ୍ଟିକ୍ ହେଲା । ଗ୍ୟାସ୍ଷ୍ଟିକ୍‌ରୁ ଅଲସର । ଯେତେ ଔଷଧ ପତ୍ର ଖାଇଲେ ବି କାହିଁରେ କିଛି ହେଲା ନାହିଁ । ନିଆଁ ଧାସରେ ନ ବସିବା ପାଇଁ ଡାକ୍ତର ପରାମର୍ଶ ଦେଲେ । ସେ ମାନିଲା ନାହିଁ । କୌଳିକ ବୃତ୍ତି ବୁଡିଯିବ । ଲାଖ ଶିଳ୍ପ ଲୋପପାଇଯିବ । ଆଜିକାଲିକା ପିଲା କୁଳ ବେଉସାରୁ ମୁହଁ ଫେରେଇଲେଣି । ସିଏ ଯଦି ଏଥିରୁ ମୁହଁ ଫେରାଇବ ତେବେ ଲୋକେ ଭୁଲିଯିବେ ଯେ ନବରଙ୍ଗପୁର ଶଙ୍ଖାରୀ ପୁଅ ହାତରେ ବିଶ୍ୱପ୍ରସିଦ୍ଧ ଲାଖ କାମ ହେଉଥିଲା । ଏଇ ଜଉ କାରିଗରମାନଙ୍କ ଭିତରେ ସେ ଥିଲା ମୁଣ୍ଡିଆଳ । ଏଇ ରାଜୀବ ଲୋଚନ ପାତ୍ରର ହାତ କାମ ରାଜାଘର ଶୋଭା ବଢ଼ାଉଥିଲା । ତାରି ହାତର ଫଗୁପେଣ୍ଡୁରେ ରାଜା ଘରେ ଖେଳା ହେଉଥିଲା ଫଗୁ । ରାଜା ତାଙ୍କର ଖେଳ ସାଥୀଙ୍କ ସହ ଏଇ ଫଗୁପେଣ୍ଡୁରେ ରଙ୍ଗ ଖେଳୁଥିଲେ । ରାଜା ଘରର ସେ ଥିଲା ଖାସ୍ ମେହମାନ୍ । ତା ହାତ ତିଆରି ହାତୀଘୋଡା କଣ୍ଢେଇ ଆଦି ବିଭିନ୍ନ ଖେଳନା ଜେମାମାନଙ୍କର ଅତିପ୍ରିୟ ଖେଳନା ଥିଲା । ରାଣୀ ଅନ୍ତଃପୁରରେ ଜଉ ଶଙ୍ଖା ଓ ଜଉ ପେଡିର ଖୁବ୍ ଆଦର ଥିଲା । ଜୟପୁର ରାଜା ସମ୍ମାନ ଓ ସ୍ୱୀକୃତି ସ୍ୱରୂପ ଦେଇଥିବା ତମ୍ବାପଟା ଏବେବି ସିଏ ସାଇତି ରଖିଛି । ସିଏ ଏବେ ଯଦି ଏ କାମ ଛାଡିଦେବ ତ ଶଙ୍ଖାରୀ କୂଳ ତା ପରିଚୟ ହରେଇବ । ତା ବାପା ଅଜାଙ୍କ ନାଁ ଗାଁ ବୁଡିଯିବ । ଉପରକୁ ଯାଇ ତା ପିତୃପୁରୁଷଙ୍କୁ କି ଜବାବ ଦବ ? ସେ

ଛାଡିଲା ନାହିଁ ତା ବେଉସା। ଗୋଟିଏ ପଟେ ପରିବାରର ଗୁରୁ ଦାୟିତ୍ୱ, ପୁଣି କୌଳିକ ବୃତ୍ତିକୁ ବଞ୍ଚେଇ ରଖିବାର କର୍ତ୍ତବ୍ୟ। ରାଜାରାଜୁଡା ଅମଳ ଗଲାପରେ ଜଉକାମର ବଜାରରେ ଆଉ ଚାହିଦା ନାହିଁ, କଞ୍ଚାମାଲ ବି ଦିନକୁ ଦିନ ଆକାଶ ଛୁଆଁ ଦାମ୍ ହେଉଛି, ପେଟପୋଷି ହେଉନି ବୋଲି ଶଙ୍ଖାରୀ କୂଳର ଅନ୍ୟମାନେ ଏ ବୃତ୍ତିରୁ ମୁହଁ ମୋଡିଲେଣି। ସିଏ କିନ୍ତୁ ଜୀବନକୁ ବାଜି ଲଗେଇ ଜଉଶିଳ୍ପକୁ ବଞ୍ଚେଇବାକୁ ଚାହିଁଲା। କିନ୍ତୁ ବିଧାତା ବାମ ହେଲେ, ଆୟୁଷ ବଳ ଦୁର୍ବଳ ହେଲା। ଅଧା ବୟସରୁ ରକ୍ତବାନ୍ତି କରି କରି ସେ ଚାଲିଗଲା ସେ ପୁରୁକୁ। ସେତେବେଳକୁ ତା'ର ଜନ୍ମ ହୋଇନଥିଲା। ଭାଇମାନେ ଛୋଟ ଛୋଟ। ବାପ ମରିବାର ଦୁଇମାସ ପରେ ତା'ର ଜନ୍ମ। ଚିଙ୍ଗୁଡି ଭେଳାକୁ କେମିତି ମଣିଷ କରିବ ମାଆ, ବଜ୍ର ପଡିଗଲା ମୁଣ୍ଡରେ। ସେ ଘଣ୍ଟାକୁ ଘଣ୍ଟା ଛୋବ ଯାଉଥିଲା। କିନ୍ତୁ ଏ ଅସହାୟ ଭାବ ବେଶିଦିନ ରହିନଥିଲା ତା ମାଆର। ସ୍ୱାମୀର କ୍ରିୟାକର୍ମ ସରୁ ନ ସରୁଣୁ ସିଏ ଆବୋରି ନେଲା ଏଇ ନିଆଁ ଉହ୍ନେଇକୁ। ତା ବଞ୍ଚିବାର ରାହା, ସ୍ୱାମୀର ତପସ୍ୟା, ପୂର୍ବପୁରୁଷଙ୍କ ଗର୍ବ ଗଉରବ। ସେଇ ନିଆଁ ଉହ୍ନେଇରୁ ସେ ତା ଚିଙ୍ଗୁଡି ଭେଳାଙ୍କ ପାଇଁ ଦାନାକନା ବାହାର କରି ଆଣିଲା। ତା' ପିଲାଙ୍କର ପାଠପଢ଼ା ଖର୍ଚ୍ଚ ତୁଲେଇଲା ସେଇ ନିଆ ଉହ୍ନେଇ। ସେମାନେ ମଣିଷ ହେଲେ। ନିଜ ଗୋଡରେ ଠିଆ ହେଲା ପରେ ସେମାନେ ଭୁଲିଗଲେ ନିଆଁ ଉହ୍ନେଇକୁ। କୌଳିକ ବୃତ୍ତି ପ୍ରତି ସେମାନଙ୍କର ଆସ୍ଥା ରହିଲା ନାହିଁ। କିଏ ଶିକ୍ଷକ ଚାକିରି କଲା ତ କିଏ କିରାଣୀ ହେଲା। ଆଉ କେହି ଘରୋଇ କମ୍ପାନୀରେ ପଛେ ଚାକିରି କରି ପେଟ ପୋଷିଲେ, ନିଆଁ ଉହ୍ନେଇର ପାଖ ପଶିଲେ ନାହିଁ। ସ୍ୱାମୀର ବିୟୋଗ ଯେତିକି ଯନ୍ତ୍ରଣା ଦେଇନଥିଲା ମାଆକୁ, ସନ୍ତାନମାନଙ୍କର କୌଳିକ ବୃତ୍ତିପ୍ରତି ବିମୁଖତା ତାଠାରୁ ଅଧିକ ପୀଡା ଦେଲା। ସେ ସମ୍ପୂର୍ଣ୍ଣ ଭାଙ୍ଗିତୁଟି ପଡୁଥିଲା। ଏତିକିବେଳେ ମାଆ ପାଖକୁ ପଟେ ହେଇ ଠିଆ ହୋଇଥିଲା ଶକୁନ୍ତଳା। ମାଆର ଭଲ କଳାଜ୍ଞାନ ଥିଲା, ସିଏ ଜଉଶିଳ୍ପକୁ କେବଳ ଶଙ୍ଖା, ପେଡି, ଜଗନ୍ନାଥ ବଳଭଦ୍ର ସୁଭଦ୍ରା ମୂର୍ତ୍ତି ଭିତରେ ସୀମିତ ରଖିଲା ନାହିଁ। ଲୋକମାନଙ୍କର ଚାହିଦାକୁ ଆଖି ଆଗରେ ରଖି ସେ ନୂଆ ନୂଆ ଜିନିଷ ତିଆରିରେ ମନ ଦେଲା। ପେନ୍‌ଷ୍ଟାଣ୍ଡ, ମାଛ, କଇଁଚ, କଣ୍ଢେଇ, କଳସ ପଇଡ ଭଳିକି ଭଳି କଳାତ୍ମକ ଉପହାର ସାମଗ୍ରୀ। ଘର ସଜେଇବା ପାଇଁ ଭିନ୍ନ ଭିନ୍ନ ଚିଜ। ଅତି ପିଲାଟି ଦିନରୁ କୌତୂହଳୀ ହୋଇ ଶକୁନ୍ତଳା ମାଆର ଦକ୍ଷ ହାତ ଚାଳନାକୁ ଲକ୍ଷ୍ୟ କରୁଥିଲା। ବେଲ କଷି ପଇଡ ଚାଙ୍ଗୁଡି ଓ ଟେରାକୋଟା କାମ ଉପରେ ଜଉମଣ୍ଡ

ବୋଲୁଥିଲା । ଯେତେ ମନା କଲେ ବି ସେ ଶୁଣୁ ନଥିଲା । ସପ୍ତମ ପାଶ୍ କଲାପରେ ସେ ଆଉ ସ୍କୁଲକୁ ଯିବାକୁ ଚାହିଁଲା ନାହିଁ । ମାଆ ନିଆଁ ଉହ୍ନେଇ ପାଖରେ ବସିଥିଲାବେଳେ ସେ ରୋଷେଇ ବାସ କରୁଥିଲା, ଭାଇମାନଙ୍କୁ ଖାଇବା ପିଇବା ବୁଝିସାରି ମାଆକୁ ସହାୟତାର ହାତ ବଢ଼େଇ ଦେଇଥିଲା । ମାଆ ହାତରୁ ଛଡେଇ ହାଲକା କାମ ସବୁ କରୁଥିଲା । ଭାଇମାନେ ତ ନିଆଁ ପାଖରେ ପଶନ୍ତି ନାହିଁ, ସେମାନେ କାମ ଦେଖିବେ କେମିତି ? ସେମାନେ କେବଳ କଞ୍ଚାମାଲ ଯୋଗାଡରେ ସାହାଯ୍ୟ ସହାୟତା କରନ୍ତି । କଞ୍ଚାମାଲ କୋଉଠି ହାତ ପାହାନ୍ତାରେ ମିଳେ ନାହିଁ । ଝରିଗାଁ ରାଇଘର କଳାହାଣ୍ଡିର ଜୟପାଟଣାରୁ ଆସିବ ଲାଖ, କୋରାପୁଟରୁ ଆସିବ ଟେରାକୋଟା କାମ, ମାଟି କଳସ ସହ ବିଭିନ୍ନ ପ୍ରକାର ମାଟି ତିଆରି ଜିନିଷ ଶୁଖିଲା ପଇଡ ଓ ବେଲ, ବାଉଁଶ ତିଆରି ଛୋଟବଡ ପେଡି ସହ ଅନ୍ୟାନ୍ୟ ଗୃହ ଉପକରଣ ବ୍ରହ୍ମପୁରରୁ ଆସେ । ଭାଇମାନେ ବାହାରେ ବାହାରେ ରହି ଏ କାର୍ଯ୍ୟରେ ସାହାଯ୍ୟ କରନ୍ତି । ମାଆ ମନରେ କ୍ଷୋଭ ଆସେ, ଆଶଂଙ୍କା ଆସେ ଶଙ୍ଖାରୀ କୁଳର ଅସଲ ପରିଚୟ ଏଇଠୁ ବୁଡିଯିବ । ଖାଲି ଲୋକକଥା ହୋଇ ରହିଯିବ ଏ କଳା । ମୁଁ ମରିଗଲେ ଏ କଳା ବି ମରିଯିବ, ମୋ ସାଥୀରେ । ତୋ ବାପା ଯାହାକୁ ବଞ୍ଚେଇ ରଖିବାପାଇଁ ଜୀବନ ଦେଲେ ମୁଁ ତାକୁ ଆଗକୁ ବଢ଼େଇ ପାରିଲିନି । ମାଆ ଆଖିରୁ ଝରିପଡେ ଦୁଇ ବୁନ୍ଦା ଲୁହ ।

ମାଆ ଆଖିରୁ ତା କୁନିକୁନି ହାତରେ ଲୁହ ପୋଛି ଦେଇ ଶକୁନ୍ତଳା କହେ, ତୁ ବ୍ୟସ୍ତ କାହିଁକି ହେଉଚୁ ? ଭାଇମାନେ ନ କରନ୍ତୁ ମୁଁ ପରା ଅଛି, ମୁଁ ବଞ୍ଚେଇ ରଖିବି ଏ କଳା ।

ମାଆ ତା ମୁଣ୍ଡ ଉପରେ ସ୍ନେହ ବୋଳା ପାପୁଲି ବୁଲେଇ କହେ ହଁ-ମୁଁ ଜାଣିଛି, ତୁ ପାରିବୁ । ହେଲେ ତୁ କ'ଣ ସବୁ ଦିନେ ଏଇଠି ଥିବୁ ? ବାହା ହେବୁନି ? ତୋ ଶାଶୁ ଘରକୁ ଯିବୁନି ?

ମାଆକୁ ଆଶ୍ୱାସନା ଦେଇ ସେ କହିଥିଲା – ନାଇଁ ମା' ବାହା ହେବିନି କି ମୁଁ କୁଆଡେ ଯିବିନି । ଏଇଠି ରହି ଆମ କୌଳିକ ବୃତ୍ତିକୁ ମୁଁ ବଞ୍ଚେଇ ରଖିବି ।

ତୁ ଯେମିତି ସବୁ କରୁଛୁ ମୁଁ ବି କରିବି । ବାଲ୍ୟ ଚପଳତା ବଶତଃ ସେ ଯେଉଁ କଥାଟି କହି ଦେଇଥିଲା ତାହା ଯେ ଏମିତି ଭୀଷ୍ମ ପ୍ରତିଜ୍ଞା ପରି ପଥର ଗାର ହୋଇ ରହିଯିବ, କେହି କଳ୍ପନା କରିନଥିଲେ ।

ଏବେ ତା ପାଖରେ ମାଆ ନାହିଁ, ଭାଇମାନେ ଯିଏ ଯାହା ଧନ୍ଦାରେ

ବୁଡିରହି ଜୀବିକା ନିର୍ବାହ କରୁଛନ୍ତି। ଭଉଣୀମାନେ କିଏ କୁଆଡ଼େ ଶାଶୁଘର ଖଟୁଛନ୍ତି। ସେମାନଙ୍କର ଲାଖ ଶିଳ୍ପପ୍ରତି କେବେ ବି ଶ୍ରଦ୍ଧା ନଥିଲା କି ଏବେ ବି ନାହିଁ। ଅଣ୍ଟା ଭିଡିଛି ଶକୁନ୍ତଳା। ବୁଡି ଯାଉଥିବା କଳାକୁ ଉଦ୍ଧାର କରିଛି। ଭାଉଜ, ଝିଆରୀ, ପୁତୁରା ବୋହୂ ଓ ସାହିଭାଇରେ ଝିଅବୋହୂଙ୍କୁ ଏକାଠି କରି ସେ ବଞ୍ଚେଇ ରଖିଛି ଲାଖଶିଳ୍ପ। ଦେଶ ବିଦେଶକୁ ରପ୍ତାନୀ ହେଉଛି ବିଭିନ୍ନ ପ୍ରକାର ଲାଖ କାମ। ମାନବ ସମ୍ବଳ ବିକାଶ ତରଫରୁ ଅନ୍ୟଝିଅମାନଙ୍କୁ ଲାଖ ଜିନିଷ ତିଆରିର ତାଲିମ ଦେଉଛି। ଦିଲ୍ଲୀ ଦରବାରକୁ ଯାଇ ରାଷ୍ଟ୍ରପତିଙ୍କ ହାତରୁ ପୁରସ୍କାର ଆଣିଛି, ସମ୍ମାନିତ ହୋଇଛି, ସମ୍ବର୍ଦ୍ଧନା ପାଇଛି। ରାଜ୍ୟ ବାହାରକୁ ଯାଇ ଲାଖ ଶିଳ୍ପ ତାଲିମ ଦେଇଛି। ଭାରତ ବାହାରେ ସିଙ୍ଗାପୁର, ମିଆଁମାର, ନେପାଳ ଆଦି ଦେଶରେ ଓଡ଼ିଶାର କଳା ସଂସ୍କୃତିକୁ ବିକଶିତ କରିଛି। ଦିଲ୍ଲୀ ମହୋତ୍ସବମାନଙ୍କରେ ଷ୍ଟଲ୍ ନେଇ ଲାଖ ଶିଳ୍ପର ପ୍ରଦର୍ଶନ କରିଛି। ନୂଆ ପିଢ଼ିର ଝିଅମାନଙ୍କ ହାତକୁ କଳା କୌଶଳରେ ଭରି ଦେଇଛି। ସେମାନଙ୍କ କଅଁଳ ହାତରେ ଯେତେବେଳେ ସେମାନେ ଟେରାକୋଟା କାମ ଉପରେ ଜଉ ଲେପ ଦେଇ ତାଳିପତ୍ର ଆଙ୍କନ୍ତି ନିଜ ଆଖିକୁ ବିଶ୍ୱାସ କରିପାରେ ନାହିଁ ଶକୁନ୍ତଳା। ସେ ଅନୁଭବ କରେ ତା ତପସ୍ୟା ସଫଳ ହୋଇଛି। ତା' ସାଧନା ସିଦ୍ଧି ଲାଭ କରିଛି।

ବାପା ମାଆଙ୍କର ଅଧୁରା ସ୍ୱପ୍ନକୁ ସାକାର କରିବାପାଇଁ ସେ ନିଜର ସ୍ୱପ୍ନ କଳ୍ପନାକୁ ନିଆଁ ଉହ୍ନେଇରେ ହଜେଇ ଦେଇଥିଲା ସତ ତଥାପି ତତଲା ମରୁଭୂମି ପରି ତା ହୃଦୟର କେଉଁ ଏକ ନିଭୃତ କୋଣରେ ଛାୟାସ୍ନିଗ୍ଧ ପୁଷ୍କରିଣୀଟିଏ ପରି ଏବେ ବି ସେ ଲୁଚେଇ ରଖିଛି ଏକାନ୍ତ ନିଜର କୋମଳ ମଧୁର ସ୍ମୃତି। ସେଇ ଅନ୍ତରଙ୍ଗ ସ୍ମୃତି ହିଁ ତାକୁ ରକ୍ଷ ମରୁମୟ ରାସ୍ତାରେ ଆଗକୁ ଚାଲିବାକୁ ସାହସ ଦେଉଥିଲା, ବଳ ଦେଉଥିଲା। ତା ନିଃସଙ୍ଗ ଜୀବନ ସେଇ ସ୍ମୃତି ଭିତରେ ବୁଡି ରହିବାପାଇଁ ଭଲ ପାଉଥିଲା ତା'ର ଏକାନ୍ତ ମୁହୂର୍ତ୍ତ ଗୁଡାକ ସେଇ ସ୍ମୃତିରେ ସଜଳ ହେଉଥିଲା।

ଆତା (ପିଉସୀ)। ତମକୁ କିଏ ଜଣେ ଖୋଜୁଛନ୍ତି।

ଶକୁନ୍ତଳା ଫେରିଆସିଲା ଭାବନା ରାଜ୍ୟରୁ,

ସମ୍ମୁଖରେ ଦଣ୍ଡାୟମାନ ଆରତୀ। ଶକୁନ୍ତଳାର ଅତିପ୍ରିୟ ଭାତୃଷ୍ପୁତ୍ରୀ। ନିଜେ ସ୍ନାତକ ଡିଗ୍ରୀ ହାସଲ କରି ସୁଦ୍ଧା ଚାକିରି କରିବାପାଇଁ ଚାହିଁଲା ନାହିଁ। ପିଉସୀର ପଦାଙ୍କ ଅନୁସରଣ କରିଛି ସେ। ଲାଖ ଶିଳ୍ପର ପ୍ରଚାର ପ୍ରସାର କରିବାର ସକଳ

ଦାୟିତ୍ୱ ନିଜ ଉପରକୁ ନେଇଛି। ନବରଙ୍ଗପୁରର ଯେଉଁ ଛାତ୍ରଛାତ୍ରୀ ବାହାରେ ପଢୁଛନ୍ତି ସେମାନେ ହୋଇଛନ୍ତି ତା'ର ମାଧ୍ୟମ। ଝିଅଟାର ଭଲ ବ୍ୟବସାୟିକ ବୁଦ୍ଧି। ସେମାନଙ୍କ ଠାରୁ ଅର୍ଡର ଆଣି ସେ ଝିଅ ବୋହୂଙ୍କ ହାତ ତିଆରି ଲାଖ କାମ ସେ ବାହାରକୁ ପଠେଇ ପାରୁଛି। ଜିଲ୍ଲା ମହୋତ୍ସବମାନଙ୍କରେ ପ୍ରଦର୍ଶନୀର ଜିନିଷ ନେଇ ବିକୁଛି। ଶକୁନ୍ତଳା ପାଖରେ ଘଣ୍ଟା ଘଣ୍ଟା ନିଆଁ ଉହ୍ନେଇ ପାଖରେ ବସି କାମ ବି କରିପାରେ।

ଶକୁନ୍ତଳା ଝିଅଟାର ମୁହଁକୁ ଚାହିଁ କହିଲା,

କିଏ ? କ'ଣ ପାଇଁ ଆସିଛନ୍ତି ?

ମୁଁ ତାଙ୍କୁ ଆଗରୁ କେବେ ଦେଖିଲା ପରି ଲାଗୁନି। ତାଙ୍କ ଝିଅ ପାଇଁ ଶଙ୍ଖା ନେବେ ବୋଲି କହୁଥିଲେ।

ଶକୁନ୍ତଳା କହିଲା – ଶଙ୍ଖା ତ ନେବେ, ଦେଇ ଦେଲୁନି ? ମୁଁ ଯାଇ କ'ଣ କରିବି ?

ଆରତୀ କଣ୍ଠ ନରମ କରି କହିଲା – ନାଇଁ ଆତା ! ସେ ମନା କଲେ। ନଇଁ ପଡି ଶକୁନ୍ତଳା କାନ ପାଖରେ ଫିସ୍ ଫିସ୍ ହୋଇ କହିଲା – ତମ ସହ କ'ଣ ତାଙ୍କର କଥା ଅଛି ବୋଲି କହିଲେ।

ଆଶ୍ଚର୍ଯ୍ୟ ହେଲା ଶକୁନ୍ତଳା। ବହୁଦିନ ହେଲା ବାହାର ଦୁନିଆ ସହ ସେ କମ୍ ସଂପର୍କ ରଖିଛି। ଝିଅମାନେ ବଜାର ଦାୟିତ୍ୱ ସମ୍ଭାଳିବା ପରେ ସବୁତକ ସମୟ ତା'ର ନିଆଁ ଉହ୍ନେଇ ପାଖରେ କଟୁଥିଲା। ଝିଅମାନଙ୍କୁ ବାଲ୍ଟି ବାଲ୍ଟି ପାଣିରେ ବଣରୁ ଅଣା ଯାଇଥିବା ଲାଖକୁ ଧୋଇ ସଫା କରିବା, ଜଉମଣ୍ଡ ତିଆରି କରିବା, ଭାଗମାପରେ ରଙ୍ଗ ଦେବା ଲାଖରୁ ତୀର ବାହାର କରିବା ଆଦି କାମରେ ସେ ଅହରହ ଆବଶ୍ୟକୀୟ ପରାମର୍ଶ ଦେଉଥିଲା। ଶ୍ରଦ୍ଧା ଆଗ୍ରହ ଓ ପ୍ରତିବଦ୍ଧତା ନ ରହିଲେ କୌଣସି କାର୍ଯ୍ୟରେ ପୂର୍ଣ୍ଣତା ଆସିବ ନାହିଁ ବୋଲି ସେ ସେମାନଙ୍କୁ କାନେ କାନେ ଶିଖାଉଥିଲା। ଏ ଦାୟିତ୍ୱ ଭିତରେ ସେ ଏତେ ନିମଗ୍ନ ରହୁଥିଲା ଯେ ସେ ନିଜର ଯତ୍ନ ନେବାପାଇଁ ବି ଭୁଲି ଯାଇଥିଲା।

ବିସ୍ମୟ ବିସ୍ଫାରିତ ନୟନରେ ସେ ଆରତୀ ମୁହଁକୁ ଚାହିଁଲା କିଛି ସମୟ। ତା'ପରେ ନିଆଁ ଉହ୍ନେଇ ପାଖରୁ ଉଠିପଡି ଶାଢ଼ୀଟାକୁ ସଜାଡି ଦେଇ ବାହାରକୁ ବାହାରି ଆସିଲା। ବୈଠକ ଘରେ ବସିଥିବା ଭଦ୍ରବ୍ୟକ୍ତିଙ୍କୁ ଦେଖି ସେ ସ୍ତବ୍ଧ ହୋଇଗଲା। କ୍ଷଣିକ ପାଇଁ ବାକ୍‌ଶକ୍ତି ହରେଇ ଦେବାପରି ଅନୁଭବ କଲା। ଯେଉଁ

ସ୍ମୃତିକୁ ଦୁଃସ୍ୱପ୍ନ ବୋଲି ସେ ଭୁଲିଯିବାକୁ ବାରମ୍ବାର ପ୍ରୟାସ କରିବା ସତ୍ତ୍ୱେ ମରୁଦ୍ୟାନପରି ସେ ତାକୁ ଆଗକୁ ଚାଲିବାକୁ ପ୍ରେରଣା ଦେଉଥିଲା, ସମସ୍ତଙ୍କ ଦୃଷ୍ଟି ଉହାଡରୁ ହୃଦୟର କେଉଁ ନିଭୃତ କୋଣରେ ଯେଉଁ କୋମଳ ଅନୁଭବକୁ ସେ ସାଇତି ରଖିଥିଲା, ବର୍ଷ ବର୍ଷ ଧରି ଯାହାପାଇଁ ସେ ବିନିଦ୍ର ରଜନୀ ବିତାଉଥିଲା, ଏ ଜନ୍ମରେ ନୁହେଁ ଆସନ୍ତା ଜନ୍ମରେ ଦେଖା କରିବା ପଣ କରିଥିଲା ସିଏ ଏବେ ସଶରୀରେ ତା ଆଗରେ ଉଭା। କି ଭାଷାରେ ତାଙ୍କୁ ସମ୍ଭାଷଣ କରିବ ସେ ଚିନ୍ତା କରିପାରିଲା ନାହିଁ। ତା ଛାତି ଭିତରେ ଗୋଟାଏ ଅନନ୍ୟ ଅନୁଭୂତି ତାକୁ ଅସ୍ତବ୍ୟସ୍ତ କରିଦେଲା। ତାହା ପୀଡାର ପ୍ରଶାନ୍ତିର ଅଥବା ଦୁଇ ଭାବର ସମ୍ମିଶ୍ରଣ ସେ ଠିକ୍ ଧରିପାରିଲା ନାହିଁ। ସେଇ ତଲ୍ଲୀନ ଅବସ୍ଥାରେ ଦାରୁଭୂତ ମୁରାରୀ ପରି ବସିଥିବା ଆଗନ୍ତୁକଙ୍କ ଉଦ୍ଦେଶ୍ୟରେ ଦୁଇହାତ ଟେକି ନମସ୍କାର ହେଲା। ଆଗନ୍ତୁକ ଈଷତ୍ ହସି କହିଲେ -

"ଇୟେ କୁନ୍ତଳା, ମୋ ଝିଅ। ତା'ର ବାହାଘର ଠିକ୍ ହୋଇଚି। ଆଗାମୀ ତିଥିରେ ବାହାଘର। ତମେ ତାକୁ ଆଶୀର୍ବାଦ କର। ତମ ହାତ ତିଆରି ଶଙ୍ଖା ପିନ୍ଧି ସେ ବେଦୀକୁ ଯିବ।"

ଶକୁନ୍ତଳା ଝିଅ ମୁହଁକୁ ଚାହିଁଲା। ବେଶ୍ ଡଉଲ ଡାଉଲ ଚେହେରା, ବାପପରି ଖଣ୍ଡାଧାର ନାକ। ଆଖି ଦୁଇଟା କଥା କହିବା ପରି। ତୋଫା ଗୋରା। ସତେ ଅବା ସଜଫୁଟା ଗୋଲାପ ଟିଏ। ନାଁ ପୁଣି କୁନ୍ତଳା। ତା'ର ନାଁ ସହ ସାମଞ୍ଜସ୍ୟ ରଖି, ତା'ରି ସ୍ମୃତିକୁ ଉଜ୍ଜୀବିତ ରଖିବା ପାଇଁ। ଶକୁନ୍ତଳାକୁ ଆଉ ବୁଝିବାକୁ ବାକି ରହିଲାନି ଯେ ବିବାହକରି ଘର ସଂସାର କରିବା ସତ୍ତ୍ୱେ ସେ ଭୁଲି ନାହାଁନ୍ତି ଶକୁନ୍ତଳାକୁ।

କୁନ୍ତଳା ଶକୁନ୍ତଳାର ପାଦଛୁଇଁ ନମସ୍କାର କଲା। ଝିଅଟାକୁ ଛାତି ଉପରକୁ ଆଉଜାଇ ଆଣୁ ଆଣୁ ସେ ମୁହୂର୍ତ୍ତକ ପାଇଁ ହଜିଗଲା ଅତୀତର ମହାର୍ଘ ପୃଷ୍ଠାରେ।

ସୁମନ୍ତ ଥିଲେ ହସ୍ତଶିଳ୍ପ ନିଗମର ଜଣେ ପଦସ୍ଥ ଅଧିକାରୀ। ନବରଙ୍ଗପୁର ଜିଲ୍ଲାରେ ତାଙ୍କର ଥିଲା ପ୍ରଥମ ଚାକିରି। ଶକୁନ୍ତଳା ହାତରୁ ଉତ୍ତୁରୁଥିବା କୋଟିକମର ଡିଜ ସବୁ ତାଙ୍କୁ ଅଭିଭୂତ କରିଥିଲା। ଅନୁକୂଳ ପରିସ୍ଥିତି ଯୋଗାଇଦେଲେ ଏ ଶିଳ୍ପ ଯେ ବିଶ୍ୱସ୍ତରୀୟ ଶିଳ୍ପର ପ୍ରତିନିଧିତ୍ୱ କରିବ ସେ ତାହା ଅନୁଭବ କରିଥିଲେ। ଏଥିପାଇଁ ଶକୁନ୍ତଳାକୁ ବେଶ୍ ଉତ୍ସାହ ଉଦ୍ଦୀପନା ଦେବା ସଙ୍ଗେ ସଙ୍ଗେ ସବୁପ୍ରକାର ସହଯୋଗ ଓ ସହାୟତାର ହାତ ବଢ଼େଇ ଦେଇଥିଲେ, ଏମାନଙ୍କ ହାତ ତିଆରି କାମସବୁ ରାଜ୍ୟସ୍ତରୀୟ ହସ୍ତକଳା ପ୍ରଦର୍ଶନୀରେ ପ୍ରଦର୍ଶନ ହେବାପାଇଁ ଆବଶ୍ୟକୀୟ

କାଗଜପତ୍ର କାମ କରିଥିଲେ। ଶକୁନ୍ତଳା ଓ ତା ସହ ଯାଇଥିବା ଅନ୍ୟ ଝିଅମାନଙ୍କ ପାଇଁ ନିଜ ଘରେ ଖାଇବା ଓ ରହିବାର ବ୍ୟବସ୍ଥା କରିଦେଇଥିଲେ। ଘରେ ତାଙ୍କର ଏକମାତ୍ର ବିଧବା ମାଆ ଏମାନଙ୍କ କର୍ତ୍ତବ୍ୟ ନିଷ୍ଠା ଦେଖି ଆଶ୍ଚର୍ଯ୍ୟ ହୋଇଥିଲେ। ବିଶେଷତଃ ଶକୁନ୍ତଳାର ରୂପ ଗୁଣ ଓ ମଧୁର ବ୍ୟବହାର ତାଙ୍କୁ ମୁଗ୍ଧ କରିଥିଲା। ଭୁବନେଶ୍ୱରରେ ତା'ର ଶିଳ୍ପ କଳାର ଯଥେଷ୍ଟ ଚର୍ଚ୍ଚା ହୋଇଥିଲା। ତା ଷ୍ଟଲ୍ ପାଖରେ ଦର୍ଶକ ଓ କ୍ରେତାଙ୍କର ଭିଡ ଲାଗି ରହୁଥିଲା। ଅନ୍ତିମ ଦିବସରେ ରାଜ୍ୟପାଳଙ୍କଠାରୁ ୨୫ ହଜାର ଟଙ୍କାର ଚେକ୍ ସହ ମାନପତ୍ର ସଂବର୍ଦ୍ଧନା ପାଇଥିଲା ଶକୁନ୍ତଳା। ଏତିକିରେ ଅଟକି ଯାଇ ନଥିଲେ ସୁମନ୍ତ। ଶକୁନ୍ତଳାର ନିଷ୍ଠା ଓ କର୍ମକୁଶଳତା, ତା'ର ଉଚ୍ଚାଭିଳାଷ ସବୁକିଛି ବିଭୋର କରିଥିଲା ସୁମନ୍ତଙ୍କୁ। ସଫଳତାର ଗୋଟାକ ପରେ ଗୋଟାଏ ପାହାଚ ଲଘି ଶୀର୍ଷଗାମୀ ହେବା ପଥରେ ସେ ଦେବଦୂତ ପରି ତାକୁ ସାହାଯ୍ୟ ସହାନୁଭୂତି ଯୋଗାଇ ଦେଇଥିଲେ।

ଦିଲ୍ଲୀର ପ୍ରଗତି ମୈଦାନରେ ଶକୁନ୍ତଳା ଓ ତା'ର ସହକର୍ମିଣୀମାନେ ନିଜ ନିଜ ଉତ୍ପାଦ୍ୟ ବସ୍ତୁର ପ୍ରଦର୍ଶନୀ କଲେ। ଦିଲ୍ଲୀ ସହରରେ ଯେ ସେ ଏତେ ଗୌରବର ଅଧିକାରିଣୀ ହେବ, ଏ କଥା ସ୍ୱପ୍ନରେ ସୁଦ୍ଧା କଳ୍ପନା କରିନଥିଲା ଶକୁନ୍ତଳା। ଏସବୁ କେବଳ ସମ୍ଭବ ହୋଇଥିଲା ଶିଳ୍ପ ଅଧିକାରୀ ସୁମନ୍ତଙ୍କ ପାଇଁ। ରାଷ୍ଟ୍ରପତିଙ୍କଠାରୁ ପୁରସ୍କାର ଗ୍ରହଣ ବେଳେ ବି ସାଙ୍ଗରେ ସେ ଥିଲେ। ସେଇଠି ଘଟିଲା ଅଘଟଣ, ଭୀଷଣ ଭାବରେ ଅସୁସ୍ଥ ହୋଇ ପଡିଲେ ସୁମନ୍ତ। ଦେହରେ ଖଇଫୁଟା ତାତି ସାଙ୍ଗକୁ ମୁଣ୍ଡ ବୁଲା ଓ ବାନ୍ତି। ତାଙ୍କୁ ସଙ୍ଗେ ସଙ୍ଗେ ଡାକ୍ତରଖାନାରେ ଭର୍ତ୍ତି କରିଦିଆଗଲା। ରକ୍ତ ପରୀକ୍ଷାରୁ ଜଣା ପଡିଲା ସେ ଡେଙ୍ଗୁ ଆକ୍ରାନ୍ତ। ଅବିଶ୍ରାନ୍ତ ସେବାକରି ତାଙ୍କୁ ମରଣ ମୁହଁରୁ ଉଦ୍ଧାର କରି ଆଣିଲା ଶକୁନ୍ତଳା। ସେଇଥିରୁ ଶକୁନ୍ତଳା ପ୍ରତି ତାଙ୍କ ଅନ୍ତରରେ ପ୍ରେମ ବୀଜର କୋମଳ ଅଙ୍କୁରଣଟିଏ ହୋଇଥିଲା। ଶକୁନ୍ତଳା ର ଆଦର ଯତ୍ନରେ ସେ ଅଙ୍କୁରଣ ଧୀରେ ଧୀରେ ମହୀରୁହରେ ପରିଣତ ହୋଇଥିଲା। ଦୁହେଁ ଦୁହିଁଙ୍କ ନିକଟତର ହେଉଥିଲେ। ନିଜ ଅଜାଣତରେ ଗୁଡାଏ ସ୍ୱପ୍ନ ଓ କଳ୍ପନା କରି ପକାଇଥିଲେ।

ବାଧକ ସାଜିଥିଲା ଜାତି। ସୁମନ୍ତ ଥିଲେ ଜାତିରେ ବ୍ରାହ୍ମଣ। ସୁମନ୍ତଙ୍କ ଆଡୁ କିଛି ଆପତ୍ତି ନଥିଲା। ସୁମନ୍ତଙ୍କ ମାଆ ମଧ ପୁଅର ଅଳିକୁ ଅସ୍ୱୀକାର କରିନଥିଲେ। ସେ ପ୍ରଗତିଶୀଳା ମହିଳାଟିଏ, ଜାତିବାଦର ସଂକୀର୍ଣ୍ଣ ପରିସରରୁ ସେ ଉର୍ଦ୍ଧ୍ୱକୁ ଉଠିଥିଲେ। କିନ୍ତୁ ଅଡିବସିଲା ଶକୁନ୍ତଳା। ସିଏ ଯଦି ଏମିତି ବିଜାତୀୟ ବିବାହ

କରିବ, ତା ମାଆକୁ ଦେଇଥିବା ପ୍ରତିଶ୍ରୁତି ରକ୍ଷା କରିପାରିବ ନାହିଁ। ତା' କୁଳ ବେଉସା ବୁଡିଯିବ। ଭାଇମାନେ ଏ ବେଉସାଠାରୁ ସମ୍ପୂର୍ଣ୍ଣ ବିଚ୍ୟୁତ ହୋଇ ସାରିଲେଣି। ଏବେ ଶଙ୍ଖାରୀ କୁଳର ଗର୍ବ ଗଉରବ ଏ ଶିଳ୍ପର ଭବିଷ୍ୟତ ତାରି ଉପରେ ନିର୍ଭର କରୁଛି। ସେ ଯଦି ବ୍ରାହ୍ମଣ ପରିବାରର ବୋହୂ ହେବ ଏ ଶିଳ୍ପକୁ ବଞ୍ଚେଇ ରଖିବା ଆଦୌ ସମ୍ଭବ ହେବନାହିଁ।

ସେଦିନ ଲୁହ ଛଳ ଛଳ ଆଖିରେ ବିଦାୟ ନେଇଥିଲେ ସୁମନ୍ତ। ଆବେଗ ଜଡିତ କଣ୍ଠରେ ଶକୁନ୍ତଳା ତାଙ୍କ ପାଦଛୁଇଁ ଅନୁରୋଧ କରିଥିଲା, 'ସୁମନ୍ତ ବାବୁ! ଯଦି ମୋ ପ୍ରତି ଆପଣଙ୍କର ଏତେ ଟିକେ ନିର୍ମଳ ଭଲ ପାଇବା ଥାଏ, ପ୍ରେମଥାଏ ତା'ରି ଦ୍ୱାହି ଦେଇ ମୁଁ କହୁଛି, ଆପଣ ଘର ସଂସାର କରିବେ। ମୋ ଭଳି ଗୋଟାଏ ଅକୃତଜ୍ଞ ମଣିଷଟାକୁ ଭୁଲିଯିବେ। ମୋତେ ଆପଣ ଯେତିକି ଗୌରବର ଅଧିକାରିଣୀ କରିଛନ୍ତି ତାହା ଭୁଲିବା ପାଇଁ ମୋତେ ସାତ ଜନମ ବି ଯଥେଷ୍ଟ ହେବନାହିଁ। କିନ୍ତୁ ମୁଁ ଚାହିଁବି ଏ ଜନ୍ମରେ ଯେମିତି ଆଉ ଆମର ଦେଖା ନହୁଏ। ଆପଣ ମାଆଙ୍କର ମନ ପସନ୍ଦର ବୋହୂଟିଏ ଘରକୁ ନେବେ। ମୋତେ ମୋ ରାସ୍ତାରେ ଛାଡି ଦିଅନ୍ତୁ।

ସୁମନ୍ତୁଙ୍କୁ ସେ ଫେରାଇ ଦେଇଥିଲା ନିଷ୍ଠୁର ଭାବରେ। ତା' ସହ ନିଜର ସକଳ ପ୍ରେମ, ପ୍ରୀତି ଓ ଭଲପାଇବା ହୃଦୟର ଆହ୍ୱାନକୁ ନିଆଁ ଉହ୍ଲେଇରେ ମୁହାଁଇ ଦେଇ ସେ ତା ଲକ୍ଷ୍ୟ ହାସଲ ଦିଗରେ ଲାଗି ପଡିଥିଲା।

ସୁମନ୍ତ କହୁଥିଲେ - କୁନ୍ତଳା ପିଲାଦିନୁ ମାଆ ଛେଉଣ୍ଡ। ଛୁଆଟାକୁ ଜନ୍ମଦେଇ ତା ମାଆ ଚାଲିଗଲା, ଆମେ ମାଆ ପୁଅ ବହୁକଷ୍ଟରେ ଛେଉଣ୍ଡ ଛୁଆଟାକୁ ବଞ୍ଚେଇ ରଖିଲୁ। ଏବେ ତା'ର ବାହାଘର। ତମ ହାତ ତିଆରି ଶଙ୍ଖା ପିନ୍ଧି ସେ ବେଦୀକୁ ଯିବ। ବୋଉ କହିଛି ତମେ ତା ହାତରେ କନକ ଅଞ୍ଜୁଳି ଦେଇ ଶାଶୁ ଘରକୁ ପଠେଇବ।

ସୁମନ୍ତଙ୍କ କଥା ନୀରବରେ ଶୁଣୁଥିଲା ଶକୁନ୍ତଳା। ସେତେବେଳକୁ ତା' ଚକ୍ଷୁରୁ ଲୋତକର ଧାର ଚଟାଣ ତିନ୍ତେଇ ସାରିଲାଣି। ତା ହୃଦୟରେ ଉଠୁଥିବା ଝଡକୁ ସେ ନିଜ ନିୟନ୍ତ୍ରଣକୁ ଆଣିପାରୁ ନଥିଲା। ସୁମନ୍ତ ତାକୁ ଭୁଲି ପାରିନାହାଁନ୍ତି। ନିଷ୍ଠୁର ବିଧାତାଙ୍କର କି ଚକ୍ରାନ୍ତ କେଜାଣି, ବିଭାହେଲା ପତ୍ନୀକୁ ତାଙ୍କଠାରୁ ଛଡେଇ ନେଲେ। ତା'ରି ସ୍ମୃତି ଉଜ୍ଜୀବିତ ରଖି ସେ ଝିଅର ନାଁ ଦେଇଛନ୍ତି କୁନ୍ତଳା। ଝିଅକୁ ବାହା ଦେଇ ଦେବା ପରେ ସେ ପୁଣି ନିଃସଙ୍ଗ ହୋଇଯିବେ।

ତାଙ୍କୁ ଆଉ ବେଶି ପୀଡା ଦେବାପାଇଁ ଚାହୁଁନଥିଲା ଶକୁନ୍ତଳା। ସୁମନ୍ତଙ୍କୁ ଏବେ ତାର ଆବଶ୍ୟକତା ଅଛି, ସେ ତା'ର ଲକ୍ଷ୍ୟ ସ୍ଥଳରେ ପହଞ୍ଚି ସାରିଛି, ନୂଆପିଢ଼ିର ଝିଅମାନେ ସ୍ୱୟଂସିଦ୍ଧା ଓ ସ୍ୱୟଂ ସମ୍ପୂର୍ଣ୍ଣା ହୋଇପାରିଛନ୍ତି । ସେମାନେ ଯେଉଁ ନିଷ୍ଠା ଓ ଅଙ୍ଗୀକାର ସହକାରେ କାମ କରୁଛନ୍ତି ସେଥିରେ ଏ ଶିଳ୍ପ ବଞ୍ଚିବ। ଯାବତ୍ ଚନ୍ଦ୍ରାର୍କେ ବଞ୍ଚିରହିବ ଏ ଲାଖ ଶିଳ୍ପ। ତା'ର ମୃତ୍ୟୁ ହେବ ନାହିଁ। ତା'ର କର୍ତ୍ତବ୍ୟ ସରିଛି। ଏବେ ସେ ମୁକ୍ତ। ଯେ କୌଣସି ନିଷ୍ପତ୍ତି ନେବାପାଇଁ।

ଅମାନିଆ ଲୁହଧାରକୁ ଲୁଗାକାନିରେ ରଗଡି ପୋଛି ଦେଲା ଶକୁନ୍ତଳା। ଧୀର ପଦକ୍ଷେପରେ ସେ ଭିତରକୁ ଗଲା। ନିଜ ହାତ ତିଆରି ଜଉଶଙ୍ଖା ସହ ଜଉପେଡି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ମୂର୍ତ୍ତି ଏବଂ ଆଉକିଛି ଗୃହସଜ୍ଜା ସାମଗ୍ରୀକୁ ଗୋଟାଏ ସୁଟ୍‌କେସ୍‌ରେ ଭର୍ତ୍ତି କଲା। ଆଉ ଗୋଟାଏ ସୁଟ୍‌କେଶ୍‌ରେ ତା ନିଜ ଚଳଣି ମୁତାବକ ଆବଶ୍ୟକୀୟ ସମାଗ୍ରୀ।

କିଛି ସମୟ ପରେ ଦୁଇ ହାତରେ ଦୁଇଟି ସୁଟ୍‌କେଶ୍ ଧରି ସେ ବାହାରି ଆସି କହିଲା - ଚାଲନ୍ତୁ! ମୁଁ ଏବେ ପ୍ରସ୍ତୁତ।

ଅବାକ୍ ହୋଇ ଶକୁନ୍ତଳାକୁ ଚାହିଁ ରହିଥିଲେ ସୁମନ୍ତ।

# ଶବ ସତ୍କାର

ଖୁଣ୍ଟା ପରି ଠିଆ ହୋଇଥିଲା ମନମତୀ। ତା ମୁଣ୍ଡକୁ କିଛି ପଶୁ ନଥିଲା। ଲାଠିଏ ବେଳ ହେଲାଣି। କାହାରି ଘରେ ଚୁଲି ଚଳିନି କି କାହାରି ପେଟକୁ ପେଜ ପାଣି ଯାଇନି। ଛୁଆ ଗୁଡାକ ଭୋକରେ ଆଉଟୁ ପାଉଟୁ ହେଲେଣି। ତଥାପି ଅଡ଼ି ବସିଛି ଗାଁ ମୁଖିଆ। ଅଡି ବସିଛନ୍ତି କୁଳ କୁଟୁମ୍ବ, ଜାତିଭାଇ। ମାଲ ଭାଇମାନଙ୍କୁ ଗାଁ ମୁଖିଆର ତାଗିଦ୍ ଶବ ଛୁଇଁବ ନାଇଁ କେହି। ଯିଏ ଛୁଇଁବ ସିଏ ଜାତିରୁ ବାହାରି ଯିବ, ଦୀନବନ୍ଧୁ ପରି।

ମନମତୀକୁ ଦଶଦିଗ ଅନ୍ଧାର ଦିଶିଗଲା। ସେ ଏଥର ଶେଷ ଚେଷ୍ଟା କଲା। ଆଉ ଥରେ ଗୋଟି ଗୋଟି କରି ଗାଁର ସମସ୍ତଙ୍କ ପାଖକୁ ଗଲା। ତାଙ୍କୁ ଦେଖୁ ଦେଖୁ ସଭିଏଁ ତାଟି କବାଟ ପକେଇ ଦେଲେ। ମୁଖିଆ ଘରକୁ ଗଲା, ପିଣ୍ଡାରେ ବସିଥିଲା ମୁଖିଆ। ସେ ତା' ପାଖରେ ନେହୁରା ନିଉଛାଳି ହେଲା। ହାତ ଯୋଡି କହିଲା, ତମ ଗୋଡତଳେ ପଡୁଛି ମୁଖିଆ, ତମେ ଏମିତି ନିଷ୍ଠୁର ହୁଅ ନାହିଁ। ଆଉ ଘଣ୍ଟାଏ ଗଲେ ଶବରୁ ଗନ୍ଧ ବାହାରିବ।

ମୁଖିଆ କହିଲା, ଦୀନବନ୍ଧୁ ବଞ୍ଚିଥିଲାବେଳେ ଜାତିକୁଳ ବୁଡେଇ ଯେଉଁ

ପାପ କରିଥିଲା, ତାରି ପାପ ଭୋଗୁଛି। ମୁଁ କ'ଣ କରିବି ? ତା ପାଇଁ କ'ଣ ଗାଁଟା ସାରା ଜାତି ବୁଡେଇବେ ? ସବୁ ପାପ ଯିବ ତୋରି ମୁଣ୍ଡରୁ।

ମନମତୀ ଦୀନବନ୍ଧୁର ବିବାହିତା ସ୍ତ୍ରୀ ନୁହେଁ, କିନ୍ତୁ କେତେବେଳେ କେମିତି ସେମାନେ ଗୋଟାଏ ଛାତ ତଳେ ରହିବାର ନିଷ୍ପତ୍ତି ନେଲେ ତାହା ବି ଠିକ୍ ଭାବେ କହିହେବ ନାହିଁ। ତଥାପି ଦୀନବନ୍ଧୁ ଭର୍ତ୍ତାର ସବୁ ଦାୟିତ୍ୱ ମୁଣ୍ଡେଇ ଧରିଥିଲା ମନମତୀ। ମନମତୀ ଦୀନବନ୍ଧୁ ଜୀବନକୁ ଆସିବା ପୂର୍ବରୁ ଦୀନବନ୍ଧୁ ଘରସଂସାର କରିଥିଲା। ଦୁଇଟା ଝିଅର ବାପ ବି ହୋଇ ସାରିଥିଲା। ହାତୀପରି ମାଇକୀଟିଏ ଥିଲା ତା ସ୍ତ୍ରୀ ଦୟଣାବତୀ। ଡମ୍ବଘରର ଝିଅ। ମାଗୁର ମାଛ ପରି ରଙ୍ଗ। ବଳିଲା ବଳିଲା ବାହୁ। ଥାଳି ପଟପରି ମୁହଁ। ଚାଲିଲେ ମାଟି ଦୁମୁକିଲା ପରି ଲାଗେ। ଜୀବନ ଦେଇ ଭଲ ପାଉଥିଲା ତାକୁ ଦୀନବନ୍ଧୁ। ଜୀବନରେ ଯାହାକୁ ଏତେ ଭଲ ପାଉଥିଲା, ମଲାପରେ ସେଇ ହୋଇଛି ଏବେ କାଳ। ସିଏ ତ ରହିଲା ନାଇଁ, ଆଗରୁ ବାଟ କାଟି ଚାଲିଗଲା, ତା'ପାଇଁ ଏବେ ପୁରୁଷଟା ଭୋଗୁଛି। ଜୀବନ୍ତରେ ବି ମରଣରେ ବି। ପୁରୁଷଟା ଆଉ କୋଉଠି ଭୋଗିଲା ? ଭୋଗୁଛି ତ ସେଇ ମନମତୀ। କୋଉ ଜନମରେ ସେ ଦୁହିଁଙ୍କର ରଣୀ ଥିଲା କେଜାଣି। ଏ ଜନମରେ ଶୁଝୁଛି ସେ ରଣ।

ଦୀନବନ୍ଧୁ ଦୟଣାବତୀଙ୍କ ସଂସାର ଚାଲୁଥିଲା ଯେମିତି ଚାଲେ ବଣ ମୁଲକରେ ରହୁଥିବା ଆଉମାନଙ୍କ ସଂସାର। ବଣ ମୁଲକର ମଣିଷ ରୂପ ସୌନ୍ଦର୍ଯ୍ୟକୁ ଗୁରୁତ୍ୱ ଦିଏ ନାହିଁ। ଯେତିକି ଗୁରୁତ୍ୱ ଦିଏ କାମ କରିବାର ସାମର୍ଥ୍ୟକୁ, ପରିବାର ଚଳେଇବା ପାଇଁ ବେଡା ଡଙ୍ଗରରେ ଖଟିବା, ବଜାର ଘାଟରେ ବୁଲି କୋଚଣୀ ବେପାର କରିବା ସବୁ ପାରୁଥିଲା ଦୟଣାବତୀ। ମୁଣ୍ଡରେ ଛତୁ, ବାଉଁଶକରଡି, କନ୍ଦା, କାଙ୍କଡ ମୁଣ୍ଡେଇ ହାଟକୁ ହାଟ ବୁଲେ। ଫେରିଲା ବେଳକୁ ତେଲ, ଲୁଣ, ଲଙ୍କା, ପିଆଜ, ସାବୁନ୍ ଖଣ୍ଡେ, ଝିଅ ଦୁଇଟାଙ୍କ ପାଇଁ ଚୂଡି ଦି'ଦି' ପଟ, ରିବନ ଦୁଇଖଣ୍ଡ, ଜିଲାପି ଦୁଇଟା କି ବରା ପକୁଡିରୁ ପୁଞ୍ଜାଏ ଧରି ଘରକୁ ଆସେ। କେତେବେଳେ ତୁରୁଞ୍ଜା ଶୁଖୁଆ ଦଶ ଟଙ୍କାର କି ଚପରା (କାଇଅଣ୍ଡା) କୋଡିଏ ଟଙ୍କାର ମଧ୍ୟ ଆଣେ।

ସଂଞ୍ଜ ହେଲେ ଛୁଆ ଦୁଇଟା ଅନେଇ ବସିଥା'ନ୍ତି ତା' ବାଟକୁ। ଦୀନବନ୍ଧୁ ସେତେବେଳକୁ ତା ଦିନଟା ଯାକର ରୋଜଗାରକୁ ନେଇ ପଡିଥାଏ ଭାଟିରେ। ସାତବର୍ଷର ବଡ଼ ଝିଅ ସମ୍ଭାଳି ଥାଏ ତିନିବର୍ଷର ସାନ ଭଉଣୀକୁ। ଦୟଣାବତୀ

ମୁଣ୍ଡରୁ ବୋଝ ଓହ୍ଲେଇ ଘଡିଏ ବସୁଥିଲା ସେମାନଙ୍କ ପାଖରେ। ଛୁଆ ଗୁଡାକ ବି କୋଟିନିଧି ପାଇଲା ପରି ସେଇ ଖଜା ମୁଆଁ ଭିତରେ ହଜି ଯାଉଥିଲେ। ଦୟଣା ପୁଣି ଉଠୁଥିଲା। ଘର କାମରେ ଲୋଟି ପଡୁଥିଲା। ଚୁଲ୍ଲୀ ଲଗେଇ ରାତିପାଇଁ ଖାଦ୍ୟ ପ୍ରସ୍ତୁତିରେ ଲାଗି ପଡୁଥିଲା। ମାଣ୍ଡିଆ ପେଜ କରୁଥିଲା, କୋଉ ଦିନ ଶୁଖୁଆଟିକେ କି ଚୁନା ମାଛ ଟିକେ, କୋଉଦିନ ଖାଲି ଆମ୍‌ତୋରେ ବି ଚଳିଯାଏ। ଝିଅ ଦୁଇଟା ଶୋଇ ପଡନ୍ତି। ଦୀନବନ୍ଧୁ ଫେରିବା ବେଳକୁ ରାତି ଦି'ଘଡି। ଯେଉଁଦିନ ନିଶା ଟିକେ କମ୍ ଥାଏ ତ ଦୟଣା ବାଢ଼ିଥିବା ଭାତ ତରକାରୀରେ ହାତମାରେ। ନହେଲେ ସେମିତି ଗଡ଼ିପଡେ ପିଣ୍ଡାରେ। ଦୟଣାବତୀ ଗୁରୁଗୁରୁ ହୋଇ ବକିଯାଏ ବହେ। ଶୀତଦିନ ହୋଇଥିଲେ ତା ଉପରେ କନ୍ଥା ଖଣ୍ଡେ ପକେଇ ଦିଏ। ଅନ୍ୟ ଦିନମାନଙ୍କରେ ସେ ସେମିତି ଗଡୁଥାଏ ପିଣ୍ଡାରେ। ଏମିତି ଚାଲିଥିଲା ଦୀନବନ୍ଧୁର ସଂସାର। ଦୀନବନ୍ଧୁର ନିକମାପଣକୁ ଖାତିର୍ କରୁନଥିଲା ଦୟଣା। ତା ଅଳସୁଆ ପଣକୁ ଏଡେଇ ଦେଉଥିଲା। ଘର ଚଳେଇବା ତାକୁ ବଳେଇ ପଡୁ ନଥିଲା। ଦୀନବନ୍ଧୁ ଥିବା ନଥିବା ତାକୁ ସମାନ ବୋଧ ହେଉଥିଲେ ବି ସେ କେବେ ଅସୁଖ ପାଉ ନଥିଲା ଦୀନବନ୍ଧୁକୁ। ତା' ସ୍ୱାମୀ ପଣର ସବୁ ଅଦଉତିକୁ ସହିନେଉଥିଲା। ଏମିତି ଚାଲିଥିଲା ଦୀନବନ୍ଧୁର ସଂସାର।

ଦିନେ ଆବିଷ୍କାର କଲା ଦୀନବନ୍ଧୁ, ତା ସଂସାର ଓଲଟପାଲଟ ହୋଇଯାଉଛି। ସବୁଦିନ ପରି ସେ ରାତି ଦୁଇଘଡିକୁ ଘରକୁ ଫେରିଲା ବେଳକୁ ଦୟଣା ଫେରିନଥିଲା। ଛୁଆ ଦି'ଟା ଲୁହ ଗଡାଇ ସେମିତି ବସିଥିଲେ ପିଣ୍ଡାରେ। ଘରେ ଆଲୁଅ ବି ଜଳୁ ନଥିଲା। ମଦ ନିଶାରେ ଦୀନବନ୍ଧୁ ଦୟଣା ଉଦ୍ଦେଶ୍ୟରେ କେତେ ପଦ ଅଶ୍ରାବ୍ୟ ଗାଳି ବର୍ଷି ଦେଇଗଲା। ସେ ଫେରି ଆସିଲେ ତାକୁ ଚୁଟି ଝିଙ୍କି ଝିଙ୍କି ମରନେ ମାରିବ ବୋଲି କହିହେଲା। ତା' ପାଟିରେ ଛୁଆ ଦି'ଟା ଆହୁରି ଚିହିରାଛାଡ଼ି କାନ୍ଦି ଉଠିଲେ। ସେମାନଙ୍କୁ ଭୁରୁଡିଟାଏ ଦେଲା ଓ ଟଳଟଳ ହୋଇ ଗଡ଼ି ପଡିଲା ତଳେ। ଛୁଆ ଦି'ଟା କାନ୍ଦି କାନ୍ଦି କ୍ଳାନ୍ତ ହୋଇ ପଡିଥିଲେ। ସେମାନେ ବି ସେମିତି ଅଖିଆ ଅପିଆ ଶୋଇ ପଡିଲେ ପିଣ୍ଡାରେ।

ଦୀନବନ୍ଧୁର ନିଦ ଭାଙ୍ଗିଲା ବେଳକୁ ଉକିଆ ତାରା ଉଇଁଲାଣି। ଆକଶରେ ଅମାବାସ୍ୟା ତିଥିର ମଳିନ ଜହ୍ନ। ସେଇ ଜହ୍ନ ଆଲୁଅରେ ସେ ଦେଖିଲା ଛୁଆ ଦି'ଟା ମୁହଁମାଡି ଶୋଇଛନ୍ତି। ଦୟଣା ଫେରିନି ଏ ପର୍ଯ୍ୟନ୍ତ। ଘରଟା ସେମିତି ମେଲା ପଡିଛି। ତା' ଛାତିରେ ଛନ୍‌କା ପଶିଲା। କେବେ କୋଉଠି ଛୁଆମାନଙ୍କୁ

ଛାଡି ସେ ରହେ ନାହିଁ। କୁଆଡ଼େ ଗଲା ଦୟଣା ! ବଣ ଜଙ୍ଗଲ ଦେଇ ସେ ହାଟହାଟ ବୁଲେ। ବାଘ ଭାଲୁ, ସାପ ସୁପା, ତା' ମନକୁ ପାପ ଛୁଇଁଲା। ତା ନିଶା ତାକୁ ଆଉ କେତେକାଳ ଘାରିଥା'ନ୍ତା କେଜାଣି ଦୟଣାର ନ ଫେରିବା ତାକୁ ଅତ୍ୟନ୍ତ ଭୟଭୀତ କରିଦେଲା। ତା' ନିଶାଟା ବି କୁଆଡେ ଛାଡି ପଳେଇଲା। ମୁଣ୍ଡରେ ଚିନ୍ତା ଘାରିଲା, ଏତେ ରାତିରେ କୁଆଡ଼େ ଖୋଜିଯିବ ମାଇଜୀଟାକୁ ? ରାତିଟା ପାହୁ, ବାକି ଦୁଇ ଘଡିର ରାତି ତାକୁ ଦୁଇ ଯୁଗ ପରି ଲାଗୁଥିଲା। ସେ ଉଠି ବସିଲା।

ଦୀନବନ୍ଧୁ ଘରେ ଅଛୁ ? ଏତେ ଭୋରୁ କିଏ ଡାକିଲା, ଦୀନବନ୍ଧୁ ବାହାରକୁ ଗଳିଲା। ମୁହଁ ଅନ୍ଧାରରେ ଭଲ କରି ଚିହ୍ନିହେଉ ନାହିଁ। ଦୁଇ ଜଣ ଲୋକ ଠିଆ ହୋଇଛନ୍ତି ରାସ୍ତାରେ।

"ତୋ ମାଇଜୀକୁ ଗାଡି ଚପେଇଛି, ସେ ଡାକ୍ତର ଖାନାରେ ପଡିଛି।" ଦୀନବନ୍ଧୁ ସେମିତି ସେଇ ଅବସ୍ଥାରେ ଧାଇଁଲା ଡାକ୍ତରଖାନା। ଘରଠୁଁ ଡାକ୍ତରଖାନା ୫ କଲୋମିଟର ରାସ୍ତା। ସେ ଡାକ୍ତରଖାନାରେ ପହଞ୍ଚିଲା ବେଳକୁ ଆଉ କିଛି ନଥିଲା। ଦୟଣାବତୀ ହାଟ ସାରି ଘରକୁ ଫେରୁଥିବାବେଳେ ତାକୁ କୌଣସି ଗାଡ଼ି ଧକ୍କା ଦେଇ ଚାଲିଯାଇଥିଲା। ସେ ରକ୍ତାକ୍ତ ହୋଇ ପଡିଥିଲା ରାସ୍ତା କଡରେ। ବିଳମ୍ବିତ ରାତ୍ରିରେ ସେଇ ବାଟଦେଇ କାର୍‌ରେ ଯାଉଥିବା ଜଣେ ଭଦ୍ର ଲୋକଙ୍କ ଦୃଷ୍ଟିରେ ପଡିଥିଲା ତା ରକ୍ତାକ୍ତ ଶରୀର। ଭଦ୍ରବ୍ୟକ୍ତି ଜଣକ ଡ୍ରାଇଭର ସହ ତାକୁ ଗାଡିକୁ ଉଠେଇ ଆଣି ଭର୍ତ୍ତି କରିଥିଲେ ଡାକ୍ତରଖାନାରେ। ଯୋଗାଯୋଗ ଅଭାବରୁ ଖବରଟା ପହଞ୍ଚିପାରିନଥିଲା ଦୀନବନ୍ଧୁ ପାଖରେ।

ବଜ୍ର ପଡିଲା ଦୀନବନ୍ଧୁ ମୁଣ୍ଡରେ। ଦୟଣାବତୀ ବିନା ତା ସଂସାର ଦଣ୍ଡେ ଚଳିବ ନାହିଁ। ଦୁଇ ଦୁଇଟା ଛୁଆ, କେମିତି ସେ ତାକୁ ମଣିଷ କରିବ ? ଦୟଣାବତୀକୁ ଆଣିଲାଦିନ ଠୁଁ ତ କୁଳ କୁଟୁମ୍ବ ଜାତି ଭାଇ ତାକୁ ତ୍ୟାଗ କରିଛନ୍ତି, ସେ ଅସହାୟ ହୋଇପଡିଲା।

ଏତିକିବେଳେ ତାକୁ ସହାୟତାର ହାତ ବଢ଼େଇ ଥିଲା ମନମତୀ। ପନ୍ଦର ବର୍ଷର ଘର କରଣା ଭିତରେ ତା କୋଳ ନ ପୁରିବାରୁ ତାକୁ ଛାଡି ତା ସ୍ୱାମୀ ଆଉ ଗୋଟାଏ ସ୍ତ୍ରୀ ଆଣିଥିଲା। ନିଃସ୍ୱ ନିଃସଙ୍ଗ ହୋଇ ବଞ୍ଚୁଥିଲା ମନମତୀ। ତା ବାହୁରେ ବଳଥିଲା, ତାକୁ ନଥିଲା କାମ। ତା ହୃଦୟରେ ପ୍ରେମ ଥିଲା କିନ୍ତୁ ତାକୁ ମିଳୁ ନଥିଲେ ପ୍ରେମାସ୍ପଦ। ତା' ଅନ୍ତରରେ ମମତାର ମହାନଦୀ ଥିଲା, କିନ୍ତୁ ସେଠୁ

କେହି ବୁନ୍ଦାଏ ପାଣି ପିଉ ନଥିଲେ। ସଉତୁଣୀର ଛୁଆମାନଙ୍କୁ ସ୍ନେହ କରୁଥିଲେ ସେ କହୁଥିଲା, ପରପିଲାକୁ ସ୍ନେହ କରୁଥିବା ମଣିଷଟା ଡାଆଣୀ। ତା ଛୁଆଙ୍କ ଛାଇ ମାଡିବାକୁ ଦେଉ ନଥିଲା ମନମତୀକୁ। ତା ନାରୀ ମନଟା ଯେତେବେଳେ ସ୍ନେହ ମମତା, ଭଲପାଇବା ମାତୃତ୍ୱ ପାଇଁ ଉହଳ ବିକଳ ହେଉଥିଲା, ତାକୁ ଡାହାଣୀ ବୋଲି ସଭିଏ କବାଟ କିଲୁଥିଲେ। ପାଙ୍ଗିଣୀ ବୋଲି ତା ଛାଇ ମାଡୁ ନଥିଲେ। ପନ୍ଦର ବର୍ଷର ଘର କରଣା କରିଥିବା ମଣିଷଟାକୁ ନୂଆହୋଇ ଘରକୁ ଆସିଥିବା ମଣିଷଟା ଡାହାଣୀ ରୂପେ ଚିତ୍ରିତ କରିଦେଲା। ତା ମୁହଁ କେହି ଚାହିଁଲେନି। ତା ଜୀବନର ଏଇ ଗୋଟାଏ ଅଭାବ ତା ଜୀବନକୁ ଦୁର୍ବିସହ କରିଦେଲା। ଅନ୍ୟ ଦୁଃଖ ସୁଖରେ ନିଜକୁ ହଜେଇ ଦେଉଥିବା ପରକୁ ଆପଣାର କରି ନିଜ ଦୁଃଖ ସୁଖକୁ ଭୁଲିଥିବା ମଣିଷଟାକୁ ସମସ୍ତେ ଅଚିହ୍ନା କରିଦେଲେ। ତାକୁ ଦେଖିଲେ ବାଟଭାଙ୍ଗି ଚାଲିଗଲେ। ଛୁଆମାନଙ୍କୁ ଲୁଚେଇଲେ।

ଏତିକି ବେଳକୁ ଦୀନବନ୍ଧୁ ସଂସାରରେ ଏ ଅଘଟଣ। ଛୁଆ ଦୁଇଟା ଆଲ୍‌ରା ହେଉଛନ୍ତି, ସହି ପାରିଲା ନାହିଁ ମନମତୀ। ତା'ର ଅବଦମିତ ମାତୃତ୍ୱ, ହା'ହା କାର କରି ଉଠିଲା। ବାତ୍ସଲ୍ୟ ମମତାରେ ବିଚଳିତ ହୋଇପଡିଲା। ଗାଁଟା ସାରା ଲୋକ ତାକୁ ଅଛୁଆଁ ଅଟକ କରିଥିଲେ ବି ମନମତୀ ମାନିଲା ନାହିଁ କାହାରି କଥା। ସେ ବଳେ ପଶିଗଲା ଦୀନବନ୍ଧୁ ଘରେ। ଛେଉଣ୍ଡ ଛୁଆ ଦି'ଟାକୁ କୋଳେଇ ନେଲା। ପିନ୍ଧା କାନିରେ ସେମାନଙ୍କ ଲୁହ ଲାଳ ପୋଛି ଦେଲା। ଅସୁଖ ପାଇଲା ନାହିଁ ଜମା। ସେମାନଙ୍କ ମୁହଁରେ ଆହାର ଦେଲା। ସେମାନଙ୍କୁ ମା'ର ମମତା ଦେଲା। ସେ ଦୀନବନ୍ଧୁର ସ୍ତ୍ରୀ ହେଲା କି ନାହିଁ କେଜାଣି କିନ୍ତୁ ତା ଛୁଆ ଦି'ଟାଙ୍କର ମାଆ ହୋଇଗଲା। ସେ ଛୁଆ ଦୁଇଟାଙ୍କର ସାହାରା ହେଲା ତ ଛୁଆ ଦୁଇଟା ବି ତା'ର ସାହାରା ହୋଇଗଲେ। ସେ ତା ଜୀବନର ସବୁ ଦୁଃଖ ଯନ୍ତ୍ରଣା, ଅପମାନ, ଅବହେଳା, ଅନାଦର ମୁହୂର୍ତ୍ତକ ମଧ୍ୟରେ ଭୁଲିଗଲା। ଦୀନବନ୍ଧୁ ସଂସାର ଭିତରେ ଏମିତି ସେ ନିଜକୁ ସାମିଲ କରିଦେଲା ଯେ ସତେ ଯେମିତି ସେ ତା ଜୀବନର ଅର୍ଥ ଖୋଜି ପାଇଛି। ଅପରିସୀମ ପ୍ରାପ୍ତିରେ ଐଶ୍ୱର୍ଯ୍ୟମୟୀ ହୋଇଯାଇଛି। ତା'ର ଲାଞ୍ଛିତ ଅତୀତ ରୋମନ୍ଥନ କରି ସେ ଲୁହ ଗଡେଇଲାନି ଆଦୌ। କାହାର ନିନ୍ଦା ଅପବାଦକୁ ଖାତିର କଲାନାହିଁ, ତା ମନ ଯାହା ଡାକିଲା ସେ ସେଇଆ କରି ଚାଲିଲା।

କିନ୍ତୁ ଯାହାର ଜୀବନ ସଂଘର୍ଷର ଉପାଦାନରେ ଗଢ଼ା, ତା'ର ବିଶ୍ରାମ

କାହିଁ ? ଦୀନବନ୍ଧୁର ସଂସାରକୁ ସଜାଡୁ ସଜାଡୁ ପୁଣି ସବୁ ବିଗିଡ଼ି ଗଲା । ଦୀନବନ୍ଧୁ ବସୁ ବସୁ ଦିନେ ଟଳି ପଡିଲା ଯେ ଆଉ ଆଖି ଖୋଲିଲା ନାହିଁ କି ଉଠିଲା ନାହିଁ। ଛୁଆ ଦୁଇଟା ବାବା ବାବା ଡାକି ଆର୍ତ୍ତନାଦ କଲେ । ମୁଣ୍ଡ କୋଡିହେଲା ମନମତୀ । କିନ୍ତୁ କିଛି ଶୁଣି ପାରୁନଥିଲା ଅତିଶୟ ମଦ୍ୟପାନ କରି ତା ଶରୀର ଭିତର ସବୁତକ ଯନ୍ତ୍ର ଅଚଳ ହୋଇ ସାରିଥିଲା । ଗୋଟାଏ ଷ୍ଟ୍ରୋକ୍‌ରେ ସେ ଚାଲିଗଲା ।

ଦୀନବନ୍ଧୁ ସିନା ଚାଲିଗଲା, କିନ୍ତୁ ଆଉ ଗୋଟାଏ ସମସ୍ୟା ଠିଆ ହୋଇଗଲା ମନମତୀ ଆଗରେ । ଦୀନବନ୍ଧୁର ଶବକୁ ଛୁଇଁଲେ ନାହିଁ ଜାତିଭାଇ । ସେ ଡମୁଣୀ ସ୍ତ୍ରୀକୁ ରଖି ଜାତି ହାରିଛି । ତା ଶବକୁ ଉଠେଇଲେ ସମସ୍ତଙ୍କର ଜାତିଯିବ । ବଞ୍ଚିଥିଲା ବେଳେ ଦୀନବନ୍ଧୁ ବଡପଣ ମାରିଲା, ଭାତ ନାୟକ ପାଖକୁ ଗଲା ନାହିଁ, ଗାଁ ଲୋକଙ୍କୁ ଭୋଜିଭାତ, ମଦପାଣି, ଜୋରିମାନା ଦେଇ ଜାତି ହେଲା ନାହିଁ । ଏବେ କିଏ ଉଠେଇବ ତା ଶବ ?

ମନମତୀ ଘର ଘର ବୁଲି ସମସ୍ତଙ୍କ ପାଖରେ ନେହୁରା ହେଲା, ଦୀନବନ୍ଧୁ କରିଥିବା ଭୁଲ୍‌ପାଇଁ ହାତ ଯୋଡି କ୍ଷମା ମାଗିଲା । ରାତିଠୁ ପଡିଛି ଶବ । ଫୁଲି ଗଲାଣି । ଆଉ ଘଣ୍ଟାକୁ ବାସନା ଦବ । ମୁଖିଆ, ଦିଶାରୀ ପୂଜାରୀ ସମସ୍ତଙ୍କ ମୁହଁରେ ସେଇ ଗୋଟାଏ କଥା । ଆଗ କଥାବାର୍ତ୍ତା ଛିଡା ପଡା ହେଉ । ଭାତ ନାୟକ ଆସୁ । ତୁ ନିଜେ ଗାଁ ପିଲାଙ୍କୁ ଭୋଜୀଭାତ, ମଦପାଣି ଦେଇ ଜାତି ହବୁ । ଦୀନବନ୍ଧୁର ଶବ ଯେଉଁମାନେ ଛୁଇଁବେ ତାଙ୍କର ଜାତି ହେବାର ଖର୍ଚ୍ଚ ବି ତୁ ଦେବୁ, ଏଥିରେ ଯଦି ତୁ ରାଜି ଏଇ ସାଙ୍ଗେ ସାଙ୍ଗେ ଉଠିବ ଶବ ।

ଅସହାୟ କଣ୍ଠରେ କହିଲା ମନମତୀ । ମୋ ପାଖରେ ତ ଚାରନା ଡାବୁ ନାଇଁ । ମୁଁ ଏତେ ଖର୍ଚ୍ଚ କେଉଁଠୁ ଗୁଣ୍ଡେଇବି ଏତେ ଡାବୁ ? ସେଇ ଝୁମ୍ପୁଡି ଘର ଆଉ ବାଡି ଛଡା ଆଉ କ'ଣ ଅଛି ମୋର ?

ଦିଶାରୀ କହିଲା, ସେଇ ଘରଟା ବାଡି ବନ୍ଧା ରଖୁନୁ ମୁଖିଆ ପାଖରେ । ସିଏ ତୋର ଆଉ ମାଲଭାଇଙ୍କ ଖର୍ଚ୍ଚ, ଜାତିରେ ମିଶିବା ଖର୍ଚ୍ଚ ଦୀନବନ୍ଧୁର ଶବ ଉଠିବା ଖର୍ଚ୍ଚ ବାବଦକୁ ଯାହା ଦରକାର ସବୁ ଦବ ।

ଚମକି ପଡିଲା ମନମତୀ । ନା-ନା- ଏ ଘର ବାଡି ଦୀନବନ୍ଧୁର । ତାକୁ ସେ ବନ୍ଧା ଦେଇ ପାରିବ ନାହିଁ । ତା ଛୁଆ ଦୁଇଟା ବେଘର ହୋଇଯିବେ । ଦିଶାରୀଟା ପଟ୍‌କାର । ଥରେ ହାତରୁ ଘରବାଡି ଚାଲିଗଲେ ଆଉ ଆସିବ ନାହିଁ । ଛୁଆ ଦୁଇଟାଙ୍କୁ ମୁଣ୍ଡ ଗୁଞ୍ଜିବାକୁ ଥାନ ଟିକେ ମିଳିବ ନାହିଁ ।

ଏଥର ଦମ୍ଭ ଧରିଲା ମନମତୀ। ଆଉ ପଦେ ବି କାହାକୁ କିଛି କହିଲା ନାହିଁ। ଗାଁ ଲୋକଙ୍କ ପ୍ରତି ଥିବା ତା'ର ଆସ୍ଥା ଭରସା ସବୁ ତୁଟି ଚୂର୍‌ମାର୍ ହୋଇଗଲା। ସାରା ଦୁନିଆଟା ସ୍ୱାର୍ଥପର। ମଣିଷ ପଣିଆକୁ ସଭିଏଁ ପୋତି ଖାଇ ସାରିଲେଣି। କାଠ ପଥରଙ୍କ ପାଖରେ କି ଗୁହାରୀ କରିବ ସିଏ। ଦୁଃଖ ଅପମାନ ଓ ନୈରାଶ୍ୟରେ ଫେରିଆସିଲା ଘରକୁ। ଅଗଣାରେ ଠିଆ ହୋଇ ଦୀନବନ୍ଧୁର ଶବ ଆଡକୁ ଚାହିଁଲା। କପଡ଼ା ଘୋଡା ହୋଇଥିବା ସତ୍ତ୍ୱେ ବାଘୁଆ ମାଛି କେତେଟା ଭଁ ଭଁ ହୋଇ ଚକର କାଟୁଛନ୍ତି। ତଳ ଆଡୁ ପିମ୍ପୁଡି ଧାର ଲାଗିଲେଣି। ରାତିସାରା କାନ୍ଦି କାନ୍ଦି ଛୁଆ ଦୁଇଟାଙ୍କ ଆଖି ଗେଣ୍ଡା ପରି ଦିଶୁଛି। ମଦୁଆ ହେଉ, ନିକମା ହେଉ, ଅଳସୁଆ ହେଉ, ବାପା। ମାଆ ଯାଇଥିଲା। ବାପର ଆଶୀର୍ବାଦ ମୁଣ୍ଡ ଉପରେ ଥିଲା। ସେତକ ବି ଚାଲିଗଲା। ସତକୁ ସତ ଅନାଥ ହୋଇଗଲେ ଛୁଆ ଦି'ଟା। ତା ଆଖିରୁ ଦୁଇଧାର ଲୁହ ବାହାରି ଗାଲ ଉପର ଦେଇ ଗଡିପଡିଲା ତଳକୁ। ଦୁଇ ହାତ ପାପୁଲିରେ ନିଗିଡେଇ ପୋଛିଦେଲା ମନମତୀ। ଲୁହ ଗଡେଇବାର ସମୟ ଇଯେ ନୁହେଁ। ଦମ୍ଭ ଧରିଲା। ଭଣ୍ କରି ଗନ୍ଧଟାଏ ଠେଲି ହୋଇ ଆସିଲା ଶବରୁ। ସେ ବ୍ୟସ୍ତ ହୋଇ ପଡିଲା, ଆଉ ଡେରି କରି ହେବନାହିଁ। ଛୁଆ ଦୁଇଟାକୁ ନିଜ ଆଡକୁ ଆଉଜେଇ ଆଣି କହିଲା –

"ଜାତି ଭାଇ କୁଳ କୁଟୁମ୍ବ କେହି ନ ଆସିଲେ, ମୁଇଁ ଅଛି ରେ ନିନିମାନେ। ବାପର ଶବଟା କ'ଣ ଏମିତି ପଡିଥିବ ? ଆମର ବି ହାତ ଗୋଡ ଅଛିରେ। ଦେହରେ ବପୁ ଅଛି। ଆମେ ତିନିଟା ମଣିଷ। ବାପର ଶବଟା ବୋହି ନେଇ ପାରିବା ନାହିଁ ମଶାଣିକୁ ? କୋକେଇ ବନ୍ଧା ନହେଲା ନାହିଁ। ଏଇ ଖଟିଆରେ ନେଇଯିବା ମଶାଣିକୁ। ଝିଅ ଦୁଇଟା ଜଳକା ହେଇ ଚାହିଁଥିଲେ ନୂଆ ମାଆକୁ। ଦଉଡିଆ ଖଟିଆ ଓଲଟେଇ ମଡାଟାକୁ କଷ୍ଟେ ମଷ୍ଟେ ତା ଉପରକୁ ଉଠଉଥିଲା ମନମତୀ। ସେତିକି ବେଳୁ ତାଟକା ହୋଇ ବସିଥିବା ଝିଅ ଦୁଇଟା ବି ଡୁମା ଧରିବା ପରି ଉଠି ପଡିଲେ। ସାଙ୍ଗରେ ଧରା ଧରି କରି ଶବଟାକୁ ଖଟିଆ ଉପରେ ଶୁଆଇ ଦେଲେ। ତା'ଉପରେ କପଡା ଖଣ୍ଡେ ଢାଙ୍କି ଦେଇ ଛୁରୀଟାଏ ଧରି ସେ ବାଡ଼ି ଆଡକୁ ଧାଇଁ ଗଲା। ଦୁଇ ତିନିଟା ଲମ୍ବଲମ୍ବ କଦଳୀ ପତ୍ର କାଟି ଆଣି ଶୁଆଇ ଦେଲା ଶବ ଉପରେ। କୁଅ ଦଉଡିଟାକୁ ଶବସହ ଭଲକରି ଗୁଡେଇ ବାନ୍ଧିଦେଲା। ଏଥର ଖଟିଆର ଗୋଟାଏ ମୁଣ୍ଡ ଉଠେଇ କହିଲା – ଧର୍‌ରେ ନିନିମାନେ ଧର। ଉଠାଅ। ମରିବା ଲୋକର ପିଠ ଦକ୍ଷିଣକୁ କି ଉତ୍ତରକୁ କୋନ୍ ଜାନ୍‌ସି। ଉଠାଅ, ଉଠାଅ। କାନ୍ଦ ନାଇଁରେ ନିନିମାନେ।

ଦୁଇ ଝିଅ ଖଟର ଗୋଟାଏ ମୁଣ୍ଡ ଧରିଲେ, ଆଉ ପଟଟା ମନମତୀ ଉଠେଇ ହିମତ୍ ଦେଲା ସେମାନଙ୍କୁ। ଗାଁ ଦାଣ୍ଡରେ ଦୀନବନ୍ଧୁର ଶବ ଯେତେବେଳେ ଦୁଇଝିଅଙ୍କ ସହ ମନମତୀ ବୋହି ବୋହି ନେଉଥିଲା, ପିଣ୍ଡାଟିମାନଙ୍କରେ ଠିଆ ହୋଇ ଜୁଲୁଜୁଲୁ ଦେଖୁଥିଲେ ମୁଖିଆ ଦିଶାରୀ ସହ ଅନ୍ୟମାନେ। କାହାରିକୁ ଖାତିର୍ ନଥିଲା ମନମତୀର। ସିଏ ତା କାମରେ ଲାଗି ପଡିଥିଲା।

ମୁଖିଆର ପୁଅ ଗୋବିନ୍ଦ, କଲେଜ ପାଠ ସାରି ଆସି ଘରେ ଅଛି। ସକାଳ ପହରୁ ଗାଁରେ ଘଟିଯାଉଥିବା ଘଟଣା ସବୁକୁ ନିଘା ରଖୁଥିଲା। ବାପ କକା ଆଦି ବଡ ବଡ଼ବଡ଼ିଆଙ୍କ ନିଷ୍ପତ୍ତିକୁ ବି ଶୁଣୁଥିଲା। କିନ୍ତୁ ଆଗକୁ ଆସି କିଛି କହିବାର କି କରିବାର ଆବଶ୍ୟକତା ମଣି ନଥିଲା।

ମଝିଦାଣ୍ଡରେ ମନମତୀ ସହ ଝିଅ ଦୁଇଟା ଶବ ବୋହି ନେବାର ଦୃଶ୍ୟ ଦେଖି ଆଉ ଥୟ ହୋଇ ରହିପାରିଲା ନାହିଁ। ଲମ୍ଫ ପ୍ରଦାନ କଲାପରି ଘର ଦୁଆର ମୁହଁରୁ ଡେଇଁ ପଡିଲା ଦାଣ୍ଡକୁ ଓ ଚିତ୍କାର କରି କହିଲା – ସ୍ତ୍ରୀ ଲୋକଟା ଛୁଆ ଦିଟାକୁ ଧରି ଶବ ମଶାଣିକୁ ନେଉଛି, ତମେ ମାନେ ପିଣ୍ଡାରେ ଠିଆ ହୋଇ ପୁରୁଷପଣ ଦେଖଉଛ ? ଜାତି କୁଳ କୁଟୁମ୍ବ ନୀତି ନିୟମ ବାହାର କରୁଛ ?

ରହ ରହ ଲୋ ମନମତୀ ବଡ ମା'। ମୁଁ ବି ଦୀନବନ୍ଧୁ ବଡବାପାଙ୍କୁ କାନ୍ଧ ଦେବି। ସେ ଉଠେଇ ଧରିଲା ଖଟିଆ।

ହଠାତ୍ ଅପୂର୍ବ ଦୃଶ୍ୟଟିଏ ଘଟିଗଲା। ସକାଳ ପହରୁ ଯେଉଁମାନେ ପିଣ୍ଡାତଳକୁ ଖସୁ ନଥିଲେ, ମଝିଦାଣ୍ଡକୁ ଆସିଗଲେ ସାମିଲ୍ ହୋଇଗଲେ ଶବ ଶୋଭାଯାତ୍ରାରେ। କେହି ଖଟିଆ ଧରିଲା ତ କେହି ନିଜ ଘରୁ କାଠ ଖଣ୍ଡେ ଖଣ୍ଡେ ଧରିଲେ। ଆଉ କେହି ଜଣେ ମାଟି ହାଣ୍ଡିରେ ଗୋବର ପାଣି ଶବ ପଛେ ପଛେ ପକେଇ ଚାଲିଲା। ଗାଁଟା ଯାକର ଆବାଳ ବୃଦ୍ଧ ବନିତା ସେହି ଶୋଭାଯାତ୍ରାରେ ସାମିଲ ହେବାପାଇଁ ଗୋଟାଏ ମୁହୂର୍ତ୍ତ ବି ଲାଗିଲା ନାହିଁ। ସମସ୍ତଙ୍କ ମୁହଁରୁ ଶୁଭୁଥିଲା–

ରାମ ନାମ ସତ୍ୟ ହେ –

ହରି ନାମ ସତ୍ୟ ହେ –

# ବୋହୂ

ସରିତା ହରିଡ଼ା ଖଣ୍ଡେ ଗ୍ୟାସ୍ ବର୍ଣ୍ଣର ଉପରେ ଏପଟ ସେପଟ କରୁଥିଲା। ଏଇ ପୋଡା ହରିଡ଼ାଖଣ୍ଡେ କଳରେ ନ ଜାକିଲେ ଶୋଇପାରନ୍ତି ନାହିଁ ଶ୍ୱଶୁର ସିଦ୍ଧେଶ୍ୱର ବାବୁ। କଫ ଜଡିଯାଏ, ରାତିସାରା। ଖୁଁ ଖୁଁ ହୋଇ ଅଣନିଶ୍ୱାସୀ ହୋଇପଡନ୍ତି। ସରିତା କାନରେ ସେ ଶବ୍ଦ ପଡିଲେ ସେ ବିଚଳିତ ହୋଇପଡେ। ବ୍ୟସ୍ତ ହୋଇ ବିଛଣାରୁ ଉଠି ଆସେ। ତାଙ୍କ ଛାତି ଆଉଁଶି ଦିଏ। ଅଦା ଗୋଲ ମରିଚ ପାଣି ଟିକେ କରି ଦବକି ବୋଲି ପଚାରେ। ଶ୍ୱଶୁର ବି ବ୍ୟସ୍ତ ହୋଇ କହନ୍ତି, ନାଇଁ ମା! ତୁ ଯା ଶୋଇବୁ, ଏ ବୁଢ଼ାଟାର ଆଉ କେତେ କରିବୁ?

ସରିତା ବ୍ୟସ୍ତ ହୋଇ କହେ- କ'ଣ ଏମିତି କହୁଛନ୍ତି ବାପା! ଏ ସବୁ ମୁଁ କରିବିନି ତ ଆଉ କିଏ କରିବ? ମୁଁ କ'ଣ ତମର କେହି ନୁହେଁ? ସରିତାର କଣ୍ଠ ଓଦା ଓଦା ଶୁଭେ। ବାତ୍ସଲ୍ୟ ମମତାରେ ବିଚଳିତ ହୋଇଯାଆନ୍ତି ସିଦ୍ଧେଶ୍ୱର ବାବୁ। ତା ମୁଣ୍ଡରେ ପାପୁଲି ସ୍ପର୍ଶ କରି କହନ୍ତି, ତୁ ଆର ଜନ୍ମରେ ମୋ ମାଆ ଥିଲୁରେ।

ସରିତା ମୁହଁରେ ଉକୁଟି ଉଠେ ହସ। ସେ ଉଠିପଡି ରୋଷେଇ ଘରକୁ ଚାଲିଯାଏ। ଅଦା, ଗୋଲମରିଚ ମିଶ୍ରି ସିଝା ପାଣିରେ ଲେମ୍ବୁ ଫାଳଟେ ଚିପୁଡି

ଆଣି ଧରେଇ ଦିଏ ସିଦ୍ଧେଶ୍ୱର ବାବୁଙ୍କ ହାତରେ। ଢ଼ୋକ ଢ଼ୋକ କରି ସେ ପିଅନ୍ତି। କାଶ ଟିକେ ଉପଶମ କରେ। ସରିତା ତାଙ୍କ ଉପରେ ଚଦ୍ଦର ଖଣ୍ଡକ ଢ଼ାଙ୍କି ଦେଇ ଫେରି ଆସେ ନିଜ କୋଠରୀକୁ।

ସିଦ୍ଧେଶ୍ୱର ବାବୁଙ୍କ ଆତ୍ମାପରିତୃପ୍ତିରେ ଭରିଯାଏ, ସେ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ଦୁଇହାତ ଟେକି ମୁଣ୍ଡରେ ଲଗାନ୍ତି।

ସରିତା ପରି ଆଉ ଦୁଇ ବୋହୂ ଅଛନ୍ତି ସିଦ୍ଧେଶ୍ୱର ବାବୁଙ୍କର, ଯେଉଁମାନଙ୍କୁ ସେ ଓ ପତ୍ନୀ ଅନ୍ନପୂର୍ଣ୍ଣା ଦେବୀ ଛାଣିମାଛି ପରଖି ଘରକୁ ବୋହୂ କରି ଆଣିଥିଲେ। ସେହି ପରଖିବା ଭିତରେ କ'ଣ କୋଉଠି ଟିକେ ଭୁଲ ହୋଇଗଲା କି କ'ଣ ବୋହୂ ଦୁହେଁ ନା ସାତପୁରୁଷର ଘରକୁ ନିଜର ବୋଲି ଭାବିଲେ ନା ଶାଶୁ ଶ୍ୱଶୁର ବୋଲାଉ ଥିବା ବୁଢ଼ା ବୁଢ଼ୀଙ୍କୁ ଆପଣେଇଲେ। ଚତୁର୍ଥୀ ଅଷ୍ଟମଙ୍ଗଳା ବାସୀ ଯେ ଯାହାର ମଣିଷମାନଙ୍କୁ ଧରିଛୁ। ପୁଅ ଦୁଇଟା ବି ଆକଟ କଲେ ନାହିଁ। ଅନ୍ନପୂର୍ଣ୍ଣା ଦେବୀଙ୍କ ମାତୃତ୍ୱକୁ ଆଘାତ ଦେଇଥିଲା। ତାଙ୍କ ଶାଶୁ ପଣ ମାଟିରେ ମିଶି ଯାଇଥିଲା। ସେ ଅସହିଷ୍ଣୁ ହୋଇ ଉଠିଲେ। ସିଦ୍ଧେଶ୍ୱର ବାବୁଙ୍କ ଉପରେ ବିରକ୍ତ ହୋଇ କହିଥିଲେ, ତମେ ବି ଟିକେ ସେମାନଙ୍କ ନିଷ୍ପତ୍ତିରେ ମୁହଁ ଫିଟେଇବନି? ବୋହୂ ଗୁଡାକ। ବର୍ଷେ ଛମାସ ଘରେ ନ ରହିଲେ ଘରର ଚାଲିଚଳନ, ରୀତିନୀତି, ଦିଅ ଦେଇପିଣ୍ଡି, ଓଷାବ୍ରତ ଜାଣିବେ କେମିତି? ଏ ମାଇପି ବୋଲା ପୁଅ ଦୁଇଟା ବି ତାଙ୍କରି କଥାରେ ଲଙ୍ଗଳା।

ସିଦ୍ଧେଶ୍ୱର ବାବୁ ତାଙ୍କୁ ଶାନ୍ତ କଣ୍ଠରେ କହିଥିଲେ, ତାଙ୍କ ସଂସାର ସେମାନେ ସମ୍ଭାଳିବେନି? ତମେ କାହିଁକି ବ୍ୟସ୍ତ ହେଉଛ? ପିଲାଗୁଡାକ ଏବେ ଖୁସି କରିବେ ନି ତ ଆଉ କେବେ କରିବେ?

ଚିହିଁକି ଉଠି ଅନ୍ନପୂର୍ଣ୍ଣା ଦେବୀ କହିଥିଲେ, ତମେ ? ତମେ କହୁଚ ଟି ଏ କଥା? ଜୀବନ ସାରା ମୋତେ ବହୁକୁଟୁମ୍ବୀ ପରିବାରରେ ଘାଣ୍ଟି ଚକଟି ଦହଗଞ୍ଜ କଲ। ଶାଶୁ ଶ୍ୱଶୁର, ତିନି ତିନିଟା ଅବିବାହିତ ଦିଅର, ଦୁଇ ଦୁଇଟା ନଣନ୍ଦ। ୧୪ ବର୍ଷରେ ଏ ଘରେ ପାଦ ଦେଇଥିଲି ଯେ, ଚାଳିଶ ବର୍ଷର ବୁଢ଼ୀ ଭଳି ମୁଁ ତମ ଘରର ଦାୟିତ୍ୱ ମୁଣ୍ଡେଇ ଥିଲି।

କୁଆଡ଼େ ଥିଲା ତମର ଏ ଦରଦ? ଲମ୍ବା ଲମ୍ବା ଚିଠି ଲେଖୁଥିଲ ଆଦର୍ଶ ବୋହୂ, କର୍ତ୍ତବ୍ୟ ନିଷ୍ଠା, ନୀତି, ମୂଲ୍ୟବୋଧ ସଂପର୍କରେ।

ସିଦ୍ଧେଶ୍ୱର ବାବୁ ଶାନ୍ତ କଣ୍ଠରେ ପତ୍ନୀକୁ ବୁଝିଇଥିଲେ – ସେ ଯୁଗ ଥିଲା ଅଲଗା। ଏ ଯୁଗ ଅଲଗା।

ସେ ଯୁଗ ଫୁଗଠେଇଁ କାହିଁକି ଦୋଷ ଲଦୁଛ ? ସବୁ ଅଛି ଏଇ ମଣିଷ ଠେଇଁ। ଆପଣା ସାର୍ଥିକା ମାନେ ନିଜ ଦୋଷ ଘୋଡେଇ ଯୁଗ ଉପରେ ଲଦି ଦିଅନ୍ତି। ଅଭିମାନରେ ଫାଟି ପଡି ସେଦିନ ପତ୍ନୀ କହିଥିଲେ, ନରମି ଯାଇଥିଲେ ସିଦ୍ଧେଶ୍ୱର। ଅନ୍ନପୂର୍ଣ୍ଣା ଦେବୀ ବି ଆଉ କେବେ ପୁଅବୋହୂଙ୍କ ପ୍ରତି ଆପତ୍ତି ଅଭିଯୋଗ କରିନଥିଲେ, ଭରସା ଥିଲା ଏଇ ସାନ ଟୋକା ଉପରେ। ମା'ର ଗେହ୍ଲାପୁଅ ସେ ଥିଲା। ସିଏ ନିଶ୍ଚୟ ମନ କଥା ବୁଝିବ।

ସିଏ କିନ୍ତୁ ମୂଳରୁ ବିଗାଡି ଦେଲା। କଲେଜରେ ପଢୁ ପଢୁ ଅଣଓଡ଼ିଆ ବଙ୍ଗାଳୀ ଝିଅ ସହ କି ଭାବନାବ ଯୋଡ଼ିଲା ଯେ ଶେଷରେ ତାକୁ ହିଁ ବାହା ହେଲା। ଖାଲି ବଙ୍ଗାଳୀ ହେଲେ ବା ଯାହା ଚଳିଥାନ୍ତା, ସେ ପୁଣି ଖ୍ରୀଷ୍ଟିୟାନ୍ ଧର୍ମର। ଧର୍ମ, ଜାତି, ଗୋତ୍ର, ଖାନ୍‌ଦାନୀ ଚିହ୍ନି ଆଣିଥିବା ବୋହୂ ଗୁଡାକ ତ ହେଲେନି ଆଉ ଇୟେ ଆମକୁ ସରଗକୁ ନବ !।

ଦୁହିଁଙ୍କର ଭରସା ତୁଟିଗଲା ସନ୍ତାନମାନଙ୍କ ଉପରୁ। ପେନ୍‌ସନ୍‌କୁ ସମ୍ବଳ କରି ଗାଁରେ ପଡି ରହିଥିଲେ ଦୁହେଁ। ସାଇ ଭାଇ ଥିଲେ ତାଙ୍କର ସାହାରା। ବର୍ଷେ ଛ ମାସରେ ଅକାଳେ ସକାଳେ ପିଲାମାନେ ଆସନ୍ତି ଦିନେ ଦୁଇଦିନରୁ ଅଧିକ ରହିପାରନ୍ତି ନାହିଁ। ବୋହୂମାନେ ଚଳିପାରନ୍ତି ନାହିଁ ଗାଁରେ। ଏଇ ସାନ ପୁଅ ବୋହୂ ଟିକେ ଅଧିକ ଦିନ ରହନ୍ତି। ଦୁହିଁଙ୍କର ଚାକିରି, ଅଣ ଓଡ଼ିଆ ଝିଅଟା। ହେଲେ ବି ପରିବାରର ସବୁ ରୀତି ନୀତି, ଓଷାବାରକୁ ଖୋଳିତାଡି ପଚାରେ। ଶାଶୁଙ୍କ ପିଛା ପିଛା ଲାଗି ସବୁ କିଛି ବୁଝିବାକୁ ଚେଷ୍ଟା କରେ। କିନ୍ତୁ ଅନ୍ନପୂର୍ଣ୍ଣା ବଞ୍ଚିଥିବା ପର୍ଯ୍ୟନ୍ତ ଦିନେ ବି ବୋହୂଟାକୁ ଆପଣେଇବାର ସେ ଦେଖି ନାହାଁନ୍ତି। ସବୁବେଳେ ନାକ ଛିଞ୍ଚଡା କାନ ଛିଞ୍ଚଡା କଥା। ବିଚାରାଟି ଅତି ନ୍ୟୁନ ହୋଇ ଡରି କରି ଚଳୁଥିଲା ଏ ଘରେ। ଏକଦମ୍ ନିରୀହ ବୋକୀ, ଗାଉଁଲି ମୂର୍ଖ ଝିଅଟି ପରି। ଯାହା କହିଲେ ବି ପାଟି ଖଣ୍ଡକୁ ଦି'ଖଣ୍ଡ କରୁ ନଥିଲା।

ଆଶ୍ଚର୍ଯ୍ୟ ହେଉଥିଲେ ସିଦ୍ଧେଶ୍ୱର ବାବୁ। ବୋହୂଟା ପାଠଶାଠ ପଢ଼ିଛି। ଚାକିରି ଖଣ୍ଡେ ବି କରିଛି। ସେ ଏତେ ନିର୍ବୁଦ୍ଧିଆ ପରି ଲାଗୁନାହିଁ ଯେ ସେ ଶାଶୁଙ୍କର କଟୁକ୍ତିକୁ ହୃଦ୍‌ବୋଧ କରିପାରିବ ନାହିଁ। ତଥାପି ସେ ଶାଶୁଙ୍କ କୌଣସି କଥାକୁ ଦେହକୁ ନିଏ ନାହିଁ। ନିଏ ନାହିଁ କି ନ ନେବାର ଅଭିନୟ କରେ ସେ କଥା ଭଗବାନଙ୍କୁ ହିଁ ଗୋଚର। ବୋହୂଟାର ସହିଷ୍ଣୁତା ଦେଖି ଆଶ୍ଚର୍ଯ୍ୟ ହୁଅନ୍ତି ସିଦ୍ଧେଶ୍ୱର ବାବୁ। ଯେଉଁ ଚାରି ଆଠ ଦିନ ସେ ଏଠି ରହେ ତା ମୁହଁରୁ କେବେ

ହସ ଲିଭେ ନାହିଁ। ଲୋଟଣୀ ପାରା ପରି ଖଟୁଥାଏ। ସମସ୍ତଙ୍କ ମନଜାଣି ନୂଆ ନୂଆ ରୋଷେଇ କରେ। ପୂଜା ଘରକୁ ଯାଏ ନାହିଁ ସିନା ପୂଜାପାଇଁ ଯାହା ଯାହା ଭୋଗ ହୁଏ ସେ ଏରୁଣ୍ଡି ପାଖରେ ରଖି ଦେଇଥାଏ। ଶାଶୁ ଶ୍ୱଶୁରଙ୍କୁ ଦେବତା ମାନ୍ୟତା ଦିଏ। ଦେହମୁଣ୍ଡ ହେଲେ ପାଖେ ପାଖେ ଥାଏ। ଦିନ ରାତି ଜଗି ବସେ। କୋଉଠୁ ପାଏ ଏତେ ଶକ୍ତି ବୋହୂଟା? ତଥାପି ଅଭିମାନୀ ଶାଶୁଙ୍କର ମନ ତଟିଲା ନାହିଁ। ବୋହୂଟାକୁ ଅନ୍ୟ ବୋହୂମାନଙ୍କ ପରି ବୋହୂର ମାନ୍ୟତା ଦେଲେ ନାହିଁ।

ସରିତାର ବିଚାର କିନ୍ତୁ ଭିନ୍ନ ଥିଲା। ଯେଉଁ ବିଚାରବୋଧ ତା'ର ସାମର୍ଥ୍ୟକୁ ବୃଦ୍ଧି କରିଦେଇଥିଲା। ତା ହୃଦୟକୁ ସମୁଦ୍ରପରି ବିସ୍ତାର କରିଦେଇଥିଲା। ସେ ନିଜକୁ ପ୍ରସ୍ତୁତ କରିନେଇଥିଲା ଶାଶୁଙ୍କର ସବୁ ଅପମାନ, ଲାଞ୍ଛନା, ଅବହେଳା ଓ ଅନାଦରକୁ ସ୍ୱୀକାର କରିବାପାଇଁ। ତାଙ୍କ ସ୍ନେହ ମମତାରେ ତା'ର କାଣିଚାଏ ଅଧିକାର ନାହିଁ। ତାଙ୍କ କୋଳ ପୋଛା ପୁଅ, ଯାହାକୁ ନେଇ ସେ ଅନେକ ସ୍ୱପ୍ନ ଦେଖିଥିଲେ, ସେ ସ୍ୱପ୍ନକୁ ଭାଙ୍ଗି ଚୁରମାର୍ କରିଛି ସରିତା। ତେଣୁ କ୍ଷମା ନାହିଁ। ସେ ମହାପାପ କରିଛି, ଦେହକୁ କାଠ ପାଷାଣ କରି ସେ ସମସ୍ତଙ୍କର ଘୃଣା ବ୍ୟଞ୍ଜନାକୁ ସହି ସହି ତା ପାପର ଅନ୍ତ କରିବ। କିନ୍ତୁ ବିଧିର ବିଧାନ ଥିଲା ଭିନ୍ନ। ସରିତା ଭାବୁଥିବା ପାପର ଅନ୍ତ ହେଲା କି ନାହିଁ କେଜାଣି, ଶାଶୁଙ୍କର ଦିନକାଳ ଅନ୍ତ ହୋଇଗଲା।

ପୂଜାପାଇଁ କୂଅରୁ ପାଣି ବାଲ୍ଟିଏ ବାହାର କରୁ କରୁ ତାଙ୍କ ମୁଣ୍ଡଟା ବୁଲେଇ ଦେଲା, ସେଇ ଚନ୍ଦିନୀ ଉପରେ ପଡିଗଲେ। ଶକ୍ତ ଆଘାତ ଲାଗିଲା ପଛପଟ ମୁଣ୍ଡରେ। ସିଦ୍ଧେଶ୍ୱର ବାବୁ ଚାକର ପିଲାଟି ସହ ଉଠା ଉଠି କରି ତାଙ୍କୁ ଘରକୁ ନେଲେ। ପୁଅ ବୋହୂ ଖବର ପାଇ ଆସିଲାବେଳକୁ ସବୁ ଶେଷ।

ଦୁଃଖରେ ଭାଙ୍ଗି ପଡିଥିଲା ସରିତା। ଅବୁଝା ଶାଶୁଙ୍କ ପାଇଁ ସେ କିଛି କରିପାରିଲା ନାହିଁ।

ଶୁଦ୍ଧ କ୍ରିୟା ସରିଲା, କାଳେ ସିଦ୍ଧେଶ୍ୱରଙ୍କ ଦାୟିତ୍ୱ ଉପରେ ପଡିଯିବ ତେଣୁ କରଛଡ଼ା ଦେଲେ ଦୁଇ ବୋହୂ। ବୁଦ୍ଧିମତୀ ସରିତା କିମ୍ବା ଅଭିଜ୍ଞ ସିଦ୍ଧେଶ୍ୱର ବାବୁଙ୍କ ଦୃଷ୍ଟି ପଥକୁ ଏହା ଏଡି ଯାଇନଥିଲା। ବଡ ଦୁଇ ବୋହୂ ଗୃହିଣୀ ତଥାପି ଏ ଜଞ୍ଜାଳରେ ପଶିବାକୁ ଚାହୁଁ ନଥିଲେ।

କ୍ଷୀର ଗ୍ଲାସଟା ଶ୍ୱଶୁରଙ୍କ ହାତକୁ ବଢ଼େଇ ଦେଇ ଅଳି କଲା ପରି କହିଥିଲା ସରିତା। ବାପା! ଚାଲନ୍ତୁ ଆମ ପାଖରେ ରହିବେ, ଆମେ ଆପଣଙ୍କୁ ଏଠି ଏକୁଟିଆ ଛାଡି ଶାନ୍ତିରେ ସେଠି ରହିପାରିବୁ ନାହିଁ।

ନିରାଶ କଣ୍ଠରେ ସିଦ୍ଧେଶ୍ୱର କହିଥିଲେ, ନାଇଁରେ ମାଆ, ମୁଁ ଏକୁଟିଆ ବୋଲି ତତେ କିଏ କହିଲା ?

ହାତଗୋଡ଼ ଚଳୁଛି, ପିଲାଟା ଦେଖାଶୁଣା କରୁଛି, ଦରକାର ହେଲେ ମୁଁ ବଳେ ତମମାନଙ୍କ ପାଖକୁ ଗ୍ଭଲିଯିବି। ତୁ ତ ଗ୍ଭକିରି କରିଛୁ, ମୋ କାମ, ତୋ ଛୁଆମାନଙ୍କ କାମ, ଘର କାମ, ତୁ ଥକିଯିବୁ ମାଆ।

ତଥାପି ସରିତାର ମନ ମାନୁନଥିଲା। ମନ ଦୁଃଖରେ ସେ ଫେରିଆସିଥିଲା। ସିଦ୍ଧେଶ୍ୱର ବାବୁ ଭାବୁଥିଲେ, ଅନ୍ନପୂର୍ଣ୍ଣାଙ୍କ ପରି ସିଏ ବି ଏମିତି ଅଛଟକରେ ଗ୍ଭଲିଯାଆନ୍ତେ କି ?

କିନ୍ତୁ ହେଲା ନାହିଁ। ଗ୍ଭକର ପିଲାଟିର ସେବା ଯତ୍ନ ସତ୍ତ୍ୱେ କି ରୋଗ ମାଡିବସିଲା କେଜାଣି ସେ କତରା ଲଗା ହୋଇଗଲେ। ଝାଡା ପରିସ୍ରା ଉପରେ ନିୟନ୍ତ୍ରଣ ରହିଲା ନାହିଁ। ଦୁର୍ବଳ ହୋଇ ପଡିଲେ। ଅନ୍ନ ଜଳ ରୁଚିଲା ନାହିଁ। ଗୁହ ମୁତରେ ଘାଣ୍ଟି ହେଲେ। ପରପିଲାଟା କେତେ ଆଉ କରିବ। ଶେଷରେ ସିଏ ହାତ ଟେକି ଦେଲା। ଖବର ପାଇ ପୁଅ ବୋହୂମାନେ ଅସ୍ତବ୍ୟସ୍ତ ହୋଇ ଧାଇଁଲେ। ମାଆ ପରି କାଳେ ବାପାଙ୍କ ସହ ବି ଶେଷ ଦେଖା ହୋଇପାରିବନି, ଏଇ ଆଶଙ୍କା ସମସ୍ତଙ୍କ ମନରେ। ବୋହୂମାନେ ତ ଭାବିଥିଲେ ଏକାଥରେ ଅନ୍ତ୍ୟେଷ୍ଟିକ୍ରିୟାଟା ସାରିଦେଇ ଯିବେ। ସେହି ଅନୁସାରେ ପ୍ରସ୍ତୁତ ହୋଇ ଆସିଥିଲେ।

ସିଦ୍ଧେଶ୍ୱର ବାବୁଙ୍କର ଆୟୁଷ ବଳ ଥିଲା। ପୁଅମାନଙ୍କର ତତ୍ପରତା ବୋହୂମାନଙ୍କ ସେବା ଯତ୍ନରେ ତାଙ୍କ ସ୍ୱାସ୍ଥ୍ୟରେ ସୁଧାର ଆସିଲା। ବୋହୂ କହିଲେ ତ ସେଇ ସାନ ସରିତା, ଆଉ କିଏ ? ଯକ୍ଷ ପରି ସେ ଶ୍ୱଶୁରଙ୍କୁ ଜଗି ରହିଲା। ତାଙ୍କ ସେବାରେ ଦିନ ରାତିକୁ ଏକାକାର କରିଦେଲା।

ଶାଶୁଙ୍କ ପରି ସରିତାକୁ ସର୍ବଦା ଅବଜ୍ଞା ଦୃଷ୍ଟିରେ ଦେଖୁଥିବା ଦୁଇ ବଡବୋହୂ ମୁହଁ ମୋଡିଲେ। "ବୋହୂପଣ ଦେଖେଇ ହେଉଛି, ଫୁଲେଇ! ବୁଢ଼ୀ ତ ଗାତକୁ ଗଲା ସିନା ଦିନେ ବୋହୂ ବୋଲି ଗଣିଲା ନାହିଁ, ବୁଢ଼ାର ମନ ଜିତିଯିବ ଭାବୁଛି।" ବଡ ବୋହୂ କହିଲା।

ମଝିଆଣୀ କହିଲା – "ହଁ– ସତ୍ୟ ଯୁଗ ଶ୍ୱଶୁର ବୋହୂ। ଆହୁରି ଯଦି ନିଜ ଧର୍ମ ଜାତି ଗୋତ୍ରର ହୋଇଥାନ୍ତା ନା ଆଉ ସୃଷ୍ଟିକୁ ରଖି ନଥାନ୍ତା ଛୋପରୀ।"

ଛୁଟି ସରିଆସିଲା, ଯିଏ ଯାହାର ଜାଗାକୁ ଫେରିଯିବାର ପ୍ରସ୍ତୁତିରେ ଥିଲେ।

ସରିତା ଅଡି ବସିଲା। ଶ୍ୱଶୁରଙ୍କୁ ନ ନେଇ ସେ ଫେରିବ ନାହିଁ। ଶ୍ୱଶୁରଙ୍କର ବି ସେଇ କଥା। ମୁଁ ଯାଇ ତୋ ଜଂଞ୍ଜାଳ ବଢ଼େଇବି ରେ ମା!

ସରିତା ହସି ହସି କହିଲା - ମା ଆଉ ଆପଣ କ'ଣ ପିଲାମାନଙ୍କୁ ମଣିଷ କଲାବେଳେ ଜଞ୍ଜାଳ ବୋଲି ଭାବୁଥିଲେ?

ବଡ଼ବୋହୂ ଆଖି ମିଟିକା ମାରୁଥିଲା ବଡପୁଅ ଆଡେ ଚାହିଁ। ବଡପୁଅ ମୁହଁ ତଳକୁ କଲା। ସେ ଜାଣିଥିଲା ବଡ ବୋହୂ ବାପାଙ୍କୁ କେବେ ବି ଏମିତି ବାଧ କରି ଡାକିବନି। ଯଦି ସେ ନିଜେ ତାଙ୍କୁ ପାଖକୁ ନେବାର ବ୍ୟବସ୍ଥା କରିବ ସେ ମହାପ୍ରଳୟ କରିଦେବ ଘରେ। ତେଣୁ ନିରବ ରହିବା ହିଁ ଠିକ୍ ହେବ।

ମଝିଆ ବୋହୂର କ୍ୱାର୍ଟରସ୍ ଛୋଟ ଆଳ ଦେଖାଇ କାହାକୁ ଘରେ ଦିନେ ଓଳିଏ ବି ରଖେ ନାହିଁ। ବଡ ପୁଅ ବୋହୂଙ୍କ ନୀରବତା ଉପରେ ପରଦା ଟାଣି ନିଜ ଦୋଷ ଛଡାଇବାକୁ ଯାଇ କହିଲା - ହଁ-ମୁଁ କ'ଣ ବାପାଙ୍କୁ ନେଇ ମାସେ ଦୁଇ ମାସ ରଖନ୍ତିନି? ମୋର ତ ଘରେ ଗୋଡ ବୁଲିବାକୁ ଜାଗା ନାହିଁ।

ସରିତା ତାଙ୍କୁ ଆଉ ଅଧିକ କିଛି କହିବାକୁ ନଦେଇ କହିଲା - ନାଇଁ ଅପା! ଆପଣ ଚିନ୍ତା କରନ୍ତୁ ନି। ମୁଁ ବାପାଙ୍କୁ ନେଇଯିବି। ଯଦି ସେ ନ ଯାଆନ୍ତି ମୁଁ ଚାକିରି ଛାଡି ଆସି ଏଇଠି ରହିବି। ତାଙ୍କୁ ଦେଖା ଶୁଣା କରିବି।

ସିଦ୍ଧେଶ୍ୱର ବାବୁଙ୍କର ବୋହୂମାନଙ୍କୁ ଚିହ୍ନିବାକୁ ଆଉ ବାକି ନଥିଲା। ଏଇ ଏକ ଜିଦିଆ ଝିଅଟା କଥା ନ ଶୁଣିଲେ ସେ ଯେ ସତକୁ ସତ ଚାକିରି ଛାଡିଦେବ, ସେ କଥା ବି ସେ ଅନୁଭବ କରୁଥିଲେ। ଶେଷରେ ସେ ହାର ମାନିଲେ। ସେଇ ଦିନୁ ସାନପୁଅ ବୋହୂଙ୍କ ପାଖରେ ସେ ରହି ଆସୁଛନ୍ତି। ବୋହୂଟା ଦିନେ ବି ତାଙ୍କ କାମ କରିବାରେ କ୍ଲାନ୍ତ ହେବା ସେ ଦେଖିନାହାଁନ୍ତି। ଚାକର ପିଲାଟି ଯେତେ ଯାହା ତାଙ୍କ କାମ କଲେ ବି ଅଫିସ୍‌ରୁ ଫେରି ନିଜେ ତଦାରଖ କରେ। ହସି ହସି ତାଙ୍କର ଭଲମନ୍ଦ ପଚାରି ବୁଝେ।

ସିଦ୍ଧେଶ୍ୱର ବାବୁ ଅଭିଭୂତ ହୋଇ ପଡନ୍ତି। ଝିଅଟାକୁ ଘୃଣାକରି କି ଅପରାଧ ନ କରିଛନ୍ତି ଅନ୍ନପୂର୍ଣ୍ଣା। ବଞ୍ଚିଥିବା ପର୍ଯ୍ୟନ୍ତ ସେ ତାକୁ ଠାକୁର ଘର ଓ ରୋଷେଇ ଘର ଦେଇପିଣ୍ଡି ଛୁଆଇଁ ଦେଇ ନଥିଲେ। ଦିଅ ଘର କି ଦେଇପିଣ୍ଡି ପାଇଁ ସରିତାର ଅବସୋସ ନଥିଲା, କିନ୍ତୁ ଶାଶୁଙ୍କ ହୃଦୟରେ ଜାଗାଟିକେ ପାଇନଥିଲା ବୋଲି ସେ ଦୁଃଖରେ ଭାଙ୍ଗି ପଡୁଥିଲା। ସେଇ ଦିନ ଗୁଡାକ କଥା ସ୍ମରଣ କରି ଅନେକ ସମୟରେ ସିଦ୍ଧେଶ୍ୱର ବାବୁ ବି ଆତ୍ମଗ୍ଲାନିରେ ସଢ଼ି ଯାଆନ୍ତି।

ବଡ ବୋହୂଟା ବି ଶାଶୁ ପରି ସରିତା ପ୍ରତି ଅସହିଷ୍ଣୁ। ସମସ୍ତେ ତ ରହନ୍ତି ବାହାରେ। ପୂଜାପାଠ ବେଳେ ଏକାଠି ହୁଅନ୍ତି ଗାଁରେ। ସରିତାକୁ ଗୋଡେ ଗୋଡେ ଜଗିଥାଏ ବଡ ବୋହୂ। ତାକୁ ଦିଅ ଘର ମାଣହାଣ୍ଡି, ଦେଇପିଣ୍ଡି ମନା। ଆଉ ଯେଉଁଠିକୁ ଗଲେ ପଛେ ଯାଉ। ଶାଶୁଙ୍କ ଅମଳର ଏ ଅନୁଶାସନ। ବଡ ବୋହୂର ପ୍ରେମ ଓ ଭକ୍ତି ଉଛୁଳି ଉଠେ ଦିବଂଗତ ଶାଶୁଙ୍କ ପ୍ରତି। ଆଖିରୁ ଲୁହ ଗଡେଇ କେତେ ଛଇ ଛଟକରେ ଶାଶୁଙ୍କ ଗୁଣ ଗୁଣି ହୋଇ କହେ, ମୋ ଶାଶୁ ମୋତେ ସମର୍ପିଛନ୍ତି ମାଣ ହାଣ୍ଡି, ଦିଅ ଘର, ଦେଇପିଣ୍ଡି। ସେଇ ତିନିଟା ଜିନିଷ ଉପରେ ତ ଅଟକି ରହିଛି ତାଙ୍କର ଆତ୍ମା। ଇତର ମଣିଷ କେହି ତାକୁ ଛୁଇଁଲେ ତାଙ୍କ ଆତ୍ମାକୁ କଷ୍ଟ ହେବ। ବଡ ବୋହୂର ଆକ୍ଷେପଟା ଯେ ସରିତା ପ୍ରତି ଥାଏ ସେ କଥା ବୁଝିବାକୁ ବାକି ରହେ ନାହିଁ ସିଦ୍ଧେଶ୍ୱର ବାବୁଙ୍କର। ସେ ଅସହାୟ ହୋଇ ପଡନ୍ତି। ବଡ ବୋହୂ ଦେହରେ ପ୍ରବାହିତ ରକ୍ତ ଯେ ସରିତାର ଶିରା ପ୍ରଶିରାରେ ପ୍ରବାହିତ ରକ୍ତ ଠାରୁ ଅଲଗା ନୁହେଁ, ବଡ ବୋହୂର ବିଚାର ଧାରା ଅତ୍ୟନ୍ତ ସଂକୀର୍ଣ୍ଣ, ଟୁବ ଗଡ଼ିଆ ପରି, ସରିତାର ବିଚାର ଧାରା ପ୍ରଶାନ୍ତ ମହାସାଗର ପରି ଗଭୀର, ଏକଥା ବୁଝେଇପାରନ୍ତି ନାହିଁ ବଡ଼ ବୋହୂକୁ। ଏ କଥା ବୁଝିବା ପାଇଁ ବୋଧଶକ୍ତି ବି ନାହିଁ ବଡ ବୋହୂର। ପ୍ରଚଣ୍ଡ ଅନ୍ତର୍ଦହନ ଅନୁଭବ କରନ୍ତି ସିଦ୍ଧେଶ୍ୱର ବାବୁ।

ଏ ସବୁ ପ୍ରତି ସରିତାର ନିର୍ମୋହ ନିର୍ଲିପ୍ତ ପଣ ବେଡି ଉପରେ କୋରଡ଼ା ପରି ଅନୁଭୂତ ହୁଏ। ସେ ଚାହାଁନ୍ତି ତା ପ୍ରତି ହେଉଥିବା ଅନ୍ୟାୟ ଅତ୍ୟାଚାରର ସେ ପ୍ରତିବାଦ କରୁ। ନିଜ ଅଧିକାର ସାବ୍ୟସ୍ତ କରୁ। ଶାଶୁଙ୍କ କଥା ଥିଲା ଅଲଗା, ଗୁରୁଜନ ବୋଲି ତାଙ୍କୁ ସମ୍ମାନ ଦେଇ ନୀରବ ରହୁଥିଲା। ମାତୃତ୍ୱର ଅଭିମାନ ଭାଙ୍ଗିବା ପାଇଁ ସେ ସମୟ ପାଇଲେ ନାହିଁ। ଖୁବ୍ କମ୍ ଦିନରେ ସେ ଚାଲିଗଲେ। କିନ୍ତୁ ବଡ ଦୁଇ ବୋହୂଙ୍କର ସରିତା ପ୍ରତି ହେଉଥିବା ବ୍ୟବହାରକୁ ବରଦାସ୍ତ କରିପାରନ୍ତି ନାହିଁ ସିଦ୍ଧେଶ୍ୱର ବାବୁ। କି ଧାତୁରେ ଗଢ଼ା ହୋଇଛି ମଣିଷଟାର ଶରୀର ଯେ, ସବୁ ଲାଞ୍ଛନା, ଅପମାନ, ବ୍ୟଙ୍ଗ, ବିଦ୍ରୂପକୁ ଚନ୍ଦନ ପରି ବୋଳି ହୋଇଯାଉଛି। ମାଆ ବୋଲି ଡାକି ଦେଲେ ଯେତେ କାମ ଥାଉ ଛାଡିଛୁଡି ଦେଇ ହସ ହସ ମୁହଁରେ ହାଜର ହୋଇଯାଉଛି ପାଖରେ। ଏତେ ଅନାଦର ଅବହେଳା ଅପମାନ ସତ୍ତ୍ୱେ ସେ କାହାରି କଥା ତଳେ ପକାଏ ନାହିଁ। ସମସ୍ତଙ୍କ ମନକଥା ବୁଝେ। କେହି ବୁଝନ୍ତି ନାହିଁ ତା କଥା।

ସିଦ୍ଧେଶ୍ୱରଙ୍କୁ ଆଜିକାଲି ଗୋଟାଏ ଅଜଣା ଆତଙ୍କ ଅତିଶୟ ପୀଡା ଦିଏ। ତାଙ୍କ ବିବେକ ବୋଧ ତାଙ୍କୁ ବାରମ୍ବାର ଦଂଶନ କରେ। ଅନ୍ୟାୟ କରିବା ଅପେକ୍ଷା ଅନ୍ୟାୟ ସହିଯିବା ଯେ କେତେ ଗ୍ଲାନିକର ତାହା ସେ ଅଙ୍ଗେ ଅଙ୍ଗେ ଅନୁଭବ କରନ୍ତି। ତାଙ୍କର ଅନ୍ତରାତ୍ମା ଚିତ୍କାର କରି ଉଠେ। ଗୁଡାଏ ମାନସିକ ଯନ୍ତ୍ରଣା ଭୋଗିବା ପରେ ସେ ଗୋଟାଏ ନିଷ୍କର୍ଷରେ ପହଞ୍ଚିଲେ। ଗୋଟାଏ ସିଦ୍ଧାନ୍ତ ପାଖରେ ଅଟକି ଗଲେ। ଉଚ୍ଚାଟ ହୋଇ ଅପେକ୍ଷା କଲେ ପୁଅ ବୋହୂଙ୍କୁ।

ପୁଅ ବୋହୂ ଫେରିଲେ ଅଫିସ୍‌ରୁ, ସରିତା ଶ୍ୱଶୁରଙ୍କ ହାତକୁ ଚା କପ୍‌ଟା ବଢ଼େଇ ଦେଇ ବିସ୍କୁଟ୍ ପ୍ଲେଟ୍‌ଟା ଥୋଇଦେଲା। ଖାଲି ଚା କେବେ ସିଦ୍ଧେଶ୍ୱର ବାବୁଙ୍କୁ ଦିଏ ନାହିଁ ସରିତା। ସ୍ୱାମୀ ହାତକୁ ବି ବଢ଼େଇ ଦେଲା ଚା। ଚା କପ୍‌ରେ ଚୁମୁକ୍‌ଟିଏ ଦେଇ ସିଦ୍ଧେଶ୍ୱର ବାବୁ କହିଲେ, ମୋର କଥାଟିଏ ଅଛି ତମମାନଙ୍କୁ କହିବା ପାଇଁ। ସରିତା ନିଜ ପାଇଁ ଚା ଆଣିବାକୁ ରୋଷେଇ ଘରକୁ ଯାଉଥିଲା, ଫେରିପଡି ଶ୍ୱଶୁରଙ୍କ ମୁହଁକୁ ଚାହିଁଲା। ଅନ୍ୟଦିନ ପରି ସେ ମୁହଁରେ ରୋଗଯନ୍ତ୍ରଣାର ଲେଶମାତ୍ର ଚିହ୍ନ ନଥିଲା କି ବ୍ୟସ୍ତତା ଭାବ ନଥିଲା। ସରିତା ପ୍ରତି କୃତ୍ୟ କୃତ୍ୟ ଭାବ ବି ନଥିଲା, ଯାହା ଅତ୍ୟନ୍ତ ପୀଡା ଦିଏ ସରିତାକୁ। ଗୋଟାଏ ଉଜ୍ଜ୍ୱଳ ଆଭାରେ ଉକୁଟି ଉଠୁଥିଲା ସେ ମୁହଁ। ତାଙ୍କର ପେଜୁଆ ଆଖି ଦୁଇଟି ଚମକି ଉଠୁଥିଲା। ସରିତା ଉତ୍ସାହିତ ହେଲା। ତାଙ୍କ ମୁଖର ଛିଟିକାଏ ଭାବ ସଂକ୍ରମିତ କଲା ସରିତାକୁ। ସେ ଓଠରେ ଝଲକାଏ ହସ ମାଖିଦେଇ କହିଲା -

କ'ଣ କହିବେ ବାପା! ତମ ନାତିର ଦୁଷ୍ଟାମୀ କଥା ତ! ମୁଁ ଆଉ ତାକୁ ପାରୁନି। ଆପଣ ତାକୁ ଯାହା ଶାସ୍ତି ଦେବା କଥା ଦିଅନ୍ତୁ। ମୋର କିଛି କହିବାର ନାହିଁ।

ସିଦ୍ଧେଶ୍ୱର ଗମ୍ଭୀର ହୋଇ କହିଲେ। ସେ ଟୋକାକୁ ନୁହେଁ, ମୁଁ ତତେ ଶାସ୍ତି ଦେବି।

ବିଚଳିତ ହୋଇ ପଡିଲା ସରିତା। ମୋର କ'ଣ ଭୁଲ୍ ହୋଇଗଲା କି ବାପା ?

ଗୁରୁ ଗମ୍ଭୀର ସ୍ୱରରେ କହିଲେ ସିଦ୍ଧେଶ୍ୱର ବାବୁ। ଭୁଲ ନୁହେଁ। ଅପରାଧ କରିଛୁ। ତତେ ଶାସ୍ତି ଭୋଗିବାକୁ ପଡିବ।

ଅସହାୟ କଣ୍ଠରେ କହିଲା ସରିତା - କି ଅପରାଧ ? ସିଦ୍ଧେଶ୍ୱର ବାବୁ ସାନ ପୁଅ ଆଡେ ଚାହିଁ କହିଲେ - ମୋ ଦିନ କାଳ ତ ସରି ଆସିଲାଣି। ପାଚିଲା

ପତ୍ର, କେତେ ବେଳେ କୋଉ କଥା। ତୋ ଭାଇ ଭାଉଜମାନଙ୍କୁ ଖବର ଦେ। ମୋର ଗୋଟାଏ ଗୁରୁତ୍ୱପୂର୍ଣ୍ଣ କାମ ବାକି ଅଛି। କାମଟା ଯେତେ ଶୀଘ୍ର ହେବ ସେତେ ଭଲ।

ତିନି ପୁଅ ବୋହୂ ବସିଥିଲେ। ସିଦ୍ଧେଶ୍ୱର ବାବୁ ଆରମ୍ଭ କଲେ କଥା। ଆଗକୁ ଦୀପାବଳୀ ଆସୁଛି। ବଡ ବଡିଆଙ୍କୁ ପିଣ୍ଡ ପାଣି ଦିଆଯିବ, ପିତୃେଇ ଡକାଯିବ। ତମମାନଙ୍କ ମା ଅନେକ ଦିନ ହେଲା ବାରମ୍ବାର ସ୍ୱପ୍ନରେ ଆସୁଛି, ତା ଆତ୍ମା ଅତୃପ୍ତରେ ଅଛି।

ତାଙ୍କ ପାଟିରୁ କଥା ନ ସରୁଣୁ ବଡବୋହୂ କହିଲା – ଆମେ ତ କେବେ ତାଙ୍କ ପିଣ୍ଡ ପାଣିରେ ଅବହେଳା, ଅନାଚାର କରିନୁ ବାପା! ଦୀପାବଳୀରେ ତ ଠିକ୍ ଠିକ ଶ୍ରାଦ୍ଧ ଦିଆହେଉଛି। ସିଦ୍ଧେଶ୍ୱର ବାବୁ କହିଲେ – କଥା ସେଠି ନାହିଁ। ସେ ପ୍ରାୟଶ୍ଚିତ ଚାହୁଁଛି! ତା ଜୀବନ କାଳ ଭିତରେ ସେ ଯେଉଁ ଭୁଲ୍ କରିଥିଲା ସେଥିପାଇଁ ତା ଆତ୍ମା ଅନୁତାପ କରୁଛି, ସମସ୍ତେ ଜିଜ୍ଞାସୁ ଦୃଷ୍ଟିରେ ଚାହିଁଲେ ସିଦ୍ଧେଶ୍ୱର ବାବୁଙ୍କ ଆଡ଼େ।

ବଡ଼ ପୁଅ କହିଲା – କି ପ୍ରକାର ଅପରାଧ।

ମଝିଆ ପୁଅ କହିଲା – କି ପ୍ରକାର ପ୍ରାୟଶ୍ଚିତ।

ବୋହୂମାନେ ପରସ୍ପର ମୁହଁ ଚାହାଁ ଚୁହିଁ ହେଲେ।

ସିଦ୍ଧେଶ୍ୱର ବାବୁ ଗମ୍ଭୀର ହୋଇ କହିଲେ – ତମେ ମାନେ ମୋତେ କଥା ଦିଅ। ସେ ଯାହା ଚାହୁଁଛି ତମେମାନେ ତାହା କରିବ। କେହି ଆପତ୍ତି ଅଭିଯୋଗ କରିବ ନାହିଁ।

ସର୍ବଦା କଥା ଚତୁରୀରେ ଶାଶୁଙ୍କୁ କାନିରେ ବାନ୍ଧି ରଖିଥିବା ବଡବୋହୂ ବ୍ୟସ୍ତ ହେବାର ଅଭିନୟ କରି କହିଲା – ହଁ ବାପା ତାଙ୍କ କଥା ଆମେ ଅକ୍ଷରେ ଅକ୍ଷରେ ପାଳନ କରିବୁ। ତାଙ୍କ ଆତ୍ମାର ଶାନ୍ତି ପାଇଁ ଆମେ ସବୁ ପ୍ରକାର ପୂଜାପାଠ କରିବୁ। ତାଙ୍କ ଆତ୍ମା ଅତୃପ୍ତ ରହିଲେ ଏ ପରିବାରର କାହାରି ମଙ୍ଗଳ ହେବନାହିଁ। ଆମେ ସମସ୍ତେ ନରକରେ ପଡିବୁ। କୁହନ୍ତୁ – ଆମେ କ'ଣ କରିବୁ।

ବଡ଼ବୋହୂ ସହ ଅନ୍ୟମାନେ ମଧ୍ୟ ମୁଣ୍ଡ ହଲେଇ ସମ୍ମତି ସୂଚକ ସଂକେତ ଦେଲେ। ଏଥର ସିଦ୍ଧେଶ୍ୱର ବାବୁ ନିରୁତ୍ତପ୍ତ କଣ୍ଠରେ କହିଲେ – ଶ୍ରାଦ୍ଧ ଓ ପୂଜା ପାର୍ବଣ, ଓଷାବ୍ରତରେ ସରିତା ବଡବଡିଆଙ୍କୁ ପିଣ୍ଡ ଦେବ, ମାଣହାଣ୍ଡି ତା' ଅଧିକାରରେ ରହିବ। ସରିତା ଦେଇପିଣ୍ଡିରେ ପାଣିଦେବ।

ବଡବୋହୂର ଅହଂ ଉପରେ ଗୋଟାଏ ଶକ୍ତ କୁଠାରାଘାତ। ସେ ସ୍ୱପ୍ନରେ ସୁଦ୍ଧା କଳ୍ପନା କରିନଥିଲା, ଶାଶୁଙ୍କ ପରେ ଏ ଘରେ ତା'ର ଅଧିକାର ଓ ନିରଙ୍କୁଶ କ୍ଷମତା ବିସ୍ତାରରେ କେହି ପ୍ରତିଦ୍ୱନ୍ଦୀ ହେବ। ସେ ପ୍ରତିବାଦ କରି କହିଲା, ଏ କେମିତି ସମ୍ଭବ ହେବ ବାପା। ସେ ତ ସବାସାନ ବୋହୂ। ତା ତୁଣ୍ଡରୁ ବାହାରି ଆସୁଥିଲା ସେ ତ ବିଧର୍ମୀ, ଅଜାତି ଘର ଝିଅ। ବହୁ କଷ୍ଟରେ ସମ୍ଭାଳି ନେଲା ନିଜକୁ। କେବଳ ଏତକ କହିଲା - ମାଆ ତ ତାକୁ ପୂଜାଘର ଏରୁଣ୍ଡି ଡିଆଁଉ ନଥିଲେ। ମୋତେ ସବୁ କରିବାକୁ ହେଉଥିଲା।

ସିଦ୍ଧେଶ୍ୱର ବାବୁ କହିଲେ - ସେଇ ଭୁଲ ସେ କରିଥିଲା ବୋଲି ତ ସେ ପ୍ରାୟଶ୍ଚିତ କରିବାକୁ ଚାହୁଁଛି। ସରିତା ସବୁଠାରୁ ସାନ ହେଲେ ବି ବଡ ବୋହୂର ଦାୟିତ୍ୱ ନିର୍ବାହ କରିଛି। ତା କର୍ତ୍ତବ୍ୟରେ କେବେ ବି ଅବହେଳା କରିନାହିଁ। ମୋର ମଧ୍ୟ ସେଇ ଇଚ୍ଛା। ଏ ଦାୟିତ୍ୱ ମଧ୍ୟ ସେ ନେଉ। ତା'ପରେ ସବୁ ପୁଅ ବୋହୂମାନଙ୍କ ଉଦ୍ଦେଶ୍ୟରେ କହିଲେ - ମୁଁ ଭାବୁଛି ତମେମାନେ କେବେ ଚାହିଁବନି ତମ ମାଆ ପରଲୋକରେ ଏମିତି କଷ୍ଟ ପାଉ। ତା ଇଚ୍ଛାକୁ ତମେମାନେ ସମ୍ମାନ ଦବ। ସମସ୍ତେ ଏକମତ ହେବ। ବଡପୁଅ କହିଲା - ହଁ ବାପା, ଏଥିରେ ଅମତ ହେବାର କ'ଣ ଅଛି ? ବୋଉ ଯଦି ଚାହୁଁଛି, ସରିତା ପିଣ୍ଡ ଦେଉ। ଆମର କିଛି କହିବାର ନାହିଁ।

ମଝିଆ ପୁଅ ବୋହୂ ବି ସେଇ ଏକା କଥା କହିଲେ।

ଏତେ କଥା କହୁଥିବା ବଡ ବୋହୂଟା ହଠାତ୍ ଗୁମ୍‌ସୁମ୍ ହୋଇଗଲା। ସରିତା ବିଚଳିତ ହୋଇ କହିଲା - ନାଇଁ ବାପା। ଏ ସବୁ କ'ଣ କହୁଛନ୍ତି ଆପଣ ? ଏସବୁ ମୋ ଦ୍ୱାରା ହେବନାହିଁ। ସିଦ୍ଧେଶ୍ୱର ବାବୁ ଶାସନ କଲାପରି କହିଲେ ହଁ-ତୁ ପାରିବୁ। ତୋ ଉପରେ ମୋର ଭରସା ଅଛି।

ଛୁରୀ ଚାଲି ଯାଉଥିଲା ବଡ ବୋହୂ ଦେହରେ। ତା'ର ଆଧିପତ୍ୟ, ତା'ର ପ୍ରତିଷ୍ଠା, ତା'ର ବଡ ପଣର ବିଶାଳ ସାମ୍ରାଜ୍ୟ ଯେମିତି ଏଇ ମୁହୂର୍ତ୍ତରେ ଚୁରମାର୍ ହୋଇଗଲା। ପୁଅମାନେ କଥା ଦେଇସାରିଲେଣି। ଏବେ ସିଏ ପ୍ରତିବାଦ କଲେ କେବଳ ଚିହ୍ନା ପଡିବା ସାର ହେବ। ତା'ର ସବୁତକ କ୍ରୋଧ ପୁଞ୍ଜିଭୂତ ହେଲା ସରିତା ଉପରେ। ମଉନ ମୁହିଁ, କୁମ୍ଭୀର କାନ୍ଦଣା କାନ୍ଦୁଛି। ସବୁ ନାଟର ଗୋବର୍ଦ୍ଧନ। କିନ୍ତୁ ସେ ସବୁ ତା ଓଠ ପାଖରେ ଅଟକି ଗଲା। ଚୁପ୍ ରହିବା ବ୍ୟତୀତ ତା'ର ଅନ୍ୟଗତି ନଥିଲା।

ସିଦ୍ଧେଶ୍ୱର ବାବୁ ଗଭୀର ଆତ୍ମ ସନ୍ତୋଷ ଅନୁଭବ କଲେ। ଅନ୍ନପୂର୍ଣ୍ଣା ବଞ୍ଚିଥିଲା ବେଳେ ସରିତା ପ୍ରତି ହେଉଥିବା ଅନ୍ୟାୟର ପ୍ରତିବାଦ ସେ କରିପାରୁନଥିଲେ। ଗଭୀର ଅନ୍ତର୍ଦାହରେ, ବିବେକର ଦଂଶନକୁ ସହ୍ୟ କରି ନେଉଥିଲେ। ଅନ୍ୟାୟ କରିବା ବ୍ୟକ୍ତି ଅପେକ୍ଷା ଅନ୍ୟାୟ ସହିବା ବ୍ୟକ୍ତିର ପାପମାତ୍ରା ବେଶି। ଅନ୍ନପୂର୍ଣ୍ଣା ଯେଉଁ ଭୁଲ୍ କରୁଥିଲେ ତାହା ଥିଲା ତାଙ୍କର ଅଜ୍ଞାନତା। କିନ୍ତୁ ସଜ୍ଞାନ ଚିତ୍ତରେ ସହ୍ୟ କରୁଥିଲେ ସିଦ୍ଧେଶ୍ୱର ବାବୁ। ଅନ୍ନପୂର୍ଣ୍ଣାଙ୍କ ନାଁ ନେଇ ସଂପୂର୍ଣ୍ଣ କପୋଳ କଳ୍ପିତ କାହାଣୀକୁ ପୁଅ ବୋହୂଙ୍କ ପାଖରେ ସତ୍ୟ ବୋଲି ଉପସ୍ଥାପନ କରି ସେ ଯଦି ଭୁଲ କରିଛନ୍ତି, ଆଉ ସେଇ ଭୁଲ୍ ଫଳରେ ସେ ସରିତାକୁ ତା'ର ସ୍ୱାଭିମାନ ସ୍ୱାଧୀକାର ଫେରେଇ ଦେଇଛନ୍ତି, ବର୍ଷ ବର୍ଷ ଧରି ପାଷାଣୀ ଅହଲ୍ୟା ପରି ସବୁ ଲାଞ୍ଛନା ଅପମାନ ସହି ଆସୁଥିବା ତା ମନରେ କାଣିଚାଏ ଖୁସି ଭରି ଦେଇଛନ୍ତି, ବାରମ୍ବାର ଏଇ ଭୁଲ କରିବାରେ ତାଙ୍କର ଦ୍ୱିଧା ନାହିଁ। ଏଥିପାଇଁ ତାଙ୍କ ବିବେକ ବୋଧ ପାଖରେ ସେ ଆଦୌ ଦୋଷୀ ହେବେ ନାହିଁ।

ଏକ ଅନନ୍ୟ ଆନନ୍ଦରେ ସିଦ୍ଧେଶ୍ୱରବାବୁ ଉଲ୍ଲସିତ ହୋଇପଡିଲେ।

# ମାତୃତ୍ୱ

କୂଅ ଘେରିପଟେ ବେଢ଼ି ଯାଇଥିଲେ ଦେଖଣାହାରୀ। କୂଅ ତ ନୁହେଁ ବାଙ୍ଗିଟାଏ। କୋଡ଼ ସାତ ପୁରୁଷ ଅମଳର। ପଥରରେ ତିଆରି। ଅକାତକାତ ପାଣି। ଅନଭ୍ୟସ୍ତମଣିଷଟିଏ ନଇଁପଡି କୂଅ ଭିତରକୁ ଦେଖି ପାରିବନାହିଁ ବେଶି ସମୟ। ମୁଣ୍ଡ ଘୁରେଇଦେବ। ପଥର ନନ୍ଦ ଘେରିପଟେ ଶିଉଳି ଓ ଅନାବନା ଘାସ ଭର୍ତ୍ତି। ଜନ୍ତୁଜୁନ୍ତାର ବି ଭୟ ଅଛି। ଏତେ ରାତିରେ ବୋହୂଟାର କି କାମ ସେଠି ଯେ ସେ ପଡିଗଲା କୂଅରେ।

ଉପରୁ ଥାଇ ଦେଖଣାହାରୀ ଟର୍ଚ୍ଚ ଦ୍ୱାରା ତ କେହି ଡିବିରି ଆଲୁଅରେ କୂଅ ଭିତରକୁ ଆଲୋକିତ କରିବାକୁ ଚାହୁଁଥିଲେ। ପୁଣି କେହି ମୋବାଇଲର ସ୍ତିମୀତ ଆଲୋକରେ ବି କୂଅ ଭିତରର ରହସ୍ୟ ଉନ୍ମୋଚନ କରିବାର ଚେଷ୍ଟାରେ ଥିଲେ। ରାତ୍ରିର ନିରନ୍ଧ୍ର ଅନ୍ଧକାର ଭିତରେ ବିରାଟକାୟ କୂଅର ଗର୍ଭଟା ମରଣଯନ୍ତାର ଭ୍ରମ ସୃଷ୍ଟି କରୁଥିଲା। ପାତାଳଭେଦୀ କୂଅଟା। ରାତି ବିକାଳି, କେତେ ଅଶରୀରୀ ଆତ୍ମା, କେତେ ପ୍ରକାର ପ୍ରାଣ ଘାତକ ଜନ୍ତୁଜୁନ୍ତା। କାହାରି ଅସ୍ତିତ୍ୱକୁ ଅସ୍ୱୀକାର କରିହେବ ନାହିଁ। ସେଇ ମରଣ ଗହ୍ୱର ଭିତରୁ ଲୁହା କଡିଟାକୁ ଖୁବ୍ ଜୋର୍‌ରେ ଜାବୁଡ଼ି ଧରି

ବୋହୂଟା ବିକଳ ହୋଇ କହୁଥିଲା ରକ୍ଷା କର ! ରକ୍ଷା କର ! ମତେ ବଞ୍ଚାଅ, ବଞ୍ଚାଅ ମତେ। କିଏ ଅଛି ମତେ ଦୟାକର। ବେଳକୁ ବେଳ ଅଧୈର୍ଯ୍ୟ ହୋଇପଡୁଥିଲା ବୋହୂଟା।

ଉପରେ ଥିବା ମଣିଷମାନେ ହାଁ ହାଁ ହେଉଛନ୍ତି। କିଏ ଅଛରେ ଯାଅ, ବୋହୂଟାକୁ ବଞ୍ଚାଅରେ। ଅଛଟକରେ ବୋହୂଟାର ପ୍ରାଣ ଚାଲିଯିବରେ। ଜଲ୍‌ଦି କରରେ, ଜଲ୍‌ଦି କର। ରାମା, ଦାମା, ବଳିଆ, ଶଙ୍କରା କେହି ଜଣେ ହେଲେ ସାହସ କରି ପଶରେ। ଉଠେଇ ଆଣରେ ତାକୁ। ମରିଯିବରେ ବୋହୂଟା ଛାନିଆ ହୋଇ।

କୋଳାହଳରେ କୂଅ ମୂଳଟା ଫାଟିପଡୁଥିଲା ସିନା କେହି ଜଣେ ହେଲେ ସେଇ ବିକଟ ବିବର ଭିତରକୁ ପ୍ରବେଶ କରିବାର ସାହସ କରିପାରୁନଥିଲେ। ବୋହୂଟାର ଆର୍ତ୍ତ ଚିତ୍କାର ବେଳକୁବେଳ ଅସହ୍ୟ ହୋଇ ପଡୁଥିଲା। କଣ୍ଠ, ତଣ୍ଟି ଫଟେଇ ପାରୁ ପର୍ଯ୍ୟନ୍ତ ସେ ଚିତ୍କାର କରୁଥିଲା। ତା ଚିତ୍କାର ସବୁ ସେଇ କାଳଗହ୍ୱର ଭିତରେ ପ୍ରତିଧ୍ୱନିତ ହୋଇ ଗୋଟାଏ ଭୌତିକ ପରିବେଶ ସୃଷ୍ଟି କରିଥିଲା। ଧିରେ ଧିରେ ହତାଶ ହୋଇ ପଡୁଥିଲା ବୋହୂ। ଆସ୍ଥା ତୁଟି ଯାଉଥିଲା ଜୀବନ ଉପରୁ। ଜଗତ ଉପରୁ। ଭାଗ୍ୟ ଭଗବାନଙ୍କ ଉପରୁ। ନୈରାଶ୍ୟରେ ଜର୍ଜରିତ ହୋଇପଡୁଥିଲା। ଏଥର ସେ କପାଳକୁ ନିନ୍ଦିବା ଆରମ୍ଭ କରିଦେଇଥିଲା। ଧରିଥିବା ଲୁହା କଡି ଉପରେ ମୁଣ୍ଡ ପିଟୁଥିଲା। ମୃତ୍ୟୁଟା ଯେ ଅନିବାର୍ଯ୍ୟ ସେ ନିଶ୍ଚିତ ହୋଇଯାଇଥିଲା।

ଜନତା କିଂକର୍ତ୍ତବ୍ୟ ବିମୁଢ଼। ଆଖି ଆଗରେ ବୋହୂଟା ମୃତ୍ୟୁ ସହ ସଂଗ୍ରାମ କରୁଛି। ପ୍ରାଣଭିକ୍ଷା କରୁଛି। ତଟସ୍ଥ ଜନତା ନିରୁପାୟ। ରଥଯାତ୍ରାର ଲୋକ, କିନ୍ତୁ ଜଣେବି କେହି ସାହସ କରୁ ନାହାଁନ୍ତି, ସହାୟତାର ହାତ ବଢ଼େଇପାରୁ ନାହାଁନ୍ତି। ସମସ୍ତଙ୍କ ହୃଦୟ ଦ୍ରବୀଭୂତ କିନ୍ତୁ ସଭିଏଁ ନାଚାର।

ହଠାତ୍ ଜନତାର କୋଳାହଳ ଭିନ୍ନମୁଖୀ ହେଲା ଟିଣ୍ ଟିଣ୍ ଶବ୍ଦ କରି ପହଞ୍ଚିଗଲା ଅଗ୍ନିଶମ ଗାଡି। କେହି ସହୃଦୟ ବ୍ୟକ୍ତି ଫୋନ୍ ଦ୍ୱାରା ଅଘଟଣ ସଂପର୍କରେ ସୂଚନା ଦେଇଥିଲେ ବୋଧ ହୁଏ। ଆଡେଇ ଗଲେ ଜନତା ଯୁଦ୍ଧକାଳୀନ ଭିତ୍ତିରେ ଅଗ୍ନିଶମ କର୍ମଚାରୀ ଉଦ୍ଧାର କାର୍ଯ୍ୟରେ ଲାଗିପଡିଲେ। ଅଧଘଣ୍ଟା ବେଳକୁ ତା'ର ଆଉ ଚେତା ନଥିଲା। ଅତିଶୟ ଆଶଙ୍କା ଓ ଉଦ୍‌ବେଗରେ ସେ ଚେତା ହରେଇ ସାରିଥିଲା। ଅଗ୍ନିଶମ ପୋଲିସ୍‌ର ସହାୟତାରେ ଡାକ୍ତରଖାନା ନିଆଗଲା।

ଏବେ ଲୋଡା ପଡିଲା ବୋହୂଟାର ଏ ଦୁର୍ଦ୍ଦଶା ପାଇଁ ଦାୟୀ ଥିବା ମଣିଷଟାକୁ। ସଭିଙ୍କ ସନ୍ଦେହ ଘନୀଭୂତ ହେଲା ତା ସ୍ୱାମୀ ଉପରେ। ସେଇ ଏ ନାଟର ଗୋବର୍ଦ୍ଧନ। ମାଇପିଟାକୁ ଦିନେ ବି ଶାନ୍ତିରେ ରଖେଇ ଦେଲାନାହିଁ। ହରଦମ୍ ଘରେ ରାମତାଳି। କେବେ ଶାଶୁରେ ତ କେବେ ନଣନ୍ଦରେ। ସ୍ୱାମୀଟା କୋଉ ଭଲ ଯେ। ଏକା ଘଇତା ପରା ସାତ ସଉତୁଣୀ। ହରରୋଜ୍ ମଦଖାଇ ଆସି ଘରେ ବାଡିଆ ପିଟା। ଏବେ ପୁଣି କୋଉ ନର୍ସିଆଣୀ ପାଲରେ ପଡିଛି ଯେ ସ୍ତ୍ରୀଟାକୁ ଆଡ ଆଖିରେ ଦେଖୁନଥିଲା ସେଇ ତାକୁ ଠେଲି ଦେଇଛି କୂଅକୁ। ରାସ୍ତାର ଏ କଣ୍ଟାଟାକୁ ଆଡେଇ ଦେଲେ ନର୍ସିଆଣୀକୁ ଘରକୁ ଆଣିବାପାଇଁ ଆଉ ଅଡୁଆ ନାଇଁ। ସେଇଥିପାଇଁ ବାରଅବସ୍ଥା କରୁଥିଲା ବୋହୂଟାକୁ। ଖାଇବା, ପିଇବା, ପିନ୍ଧିବା ନାଇବା ସବୁଥିରେ। ବାପାଭାଇ ବି ଦେଲା ନାରୀ ହେଲା ପାରି କଲେ ଝିଅଟାକୁ। ବାହାଦେଇ ଦେଇ ତୁନି ପଡିଗଲେ।

ଶାଶୁ ରାହାବାଳି ବି, କମ୍ ନୁହେଁ। ସେଇ ମଉନମୁହୀ ଟେହୁଛି ପୁଅକୁ। ଏ ବୋହୂକୁ ମାରି ଋକିରିଆ ବୋହୂ ଘରକୁ ଆଣିବ। ତା'ରି ପଇସାରେ ଦରବୁଢ଼ୀ ଝିଅଟାକୁ ଉଠେଇ ଦବ। ନର୍ସିଆଣୀଟାକୁ କୁଆଡେ ଟିକେ ବୟସ ହୋଇଯାଇଛି। ଦେଖିବାକୁ ବି ସେମିତି ସୁନ୍ଦର ନୁହେଁ। ହଉ - ପଇସା ତ ରୋଜଗାର କରୁଛି, ରୂପ ଠେଇଁ ଆଉ ବୟସ ଠେଇଁ ଆଉ କ'ଣ ଅଛି? ପୁଅର ତ ଋକିରି ନାହିଁ। ବେରୋଜଗାରିଆ।

ଅବଶ୍ୟ ଏ ବୋହୂଟା ଟିକେ ମୁଖରା, ବଦ୍‌ରାଗୀ ମଣିଷଟା। ତାକୁ ଆଘାତ ଦେଲେ ଗୁରୁ ଗୁରୁଜନମାନେ ନାହିଁ। ଶାଶୁର ଝିଙ୍ଘାଂସ ସହିପାରେ ନାହିଁ। ନଣନ୍ଦର କଟୁକଥା ବରଦାସ୍ତ କରେ ନାହିଁ। ଅନ୍ୟାୟ ଦେଖିଲେ ମୁହେଁ ମୁହେଁ ଜବାବ୍ ଦିଏ। ତା' ବୋଲି ମାରିପକେଇବ ବୋହୂଟାକୁ? ଏ ସମସ୍ୟାର କ'ଣ ଅନ୍ୟ ସମାଧାନ ନାହିଁ। ସାରା ପରିବାର ଏକଜୁଟ୍ ହୋଇ ତାକୁ କୂଅରେ ପକେଇ ଦବ? ଏମାନେ ମଣିଷ ନା ରାକ୍ଷସ? ବୋହୂଟା କୂଅରେ ପଡିବା ଦୁର୍ଘଟଣା ନୁହେଁ ସୁଚିନ୍ତିତ ଯୋଜନା। ସ୍ୱାମୀ ଶ୍ୱଶୁର ଶାଶୁ ସମସ୍ତେ ଏକ ହୋଇଛନ୍ତି ବୋହୂଟାକୁ ହଟେଇ ଦେବାପାଇଁ ଏଇ କଥା ହିଁ ସମସ୍ତଙ୍କ ତୁଣ୍ଡରୁ ବାହାରୁଥିଲା।

ମଣିଷ ଋହିଁଲେ କ'ଣ ହେବ ଭାଗ୍ୟ ଭଲ, ବୋହୂଟା ବଞ୍ଚିଗଲା। ନ ହେଲେ ବଅଁଶଯାକ ଜେଲ୍‌ରେ ଚକି ପେଷିଥାଆନ୍ତେ। କେହି ପିଠିରେ ପଡି ନଥାନ୍ତେ।

ଯାହା କରିବେ ସାଇଁ

*ତାହା କାହାରି ମନରେ ନାହିଁ।*

ସ୍ୱାମୀ ଶ୍ୱଶୁର ଶାଶୁ ନଣନ୍ଦ ସଫେଇ ଦେଉଥିଲେ। ନିଜ ନିଜର ନିର୍ଦ୍ଦୋଷତା ସାବ୍ୟସ୍ତ କରୁଥିଲେ। ଘର ହୋଇ କାହାର କଳି ଗୋଳ ନାହିଁ? ପାଟି ତୁଣ୍ଡ ନାହିଁ? ସେଇ ଘର କଳିରୁ ହୁ ଦସ୍ତ ଆସି ଡେଇଁ ପଡିଲା କୂଅକୁ? ଟିକିଏ ହେଲେ କାଣ୍ଡଜ୍ଞାନ ନାହିଁ ବୋହୂଟାର।

ଜନତା ପରତେ ଯାଉନଥିଲା, ସନ୍ଦେହ ଦୃଷ୍ଟିରେ ଦେଖୁଥିଲା ପୋଲିସ୍। ଯଦି ମରିବାକୁ ଯାଉଥିଲା ତ ବୋହୂଟା ଜୀବନପାଇଁ ଡହଳ ବିକଳ ହେଉଥିଲା କାହିଁକି? ବୋହୂର ଚେତା ଫେରିବା ପର୍ଯ୍ୟନ୍ତ ଅପେକ୍ଷା କରିଥିଲେ ସଭିଏଁ।

ବୋହୂର ଚେତା ଫେରିଲା। ପୋଲିସ୍ ଜମାନ୍‌ବନ୍ଦୀ ନେଲା। ଯେତେ କୌଶଳରେ ପ୍ରଶ୍ନ ପଚାରିଲେ ସେଇ ଗୋଟାଏ ସତ୍ୟ ପଦାକୁ ଆସୁଥିଲା। ବୋହୂକୁ କେହି କୂଅକୁ ଠେଲି ନାହାଁନ୍ତି। ସ୍ୱାମୀ ସ୍ତ୍ରୀ ଝଗଡ଼ା ହେଲେ। ସେଇ ନର୍ସିଆଣୀ କଥା ଉଠେଇଲା ବୋହୂ, ଗୁଡେଇ ତୁଡେଇ ପ୍ରଶ୍ନକଲା। ରାଗରେ ସ୍ୱାମୀର ହାତଟା ବିଧା ଚାପୁଡା ବସଉ ବସଉ କହିଲା - ହଁ ମୁଁ ସେଇ ନର୍ସିଆଣୀକୁ ଆଣିବି ଘରକୁ। ତୋ'ର ଯାହା ଇଚ୍ଛା ତାହା କର। ମୁଁ ତତେ ଡରୁନି କି ତୋ ବୋପାଘରକୁ ଡରୁନି।

ସହିପାରିଲାନି ବୋହୂ। ଅଭିମାନରେ ଫାଟି ପଡିଲା। ଜୀବନକୁ ପାଣି ଛଡେଇ ଦେଲା। ମୁଁ ବଞ୍ଚି ଥାଉ ଥାଉ କାହିଁକି ମାଇକିନିଆଟା ଆଣିବ? ଏଇ ଦେଖ୍ ମୁଁ ତୋ ରାସ୍ତାରୁ ହଟିଯାଉଛି। ସେଇ ଅନ୍ଧାର ରାତିରେ କଣ୍ଟା ଝଟା ଖାଲ ଖମା, ସାପବେଙ୍ଗ କିଛି ମାନିଲା ନାହିଁ। ବାୟାଣୀ ପରି ଧାଇଁ ଧାଇଁ ଆସି ଡେଇଁ ପଡିଲା କୂଅକୁ।

ପୋଲିସ୍ ବିଶ୍ୱାସ କଲା ନାହିଁ। ସାରୁ ଭିତରେ ମାରୁ ଅଛି। ଯା ଭିତରେ ଆଉ କିଛି ରହସ୍ୟ ଅଛି। ହୁଏତ ଶାଶୁଘର ଲୋକଙ୍କୁ ଭୟକରି ସତକଥା ପ୍ରକାଶ କରୁନି ବୋହୂ।

ବୋହୂକୁ ଅଭୟଦେଇ ପୋଲିସ୍ କହିଲା, ତୁମେ ଜମା ଭୟ କରନାହିଁ। ତମ ସ୍ୱାମୀ ଶ୍ୱଶୁରଙ୍କଠୁଁ କାଗଜରେ ଲେଖେଇ ନେବୁ ଆମେ। ତମ ଦେହରେ ଟିପଟିକେ ଛୁଆଁଇ ଦେବେ ନି କି କଥା ପଦେ ବି କହିପାରିବେନାହିଁ। ବୋହୂର ସେଇ ଏକା କଥା। ନିଜ ଇଚ୍ଛାରେ ସିଏ ମରିବାକୁ ଯାଉଥିଲା। ତାକୁ କେହି

ଠେଲି ନାହାଁନ୍ତି। ଆଉ ଗୋଟାଏ ସ୍ତ୍ରୀ ଆଣିବାର ଧମକରେ ସହିପାରିଲା ନାହଁ, ତା ଆତ୍ମ ପୁରୁଷକୁ ବାଧିଲା। ଆଗପଛ ବିଚାର ନକରି ସେ ଡେଇଁ ପଡିଲା କୂଅକୁ। ତାକୁ କେହି ଠେଲି ନାହାଁନ୍ତି। ସେ ନିଜ ଇଚ୍ଛାରେ ମରିବାକୁ ଯାଉଥିଲା।

ତମେ ଯଦି ନିଜ ଇଚ୍ଛାରେ ମରିବାକୁ ଯାଉଥିଲ, ପୁଣି ବଞ୍ଚିବା ପାଇଁ ସାହାଯ୍ୟ ଲୋଡୁଥିଲ କାହିଁକି? ଗୋଟାଏ ଏନ୍.ଜି.ଓ ସଂସ୍ଥାର ପୁରୋଧା ପ୍ରଶ୍ନ କଲେ।

ବୋହୂଟା ମୁହଁ ଟେକି ଭଦ୍ରବ୍ୟକ୍ତିଙ୍କୁ ଚାହିଁଲା, କ'ଣ କହିବ କହିବ ହେଉଥିଲା। କିଛି କହିଲା ନାହିଁ। ମୁଣ୍ଡ ତଳକୁ କଲା।

ଭଦ୍ରବ୍ୟକ୍ତି ଜଣକ ଆହୁରି ଉତ୍ସାହିତ ହୋଇ କହିଲେ - ହଁ କୁହ। ତମର କିଛି ଅସୁବିଧା ହେବନି। ଆମେ ସବୁ ଅଛୁ ତମେ କାହିଁକି ରକ୍ଷାକର ରକ୍ଷାକର କହୁଥିଲ? ମରିବାକୁ ନିଷ୍ପତ୍ତି ନେଇଥିବା ମଣିଷ କ'ଣ ବଞ୍ଚିବା ପାଇଁ ଏମିତି ତହଲ ବିକଳ ହୁଏ? ଡରନାହିଁ, ତମ ପାଇଁ ମହିଳା କମିଶନ ଅଛି। ପୋଲିସ୍ ଅଛି, କୋର୍ଟ କଚେରୀ ଅଛି। କେହି ଯଦି ତମକୁ କୂଅକୁ ଠେଲି ଦେଇଥାଏ, ସେ କଥା କୁହ। କେହି ତମର ଟିକେ ବି କ୍ଷତି କରିପାରିବେନି।

ବୋହୂଟା ଏଥର ମୁହଁ ଖୋଲିଲା। ଆଠମାସର ଛୁଆଟା ମୋର। ସଂଜ ପହରୁ ଶୋଇପଡିଥିଲା। ଭୋକରେ ଆଉଟୁପାଉଟୁ ହେବଣି। ବାହାର ଖାଦ୍ୟ ଖାଇନି। ତା'ରି ପାଇଁ ମୁଁ ଯମ ଦୁଆରୁ ଫେରିଆସିଲି। ନହେଲେ ମୁଁ ଏ ନିଉଛୁଣା ଜୀବନ ନେଇ ଦଣ୍ଡେ ବଞ୍ଚିବାକୁ ଚାହୁଁନଥିଲି।

ବୋହୂଟାର ଉତ୍ତର ସ୍ତବ୍ଧ କରିଦେଲା ସମସ୍ତଙ୍କୁ!

# ସୁରକ୍ଷା କବଚର ଅନ୍ତରାଳେ

ଲୁସି ଆସିଛି ଘରକୁ । ବହୁଦିନ ପରେ । ହାଇସ୍କୁଲ ପାଠ ସାରି ସେ ଯେତେବେଳେ ନୂଆ ନୂଆ କଲେଜକୁ ଗଲା, ସବୁ ଛୁଟିମାନଙ୍କରେ ସେ ଘରକୁ ଆସୁଥିଲା । ଛୁଟି କେବେ ହେବ ଉଚ୍ଚାଟ ହୋଇ ଚାହିଁ ରହୁଥିଲା । କୌଣସି ଗୋଟିଏ ବି ଛୁଟି ସେ ଛାଡୁନଥିଲା । ଛୁଟି ହେବାର ଦୁଇଦିନ ପୂର୍ବରୁ ଘରକୁ ଆସୁଥିଲା ତ ଛୁଟି ସରିବାର ଦୁଇ ଦିନ ପରେ ସେ ହଷ୍ଟେଲକୁ ଯାଉଥିଲା । ସେଇଥିରେ ପୁଣି କନ୍ଦାକଟା । କେତେ ରୁଷା ରୁଷି, ଘର ମୋହ ସେ ଛାଡୁ ନଥିଲା ଆଦୌ । ସେଥିପାଇଁ ବାପା ବ୍ୟସ୍ତ ହେଉଥିଲେ । ପାଠପଢ଼ାରେ ମନଯୋଗୀ ହେବାପାଇଁ ପରାମର୍ଶ ଦେଉଥିଲେ । ସବୁଥର ଗଲାବେଳକୁ ବୋଉ ତା ପାଇଁ ଆମ୍ବ ଆଚାର, ବରକୋଳି ଆଚାର, ଛତୁଆ, ଆରିଷାପିଠା, ମୁଢ଼ିମୁଆଁ ଆଦି ଠାଁ ଠାଁ କରି ବାନ୍ଧି ଦେଉଥିଲା । ବାପା ତାକୁ ହଷ୍ଟେଲ ପର୍ଯ୍ୟନ୍ତ ଛାଡ଼ି ଯାଉଥିଲେ । ଆସିଲା ବେଳକୁ ସେ ଏକା ଆସୁଥିଲା । ଏବେ କିନ୍ତୁ ବି.ଟେକ୍ ଜଏନ୍ କରିବା ଦିନୁ ସେ ଘରକୁ ଆସିବା ନାଁ ଧରୁନି । ସବୁ ଛୁଟିରେ ତା'ର କିଛି ନା କିଛି କାମ ଥାଏ । କେବେ ଏକ୍ସଟ୍ରା କ୍ଲାସ ଥାଏ ତ କେବେ ପରୀକ୍ଷା ପାଇଁ ପ୍ରସ୍ତୁତି । କେବେ କଲେଜ ପିକ୍‌ନିକ୍ ନ ହେଲେ ଷ୍ଟଡିଟୁର ।

କେବେ କୋଉ ସାଙ୍ଗର ଭାଇ କିମ୍ବା ଭଉଣୀ ବାହାଘର ପାଇଁ ସେ ସାଙ୍ଗ ସହ ତା' ଘରକୁ ଗଲାଣି। ଆଉ କେବେ ପ୍ରାକ୍ଟିକାଲ କି ପ୍ରୋଜେକ୍ଟ ତିଆରିରେ ଛୁଟିଟା ସାରା ଗଲାଣି। ଆବଶ୍ୟକ ହେଲେ କେବେ ବାପା ବୋଉ ଯାଆନ୍ତି ତାକୁ ଦେଖାକରିବାକୁ। ଓଷାବାର, ପୁନେଇ ପର୍ବରେ ଭଲମନ୍ଦ ନେଇ ବାପା ତାକୁ ଦେଇଆସନ୍ତି। ଘରସହ ତା'ର ଆତ୍ମୀୟତା ଧୀରେ ଧୀରେ ସଂକୁଚିତ ହୋଇ ଯାଉଥିଲା। ବ୍ୟସ୍ତ ହେଉଥିଲେ ବାପା ବୋଉ। ଏଇଥର କିନ୍ତୁ ପରିସ୍ଥିତି ଭିନ୍ନ ଥିଲା। ବାପାଙ୍କର ଦେହ ଖରାପ ହେଲା। ମାଇଲ୍‌ଡ୍ ହାର୍ଟ ଆଟାକ୍। ଖବର ପାଇ ଲୁସି ଆସିଲା। ବାପାଙ୍କୁ ଦେଖି ଭାରି ବ୍ୟସ୍ତ ହେଲା। ଦିନରାତି ନିଛାବର କରି ସେ ବାପାଙ୍କର ସେବା କଲା। ଗୋଟାଏ ସପ୍ତାହ ପର୍ଯ୍ୟନ୍ତ ଛୁଟି ନେଇ ଆସିଛି ବୋଲି କହୁଥିଲା। ଦୁଇତିନିଦିନ ପରେ ବାପା ସୁସ୍ଥ ହୋଇ ଉଠିଲେ। ସେ ଫେରିବା ପାଇଁ ବ୍ୟସ୍ତ ହେଲା।

ବାପା ଭଲ ହୋଇଗଲେଣି, ମୁଁ ଫେରିଯିବି। ମୋର ବହୁତ କାମ ଅଛି, ବୋଉ ହାତରୁ ଚା କପ୍‌ଟା ନେଉ ନେଉ କହିଲା। ବୋଉ ଆଖି ଛଳ ଛଳ କରି କହିଲା। ମନେ ପକା ତ ତୁ କେତେ ମାସ ପରେ ଆସିଛୁ। ଦଶହରା ଛୁଟିରେ ଆସିଲୁନି। ଏକ୍ସମାସ ଛୁଟିରେ ଆସିଲୁନି। ଏତେ ଦିନ ପରେ ଆସିଲୁ ଯେ ଘରେ ଗୋଡ଼ ନ ଦେଉଣୁ ଖାଲି ଯିବୁ ଯିବୁ ହଉଚୁ। ବାପା ଭଲ ହେଲେ ଠିକ୍। ତୁ ଏବେ ଟିକେ ତାଙ୍କ ପାଖରେ ରହିବା କଥା। ଆମରତ ଆଉ ନଅଟା ଛଅଟା ନାହାଁନ୍ତି, ତୁ ଆମର ଆଖି। ଯେତେବେଳେ ଶାଶୁଘର ଯିବୁ ଯିବୁ, ଏବେ ଠୁଁ ଆମକୁ କାହିଁକି ପର କରି ଦେଉଛୁ। ବୋଉ ବେକରେ ଓହଳି ପଡି ଲୁସି କହିଲା-

ହଉ ବାବା ହଉ। ତୋ କଥା ମାନିଲି। ପାଠପଢ଼ାରେ ଡୋରି ବାନ୍ଧିଦେଇ ତୋ ପାଖରେ ଆସି ରହିବି। ଲୁସି ବୋଉର ଅନୁରୋଧ ରକ୍ଷା କଲା। ଅନ୍ତତଃ ଗୋଟାଏ ସପ୍ତାହ ସେ ଯିବା କଥା ଉଠେଇବନି ବୋଲି ପ୍ରତିଶ୍ରୁତି ଦେଲା।

ବୋଉ ଆଶ୍ଚର୍ଯ୍ୟ ହେଉଥିଲା। ଇୟେ କି ଅଭ୍ୟାସ ଝିଅଟାର? ସାରାରାତି ଅନିଦ୍ରା ରହେ ଲୁସି। ଯେତେବେଳେ ନିଦ ଭାଙ୍ଗେ ବୋଉର, ସେ ଲୁସି ରୁମ୍‌କୁ ଚାହେଁ। ତା ରୁମ୍‌ରେ ଆଲୁଅ ଜଳୁଥାଏ। ତା ପାଖକୁ ଆସି ଖଟ ଧାରରେ ବସେ। ତା ପିଠିରେ ହାତ ବୁଲେଇ କହେ ଶୋଉନୁ! ଇୟେ କି ଢ଼ଙ୍ଗ ! ଅଧାରାତି ହେଲାଣି। କେତେବେଳେ ଶୋଇବୁ? ତା ଲାପଟପ୍ ଅନ୍‌ଥାଏ। ସିଏ ହାମୁଡେଇ କ'ଣ ସବୁ ଟାଇପ୍ କରି ଚାଲିଥାଏ। ଦୁଇକାନରେ ଗେଞ୍ଜା ହୋଇଥିବା ଇୟର୍ ଫୋନ୍‌ରୁ

ଗୋଟାକୁ କାଢ଼ି ସେ ବୋଉ ମୁହଁକୁ ପ୍ରଶ୍ନିଳ ଦୃଷ୍ଟିରେ ଚାହେଁ। ବୋଉ ପୁଣି କହେ, କେତେବେଳେ ଶୋଇବୁ ?

ଆଉ ଟିକେ ବୋଉ, ମୁଁ ସାରିଦେଇ ଶୋଇପଡ଼ିବି। ତୁ ଯା, ଶୋଇପଡ଼୍।

ବୋଉ ଫେରିଆସେ ତା ଶୋଇବା ଘରକୁ। ଝିଅଟା ରାତିସାରା ବସିବ କମ୍ପୁଟର ପାଖରେ। ସକାଳୁ ଉଠିବା ବେଳକୁ ନଅଟା। ଯେତେ ଡାକିଲେ ବି ଉଠିବନି। ହାତକୁ ଚା ବଢ଼େଇ ଦେଲେ ସେ ଅଳସ ଭାଙ୍ଗି ଉଠିବ। ସେତେବେଳକୁ ବୁଢ଼ୀମାଆଟାର ରଡ଼ି କରି କରି ତଣ୍ଟି ପଡ଼ି ସାରିବଣି। ଶେଷକୁ ସବୁ ରାଗ ସୁଝିବ ବୋଉ ଉପରେ। ଝିଅଟାକୁ ସଣ୍ଢ଼ଣା ଶିଖାଇଲାନି। ସଂସ୍କାର ଶିଖାଇଲାନି, ଅଣ୍ଡିରାଙ୍କ ପରି ବଢ଼ିଲା, କୋଉ ଶାଶୁଘରେ ଯାଇ କ'ଣ କରିବ? ବୋପା ଅଜାଙ୍କ ନାଁ ପକେଇବ।

ବୋଉ ବ୍ୟସ୍ତ ହୁଏ। ଲୁସି ଆଉ ପାପୁଲି ଭିତରେ ନାହିଁ। ସେ ଧୀରେ ଧୀରେ ଖସିଯାଉଛି ଦୂରକୁ। ତା'ର ଡେଣା ଲାଗିଲାଣି। ତାକୁ ଆଉ ସଂକୁଚିତ କରି ରଖିହେବ ନାହିଁ। ଗତଥର ଆସିଥିଲା, ତା ଭ୍ୟାନିଟି ବ୍ୟାଗରେ ଦୁଇଟା ଭାଉଚର୍ ଦେଖିଥିଲା ବୋଉ। କାଲ୍‌କାଟାର ଗୋଟାଏ ସୋ ରୁମ୍‌ରୁ କିଣା ହୋଇଥିବା ଡ୍ରେସ୍ ହଲେର ଭାଉଚର ଓ ଆଉ ଗୋଟିଏ ଥିଲା ନେସନାଲ୍ ମ୍ୟୁଜିଅମ୍‌କୁ ଯିବାପାଇଁ ଦୁଇଟା ଟିକେଟ୍। ତା ଜାଣତରେ ଲୁସି କେବେ କଲିକତା ଯାଇନାହିଁ। ଲୁସି ବି କେବେ ବୋଉକୁ ସେ କଥା କହିନାହିଁ। ସନ୍ଦେହର ବୀଜଟିଏ ଅଙ୍କୁରିତ ହେଲା ତା ମନରେ। ଝିଅଟା ଆଉ ଭୁଲବାଟକୁ ଯାଉନାହିଁ ତ! ଦୁଇହାତ ଉପରକୁ ଟେକି ସେ ମନେ ମନେ କହିଲା – ମୋ ଝିଅକୁ ସଦ୍‌ବୁଦ୍ଧି ଦିଅ ଭଗବାନ। ମନେ ମନେ ସନ୍ଦେହଟାକୁ ଚାପି ରଖିଲା ବୋଉ। ଶାଶୁଙ୍କୁ କହିଲେ ଘର ହୁଲ୍‌ସ୍ଥୁଲ୍ କରିଦେବେ। ସ୍ୱାମୀଙ୍କୁ କହିବାପାଇଁ ସାହସ ଜୁଟେଇ ପାରିଲା ନାହିଁ। ଦୁଇ ତିନିଦିନ ନିଜ ଭିତରେ ମନ୍ଥିଚକଟି ହେବା ପରେ ମନକୁ ବୁଝେଇଇଲା ବୋଉ। ଭାଉଚରରେ ଲୁସି ନା ଲେଖା ହୋଇଥିବା ସତ୍ତ୍ୱେ ମନେ ମନେ କହିଲା – ହଁ ଆଉ କୋଉ ଝିଅସାଙ୍ଗର ଭାଉଚର ଓ ଟିକେଟ୍ ଦୁଇଟା ରହିଯାଇଥିବ ତା ବ୍ୟାଗ୍‌ରେ। ଝିଅଟାକୁ କ'ଣ ଏମିତି ସନ୍ଦେହ କରାଯାଏ? ସେ ମାଆ ନା ସାବତ ମାଆ? ତଥାପି ଥରେ ପଚରାଯାଇପାରେ ଲୁସିକୁ। ତୁ ଯାଇଥିଲୁ କି କଲିକତା? ମତେ କହିନୁ ତ! ପଇସାପତ୍ର ଥିଲା ତୋ ପାଖରେ? ଝିଅଟା ଯେତେବେଳେ ବାହାରେ ରହୁଛି, ଗୋଡେ ଗୋଡେ ତ ଜଗି ପାରିବନି। ବାଟରେ ପିଲା ଜନ୍ମ କରି ଡାହାଣୀ କି ଭୟ

କଲେ ହେବନାହିଁ। ତଥାପି ପିଲାମାନଙ୍କୁ ତ ଆକଟ କରିବାକୁ ହେବ। ସେମାନେ କୁଆଡ଼େ ଯାଉଛନ୍ତି, କ'ଣ କରୁଛନ୍ତି, କାହା ସାଙ୍ଗରେ ମିଶୁଛନ୍ତି ଏସବୁ ଖବର ରଖିବା ତ ବାପ ମାଆଙ୍କ କାମ।

ବୋଉ ହେଜି ହେଲା ହରି ମଳିକ ଝିଅ ସେବତୀ କଥା। ଗାଁ ସ୍କୁଲରେ ମେଟ୍ରିକ୍‌ରେ ସେକେଣ୍ଡ କ୍ଲାସ୍ ପାଇଥିଲା। କୋଟାରେ ସରକାରୀ କଲେଜରେ ସିଟ୍ ପାଇଯିବ ବୋଲି ସମସ୍ତେ ପରାମର୍ଶ ଦେଲେ। ସତକୁ ସତ ଭୁବନେଶ୍ୱରରେ ସରକାରୀ କଲେଜରେ ଜଏନ୍ ହେଲା ସେବତୀ। ସାଇନ୍ସ ପଢ଼ିଲା। ଗାଁରେ ଥିବାବେଳେ ଛିଣ୍ଡାଫ୍ରକ୍, ଛିଣ୍ଡା ଚପଲ ପିନ୍ଧି ନୁଖୁରା ମୁଣ୍ଡରେ ସ୍କୁଲ ଯାଉଥିବା ଝିଅଟା ଯେତେବେଳେ ବର୍ଷେ ପରେ ଗାଁକୁ ଫେରିଲା, ଆଖି ଖୋସି ହୋଇଗଲା ଗାଁ ଲୋକଙ୍କର। ଜିନ୍ସ ଟପ୍ ସାଙ୍ଗକୁ ହାଇ ହିଲ୍ ଜୋତା, ଭଳିକି ଭଳି ଦାମୀ ପ୍ରସାଧନ ସାମଗ୍ରୀ। ଦୁଇଶହ ଟଙ୍କିଆ ଲିପ୍‌ଷ୍ଟିକ୍ କି ଶହେ ଟଙ୍କିଆ ନେଲ୍ ପଲିସ୍। ଏତେ କାଙ୍ଗୁଆ ମଣିଷ ହରି ମଳିକ! ଗାଁ ଲୋକେ ଚୁପ୍ ଚାପ୍ ହେଲେ। କେହି କହିଲା ସିଏ ଗୋଟାଏ ଧନୀ ଘରର ପୁଅକୁ ଫସେଇ ଦେଇଛି ତ ଆଉ କିଏ କହିଲା ସେ ପାର୍ଟଟାଇମ୍ ଚାକିରି କରୁଛି। ଟିଉସନ୍ କରୁଛି। ଆହୁରି କେତେ ଖରାପ କଥା ମଧ୍ୟ ଶୁଣିବାକୁ ମିଳିଲା। ହରି ମଳିକ କାନରେ କଥାଟା ପଡ଼ିଲା। ସେ ଗର୍ଜନ କରି କହିଲା, ଆମ ଝିଅ ସଉକ ହେଲା ତ ତମମାନଙ୍କର କାହିଁକି ଆଖିରେ ଯାଉନି। ସିଏ ଯେତେବେଳେ ଛିଣ୍ଡା ଲେଙ୍ଗଡା ପିନ୍ଧୁଥିଲା, ଖାଇବାକୁ ପାଉ ନଥିଲା, ସେତେବେଳେ କିଏ ଦଉଥିଲା? ଆଜି ମୋ ଝିଅ ପାଠ ପଢ଼ିଲା। ସରକାର ପଇସା ଦେଲା। ଭଲ ଖାଇଲା, ଭଲ ପିନ୍ଧିଲା, ସଉକ ହେଲା, ତମ ଦେହ ଜଳି ଯାଉଛି କିଆଁ? ବୋପାର ଏ ପଦ୍ମତୋଳା ଝିଅକୁ ଆହୁରି ସାହସ ଓ ଶକ୍ତି ଯୋଗାଇ ଦେଇଥିଲା। ଧୀରେ ଧୀରେ ତାକୁ ମିଳୁଥିବା ଷ୍ଟାଇପେଣ୍ଡ ପଇସା ଏତେ ବଢ଼ିଯାଉଥିଲା ଯେ ହରି ମଳିକର ଚାଳ ଛପରଟା ଆଜବେଷ୍ଟ ହୋଇଗଲା। ହରି ମଳିକର ହୁଲିଆ ବଦଳିଗଲା। ଗାଁର ଆଉ ଦଶଜଣକ ସହ ତା ନାଁ ଯୋଡି ହୋଇଗଲା। ସେତେବେଳକୁ ଝିଅ ବି.ଏ. ଫାଇନାଲ୍ ଇୟର୍ ଚଢ଼ିଲାଣି।

ହରି ମଳିକର ବଡ ପଣ ବେଶୀଦିନ ତିଷ୍ଠିଲା ନାହିଁ। ହଠାତ୍ ଦିନେ ଥାନାରୁ ଫୋନ୍ କଲ୍ ପାଇ ସେ ଭୟଭୀତ ହୋଇ ଗଲା। ସେଠାକୁ ଯାଇ ସେ ଯାହା ଦେଖିଲା, ଭାଙ୍ଗିତୁଟି ମେଞ୍ଚାଟିଏ ହେବା ପାଇଁ ତାକୁ ମୁହୂର୍ତ୍ତେ ଲାଗିଲା ନାହିଁ। ଆଉ ତିନି ଜଣ ଯୁବତୀଙ୍କ ସହ ରାଜଧାନୀର ଦାମୀ ହୋଟେଲ୍‌ରେ ଅନୈତିକ

କାର୍ଯ୍ୟକଳାପରେ ଲିପ୍ତଥିବାବେଳେ ସେବତୀ ଧରା ପଡିଛି। ଧନୀ, ମାନୀ, ରାଜନୈତିକ ନେତା ଓ ସରକାରୀ ଅଫିସରମାନେ ଥିଲେ ଗ୍ରାହକ। ବିଚରା ହରି ମଲିକ ଝିଅକୁ ମୁକୁଳେଇ ଆଣିଲା ସିନା ନିଜେ ଆଉ ଫେରିଲାନି। ଝିଅକୁ ଗାଁକୁ ପଠେଇ ଦେଇ ନିଜେ ଟ୍ରେନ୍‌ତଳେ ଶୋଇଗଲା।

ବୋଉ ନିଜକୁ ପ୍ରସ୍ତୁତ କରିନେଉଥିଲା ଝିଅର ଜନ୍ମଦାତ୍ରୀ ଭାବରେ ତାର ଯଥେଷ୍ଟ ଅଧିକାର ଅଛି ଝିଅ ସଂପର୍କରେ ସବୁକିଛି ଜାଣିବା ପାଇଁ। ସେ ପଚାରିବ ଝିଅକୁ। ସେ ଯାହା ବି ଭାବୁ। ହଁ ସେ ସାବାଳିକା। ତା ବୋଲି କ'ଣ ବାପାମାଆଙ୍କ ପାଖରେ ଉତ୍ତରଦାୟୀ ନୁହେଁ? ନିଜକୁ ନିୟନ୍ତ୍ରଣରେ ରଖିପାରିଲା ନାହିଁ ବୋଉ। ଲୁସିର କୋଠରୀ ସାମ୍ନାରେ ଯାଇ ଠିଆ ହେଲା। ତୁ କଲିକତା ଯାଇଥିଲୁ କି? କଣ୍ଠ ପାଖରେ ଅଟକି ଗଲା କଥା। ଜିଭ ଶୁଖିଗଲା, ପାଟି ଅଠା ଅଠା ହୋଇଗଲା। ଓଠ ପର୍ଯ୍ୟନ୍ତ ଆସି ପାରିଲା ନାହିଁ।

ଲୁସି ପଚାରିଲା କ'ଣ କହିବୁକି ବୋଉ! ବୋଉ ଚମକି ପଡିଲା, ଲୁସି ଜାଣି ଦେଲା କି ତା ମନ କଥା? କ'ଣ ଭାବିବ ଝିଅଟା? ମା ହୋଇ ଝିଅଟାକୁ ସନ୍ଦେହ କରୁଛି? ଓଲଟା ରାଗିଯିବ ଯଦି ତ କଥା ସରିଲା। ଖାଇବନି, ଖୁମାଣ କରିବ। ନା-ଥାଉ, ଆଉ କେତେବେଳେ। ଏବେ ଲୁସିର ମୁଡ୍ ଭଲ ଅଛି। ସହଜେତ ହଷ୍ଟେଲରୁ ଆସିବା ପରେ ସେ ଯେମିତି ଅନ୍ୟ ଦୁନିଆର ମଣିଷଟିଏ ହୋଇଯାଇଛି। କଥା କଥାକେ ଇରିଟେଟ୍ ହୋଇଯାଉଛି। ବେଶି କଥା ହେଉନି। ତା ଦୁନିଆରେ ସେ ବୁଡି ରହୁଛି।

ବୋଉ କହିଲା, ନାଇଁ ମ! ଏମିତି ଆସିଥିଲି। ଲୁସି ଭଲପାଏ କଖାରୁ ଫୁଲ ପିଠୋଉ ଭଜା। ବାଁ ହାତରେ ମୋବାଇଲ୍‌ର ସ୍କ୍ରିନ୍‌କୁ ଏପଟ ସେପଟ କରୁକରୁ ଡାହାଣ ହାତରେ ପିଠୋଇ ଭଜାରୁ ଖଣ୍ଡେ ଖଣ୍ଡେ ଖାଉଥିଲା ଲୁସି। ତା ପ୍ଲେଟକୁ ପିଠଉ ଭଜା ଦି'ଖଣ୍ଡ ପକେଇ ଦେଇ ବୋଉ ଛେପ ଢୋ଼କି କହିଲା- ତମ କଲେଜରୁ ଷ୍ଟଡିଟୁର ଯାଇଥିଲ କି?

ସେମିତି ଅନ୍ୟ ମନସ୍କ ହୋଇ ଲୁସି କହିଲା – କାହିଁ, ନାଇଁ ତ! ତତେ କିଏ କହିଲା? ମୁଁ ଯାଇଥିଲେ ତତେ କହି ନଥା'ନ୍ତି।

ମାଆ ଛେପ ଢୋ଼କି କହିଲା – ତୋ ବ୍ୟାଗ୍‌ରେ କଲିକତାର ସୋ ରୁମ୍ ଭାଉଚର ଦେଖିଲି ତ। ଗମ୍ଭୀର ହୋଇଗଲା ଲୁସି। କହିଲା – ମୋର ଜଣେ ସାଙ୍ଗ ଯାଇଥିଲା ତ ତା' ହାତରେ ଡ୍ରେସ୍ ମଗେଇଥିଲି / ଭିକ୍ଟୋରିଆଲ୍ ମେମୋରିଆଲ୍

ହଲ୍‌ର ଦୁଇଟା ଟିକେଟ୍ କଥା ଆଉ ଉଠେଇବା ଆବଶ୍ୟକତା ଅନୁଭବ କଲା ନାହିଁ। ହୃଦୟର କୋଉ ନିଭୃତ କୋଣରେ ଲୁସି ପ୍ରତି ଅବିଶ୍ୱାସ ଭାବଟିଏ ଦାନା ବାନ୍ଧିଲା। ଇଏ ଥିଲା ଲୁସିର ଗତଥର ଆସିବା ବେଳର କଥା।

ଏଥର ତ ଆହୁରି ମାରାତ୍ମକ ଜିନିଷ ଆବିଷ୍କାର କରିଛି ବୋଉ ତା ଏୟାର ବ୍ୟାଗ୍‌ରୁ।

ଝିଅମାନେ ବାହାରେ ପାଠ ପଢୁଛନ୍ତି, ଚାକିରି କରୁଛନ୍ତି। ଅସାମାଜିକମାନେ ତ ସଦା ସର୍ବଦା ସେମାନଙ୍କ ପାଇଁ ସନ୍ତ୍ରାସ ହୋଇ ରହିଛନ୍ତି। ତା'ଛଡ଼ା ଝିଅମାନଙ୍କ ବିଶୃଙ୍ଖଳିତ ଜୀବନଶୈଳୀ ସେମାନଙ୍କ ପାଇଁ ଆହୁରି ବିପଦକୁ ବରଣ କରିଆଣୁଛି। ଝିଅଟାକୁ ବାହାରେ ଛାଡି ପ୍ରତି ମୁହୂର୍ତ୍ତରେ ଶଙ୍କାଗ୍ରସ୍ତ ହୋଇ ରହେ ବୋଉ। ବାପାଙ୍କର ତ ଏସବୁ ପ୍ରତି ହୋଲ୍ ଡୋଲ୍ ନାହିଁ। ଝିଅଟା ଉପରେ ତାଙ୍କର ଅଖଣ୍ଡ ବିଶ୍ୱାସ। ଝିଅର ବିଚିତ୍ର ବ୍ୟବହାର ପ୍ରତି ବିନ୍ଦୁଏ ବି ବ୍ୟସ୍ତ ହୁଅନ୍ତି ନାହିଁ ବାପା। ସବୁ ବୋଉକୁ ବୁଝିବାକୁ ହୁଏ। ଝିଅ ଖଣ୍ଡକ ବି ଏମିତି ଚାଲାକ୍ ଯେ ବୋପା ଆଗରେ ଯେମିତି ସତ୍ୟ ଯୁଗର ଝିଅ। ୨୪ କ୍ୟାରେଟ୍ ସୁନା। ଟିକିଏ ବି ଖାଦ ନାହିଁ। ଗୋଟା ପଣେ ତୁଳସୀ। ବୋପାର ଝିଅ ନାଁରେ ପଦଟିଏ ବି ଶୁଣିବାକୁ ଧୈର୍ଯ୍ୟ ନାହିଁ। ମୁହଁ ଦେଇ ଦେଇ ଝିଅଟାକୁ ପୁରାପୁରି ଉପର ମୁହାଁ କରିଦେଲେଣି। ଆମେ ସବୁ କ'ଣ ପାଠ ପଢୁ ନଥିଲୁ ନା ଆମ ବାପାମାଆ ଆମକୁ ଭଲ ପାଉ ନଥିଲେ। ମାଆ, ଖୁଡେଇ, ପିଉସୀ, ଜେଜୀମା ପାଖରୁ ବାପ ଦାଦି ଭାଇ ମାମୁଁ ପିଇସା ପର୍ଯ୍ୟନ୍ତ ସମସ୍ତେ ଥିଲେ ଆମର ମୁରବୀ। ଆମର ସୁରକ୍ଷା ବଳୟ। ଆମ ଜଗୁଆଳୀ। ମାଆ ଖୁଡେଇମାନେ ତ ଗୋଡେ ଗୋଡେ ଜଗିଥା'ନ୍ତି। ତାଙ୍କରି ଆକଟରେ ଆମେ ବାପ ଭାଇଙ୍କୁ ବାଘପରି ଡରୁଥିଲୁ। କାଳେ ଆମର ବେଫାଇଦା ପଣ କୋଉଠି କେତେବେଳେ ବାପଭାଇଙ୍କ ଦୃଷ୍ଟିରେ ପଡିଯିବ। ସେଥିପାଇଁ ଥିଲା ପ୍ରାଣରେ ଡର। ସେମାନେ ଖାଲି ଥରେ ଉଚ୍ଚସ୍ୱରରେ ଡାକଟିଏ ଦେଲେ ଆମ ପିଣ୍ଡରୁ ପ୍ରାଣ ବାହାରି ଯାଉଥିଲା। ତାଙ୍କ ସାମ୍ନାରେ ଆମେ ଠିଆ ହେଉ ନଥିଲୁ। ଏବେ ଆଉ ସେ ଯୁଗ ନାହିଁ, ସତ କଥା, ହେଲେ ଝିଅଟାକୁ ଟିକେ ଭଲରେ ମନ୍ଦରେ ଆକଟ କରିବ ନାହିଁ ?

ସବୁ ଦେଖିବାକୁ ପଡେ ବୋଉକୁ। ସେଇ ଯେ ତା ମନରେ ସନ୍ଦେହର ଭୂତ ପ୍ରବେଶ କରିଛି ତାକୁ ବାହାର କରିବା କାଠିକର ପାଠ ହୋଇଗଲା। ସେ ବାପା ପାଖରେ ଅନୁରୋଧ କରିଥିଲା ତା ବାହାଘର କରିଦେବା ପାଇଁ। ବାପା

କଥାର ଗୁରୁତ୍ୱ ନନେଇ କହିଥିଲେ, ଝିଅଟାର ଏମିତି କେତେ ଯେ ବୟସ ହୋଇଗଲା, ତମେ ତା ପାଇଁ ଏତେ ବ୍ୟସ୍ତ ହଉଚ ? ମୋ ଝିଅ ଦୁନିଆର ସବୁଠାରୁ ଭଲ ଝିଅ। ତା'ପାଇଁ ସବୁଠାରୁ ଭଲ ପୁଅଟେ ଆପେ ଆପେ ଆସିବ। ତମେ ଜମା ଚିନ୍ତା କରନି।

ଜମା ଚିନ୍ତା କରୁ ନଥାନ୍ତା ବୋଉ। ଲୁସିର ମଇଳା ଜାମାପଟା ବାହାର କଲାବେଳକୁ ତା ଏୟାର ବ୍ୟାଗ୍‌ରୁ ଯଦି ଏମିତି ଆପତ୍ତିଜନକ ଜିନିଷଟିଏ ତା ହାତରେ ପଡିନଥା'ନ୍ତା। ତା ଛାତି ଫାଟି ଯାଉଥିଲା। ଝିଅଟା ତ ଆଉ ଛୋଟ ହୋଇନାହିଁ ଯେ କୋଳରେ ପୁରେଇ ରଖାଯିବ। ସେ ବିଟେକ୍ କଲାଣି। ତା ପାଦତଳର ମାଟିକୁ ସେ ଦୃଢ଼ କରିସାରିଲାଣି। କାଲି ସକାଳେ ଚାକିରି କଲେ ସେ ଆହୁରି ଶକ୍ତ ହୋଇଯିବ। ସେ ଯାହା କରୁଛି କରୁ। ସେ ସବୁ ବୋଉ ଆଖିରେ ନ ପଡିଥିଲେ ବୋଧେ ଭଲ ହୋଇଥା'ନ୍ତା। ଅନ୍ତର୍ଦାହରେ ଅତିଷ୍ଠ ହୋଇ ଯାଉଥିଲା ମାତୃ ହୃଦୟ। କାହାକୁ କହିବ ଏ କଥା। ଇଯେ ତ ଅଣ୍ଟି ନିଆଁ। ଘୋଡେଇ ରଖିଲେ ବଂଶ ମର୍ଯ୍ୟାଦା ଖାନ୍‌ଦାନ୍‌କୁ ପୋଡ଼ିଜାଳି ଛାର ଖାର କରିଦେବ। ନିଜକୁ ଆଦୌ ସାନ୍ତ୍ୱନା ଦେଇପାରୁନଥିଲା ବୋଉ।

ଲୁସିର ମନ ବିଡିବାପାଇଁ ବୋଉ ପଚାରିଥିଲା ଲୁସିକୁ। ଆଜିକାଲି ଯୁଗରେ ଝିଅପାଇଁ ଭଲ ପ୍ରସ୍ତାବଟି ଯୋଗାଡ କରିବା କେତେ କଷ୍ଟ। ତୋ ଆଖି ସାମ୍ନାରେ ଏମିତି କୋଉ ଭଲ ପୁଅ ଅଛନ୍ତି ଯଦି କହୁନୁ। ଆମେ ତା ବାପା ମାଆ ପାଖକୁ ପ୍ରସ୍ତାବ ନେଇ ଯାଆନ୍ତେ।

ହସି ହସି ଗଡି ଯାଇଥିଲା ଲୁସି। ତୁ କାହିଁକି ଭାବୁଛୁ ଯେ ତୋ ଝିଅ ଯେଉଁଠି ପାଠ ପଢୁଛି ଖାଲି ଝିଅମାନେ ଅଛନ୍ତି ? ବହୁତ ପୁଅ ଅଛନ୍ତି। ଭଲ ବି ଅଛନ୍ତି ଖରାପ ବି ଅଛନ୍ତି। ତୁ କାହାପାଇଁ ପ୍ରସ୍ତାବ ନେଇଯିବୁ ?

ବୋଉ ବିରକ୍ତ ହୋଇ କହିଥିଲା – ଏମିତି କ'ଣ କହୁଛୁ ? ମୁଁ ଆଉ କାହା ପାଇଁ କାହିଁକି ପ୍ରସ୍ତାବ ଖୋଜିବି ? ମୋ ଝିଅର କ'ଣ ବାହାହେବା ବୟସ ହୋଇନି ? ଲୁସି ଗମ୍ଭୀର ହୋଇ କହିଲା, ମୋ ବାହାଘର ପାଇଁ ତୁ ଜମା ବ୍ୟସ୍ତ ହେବା ଦରକାର ନାହିଁ।

'ଆଉ କିଏ ବ୍ୟସ୍ତ ହେବ' ? ଅସହାୟ କଣ୍ଠରେ କହିଲା ବୋଉ। 'ଯାହା ଯେତେବେଳେ ହେବା କଥା ହେବ।' ନିରୁତ୍ତପ୍ତ କଣ୍ଠରେ କହିଲା ଲୁସି।

ଆହୁରି ବିଚଳିତ ହୋଇଉଠିଲା ବୋଉ। ମନେପଡିଲା ଦିବ୍ୟଜ୍ୟୋତି କଥା।

ପିଲାଟା ପଢୁଥିଲା ଲୁସି ସାଙ୍ଗରେ। ଲୁସିର ସବୁଠୁ ଭଲ ସାଙ୍ଗ ଥିଲା ସିଏ। ବେଳ ଅବେଳରେ ଘରକୁ ଆସେ। ଲୁସି ସହ କଥାବାର୍ତ୍ତା ହୁଏ। ବୋଉ ତାକୁ ହାତରେ ରାନ୍ଧି ଖୁଆଇଛି। ଗରିବ ଘର ପିଲାଟା। ବାପା ମାଆ ରହନ୍ତି ଗାଁରେ। ଦାଦା ଖୁଡୀଙ୍କ ପାଖରେ ରହି ପାଠପଢୁଥିଲା, ଖୁଡୀ ଦେଖିପାରେ ନାହିଁ। ଭଲ ପଢୁଥିଲା। ଶାନ୍ତ ସୁଧାର ପିଲାଟା। ଲୁସି ବିଟେକ୍ ପଢ଼ିବାକୁ ଯିବା ପରଠୁଁ ବୋଉ ଆଉ ତା' ଖବର ରଖିନି। ଲୁସି ରଖିଛି କି ତା ସହ ସମ୍ପର୍କ? ସିଏ ତ ଭଲ ପଢୁଥିଲା। ନିଶ୍ଚୟ ଭଲ ଚାକିରିଟିଏ କରିଥିବ। ଲୁସିର ସେମିତି କିଛି ସଂପର୍କ ଅଛି କି ତା ସହ? ଯାହା ଆଶଙ୍କା କରୁଥିଲା ଜେଜୀମା। ଆକଟ କରି ଲୁସିକୁ କହୁଥିଲା, ତୁ ଝିଅ ପିଲାଟା। ସେ ଟୋକାଟା ସାଙ୍ଗରେ ତୋର କି ସାଙ୍ଗ, ଏତେ ହେଁ, ହେଁ, ଫେଁ, ଫେଁ କାହିଁକି ତା ସାଙ୍ଗରେ?

ଲୁସି ହସି ହସି ଗଡ଼ି ଯାଉଥିଲା। କହୁଥିଲା – "ଜାତି ପଳେଇବ କି ତା ସଙ୍ଗେ ମିଶିଲେ"?

ଜେଜୀମା ମୁହଁ ମୋଡି କହୁଥିଲା ଉଦଣ୍ଡୀଟା।

ଭାବନାଟାକୁ ବେଶି ସମୟ ଚପି ପାରିଲାନି ବୋଉ। ଉତ୍ସୁକତାର ସହ ପଚାରି ଦେଲା, ଦିବ୍ୟଜ୍ୟୋତି କୋଉଠି ଅଛି ଲୁସି? ପିଲାଟାକୁ ମୁଁ ବହୁତ ଦିନ ହେଲା ଦେଖିନି। ଚାକିରି କଲାଣି ନା ନାହିଁ? ତାକୁ ଟିକେ ଖବର ଦଉନୁ ଆସନ୍ତା!

ଲ୍ୟାପ୍‌ଟପ୍‌ର ମାଉସ୍‌ଟା ଚଳଉ ଚଳଉ ଲୁସି ଜବାବ ଦେଉଥିଲା, ମୁଁ ଆଉ ତା ଖବର ରଖିନି ବୋଉ। ସିଏ ପ୍ଲସ୍‌ଟୁ ସାରି ବିଏ ପଢୁଥିଲା। ମୋର କଣ୍ଟାକ୍ଟ ନାହିଁ ତା ସାଙ୍ଗରେ।

ଛୁଆଟିଏ ହୋଇଥାଏ ଲୁସି। ତା ବାପା ରହୁଥିଲେ ସମ୍ବଲପୁରରେ। ଗାଁ ସ୍କୁଲରେ ପାଠ ପଢୁଥିଲା। ସାଙ୍ଗ ହେଉଥିଲା କୁନା ବୋଲି ଛୋଟ ପିଲାଟି ସହ। ଦୁହେଁ ସାଙ୍ଗ ହୋଇ ସ୍କୁଲ ଯାଉଥିଲେ। ଟିଉସନ ଯାଉଥିଲେ। ବାଲିଘର ତୋଳୁଥିଲେ। ପ୍ରଜାପତି ଧରୁଥିଲେ। ବାପା ବୋଉ ହୋଇ ଜଣେ ହଳକୁ ଯାଉଥିଲା। ବଜାରରୁ ସଉଦା ଆଣିବାକୁ ଯାଉଥିଲା। ଆଉ ଜଣେ ରୋଷେଇ କରୁଥିଲା। ଜଣେ ଦୋକାନ କରୁଥିଲା ଗୋଡି ବାଲି ଅନାବନା ଗଛର ଫଳ ପତ୍ର ଇତ୍ୟାଦିକୁ ସଜେଇ। ଆଉ ଜଣେ କାଗଜ ଡ଼ଙ୍ଗା, ଖପରା ଗୋଡି ନେଇ ତା ପାଖରୁ ମିଛିମିଛିକା ଜିନିଷ କିଣୁଥିଲା। ଖାଇବା ଓ ଶୋଇବା ସମୟ ବ୍ୟତୀତ ସେମାନେ ଗୋଟାଏ ମୁହୂର୍ତ୍ତ ବି ଛାଡବାଡ ହେଉନଥିଲେ।

ଦୁହିଁଙ୍କୁ ବରକନିଆ କରି ସମସ୍ତେ ଥଟ୍ଟା ପରିହାସ କରୁଥିଲେ। ସେ ଥଟ୍ଟା ପରିହାସର ଅର୍ଥ କିଛି ବୁଝୁନଥିଲା ଲୁସି। ସିଏ ବି ହସି ଦେଉଥିଲା। ମୁଁ କୁନାର କନିଆ କୁନା ମୋ ବର ବୋଲି କହୁଥିଲା ତ ପୁଣି କେତେବେଳେ ରାଗି ଅଜ୍ଞାନ ହୋଇଯାଉଥିଲା। ବୋଉ ଏସବୁ ଦେଖୁଥିଲା, ଶୁଣୁଥିଲା, କିନ୍ତୁ ଏମିତି ଆତଙ୍କିତ କେବେ ହେଉନଥିଲା। ସେଦିନ ଆଜି ନାହିଁ। ବାପା ବୋଉଙ୍କର ଛତ୍ରଛାୟା ବି ତା'ର ଆବଶ୍ୟକ ନାହିଁ। ଏବେ ସେ ନିରଙ୍କୁଶ। ସ୍ୱାଧୀନତାର ଯେ ଭୟ ଅଛି, କ୍ଷତାକ୍ତ ହେବାର ଆଶଙ୍କା ଅଛି, ସେ କଥା ଚିନ୍ତା କରୁ ନଥିଲା। ବୋଉ ବିଚଳିତ ହୋଇପଡେ। ତା ମନକୁ ପାପ ଛୁଇଁଲା। ଲୁସି କାହା ସହ ଲିଭ୍ଇନ୍‌ରେ ରହୁଛି କି ? ଦିବ୍ୟଜ୍ୟୋତି ହୋଇଥିଲେ ଚଳିଥାନ୍ତା। ଗରିବ ହେଲେ କ'ଣ ହେଲା, ଭଲ ପିଲାଟା। କିନ୍ତୁ ଲୁସିର ଆଉ ତା ସହ ସମ୍ପର୍କ ନାହିଁ। ଅନିଶ୍ଚିତ ଆଶଙ୍କାରେ ବୋଉ ବିବ୍ରତ ହୋଇପଡିଲା। ବୋଉର ଅନ୍ତର୍ଦାହକୁ ଦ୍ୱିଗୁଣିତ କରି ଲୁସି ବାଙ୍ଗାଲୋର୍ ଚାଲିଗଲା। ବୋଉ ମନ ବୁଝିଲା ନାହିଁ। କାହିଁକି ଲୁସି ରଖିଛି ଏପ୍ରକାର ନିଷିଦ୍ଧ ଜିନଷ। ମନେ ପଡିଲା ବୋଉର। ତା'ର ଜଣେ ପିଲାଦିନର ସାଙ୍ଗ ସୁପ୍ରୀତି ଓ୍ୱମେନ୍‌ସ କଲେଜ ହଷ୍ଟେଲରେ ସୁପରିନ୍‌ଟେଣ୍ଡେଣ୍ଟ ଅଛି। ହଷ୍ଟେଲରେ ଗୋଟିଏ ଝିଅର କିଛି ଟଙ୍କା ଚୋରି ହୋଇଥିଲା। ସବୁ ଝିଅଙ୍କ ବ୍ୟାଗ୍ ସର୍ଚ୍ଚ କରିବାକୁ ପଡିଥିଲା। ଅଧିକାଂଶ ଝିଅଙ୍କ ବ୍ୟାଗ୍‌ରେ ଥିଲା ଗର୍ଭନିରୋଧକ ବଟିକା। ଆଜିକାଲିକା ଝିଅମାନଙ୍କର ଏଇ ବିଶୃଙ୍ଖଳିତ ଆଚରଣ ପାଇଁ ବିସ୍ଫୋରଣ କରୁଥିବା ସୁପ୍ରୀତିକୁ ଶାନ୍ତ କରିବାକୁ ବୋଉ କହିଥିଲା - ସେଥିରେ କ'ଣ ଅଛି ? ବୁଦ୍ଧିମତୀ ଝିଅମାନେ ହିଁ ଏମିତି ପ୍ରିକସନ୍ ନେଇଥା'ନ୍ତି। ଏରୁଣ୍ଡି ଡେଇଁଲେ ଝିଅମାନଙ୍କର ପ୍ରତି ପଦକ୍ଷେପରେ ବିପଦ। ଟିଭି ଖବର କାଗଜମାନଙ୍କରେ ଦେଖୁଚୁ ନା ନାହିଁ, କେତେ ଦୁଷ୍କର୍ମ ବଳାତ୍କାର, ବ୍ଲାକ୍‌ମେଲିଙ୍ଗ୍। ରାସ୍ତା କଡରେ ନାଳ ନର୍ଦ୍ଦମାରେ, ବଣବୁଦା ମୂଳେ ନବଜାତ ଶିଶୁ। ଝିଅମାନେ ବାପା ମାଆଙ୍କଠାରୁ ଦୂରରେ ରହୁଛନ୍ତି, ଯଦି କିଛି ଅଘଟଣର ଶିକାର ସେମାନେ ହେଲେ ତେବେ ପାଖରେ ଥିବା ଟାବ୍‌ଲେଟ୍ ସେମାନେ ଖାଇଦେବେ। ସେମାନଙ୍କ ଜାଣିବାପାଇଁ ଖବର କାଗଜ ବିଜ୍ଞାପନରେ ଏ ସଂକ୍ରାନ୍ତରେ ସୂଚନାର ଅଭାବ ନାହିଁ। ଚରିତ୍ରହୀନ ଝିଅମାନେ କେବଳ ଏସବୁ ରଖନ୍ତି ବୋଲି ତୁ କାହିଁକି ଭାବୁଛୁ ? ଆଗକୁ ଘଟିବାକୁ ଥିବା ଭୟଙ୍କର ବିପଦକୁ ଏଡେଇ ଯିବା ପାଇଁ ଇଯେ ଗୋଟାଏ ଭଲ ଉପାୟ। ମୁଁ ତ ଧନ୍ୟବାଦ

ଦେବି ସେଇ ନିର୍ଭୟା ଝିଅମାନଙ୍କୁ। ଅବିବାହିତା ଝିଅଟିର ମାତୃତ୍ୱ କେତେ ଲଜ୍ୟାର କଥା କହ ତ! କୁମାରୀ ମାଆଙ୍କର ତ ଆତ୍ମହତ୍ୟା ଛଡ଼ା ଆଉ କିଛି ଉପାୟ ନାହିଁ ଆମ ସମାଜରେ।

ସୁପ୍ରୀତି ସେଦିନ ବୁଝିଯାଇଥିଲା। ଝିଅମାନଙ୍କ ବ୍ୟାଗ୍‌ରୁ ଗର୍ଭନିରୋଧକ ବଟିକା ବାହାରିବା ବଡ ଅପରାଧ ନୁହେଁ ବୋଲି ଭଲ ଭାବରେ ସୁପ୍ରୀତିକୁ ବୁଝେଇ ଦେଇଥିଲା ବୋଉ। କିନ୍ତୁ ଲୁସି ବ୍ୟାଗ୍‌ରୁ ସେଇ ଜିନିଷର ସନ୍ଧାନ ମିଳିବାକୁ ବୋଉ ସହଜ ଭାବରେ ଗ୍ରହଣ କରୁନଥିଲା।

ଲୁସି କ'ଣ ଆସାମାଜିକମାନଙ୍କ ଅତର୍କିତ ଆକ୍ରମଣର ଅପ୍ରୀତିକର ପରିଣତି ଏଡେଇବା ପାଇଁ ନିଜକୁ ପ୍ରସ୍ତୁତ କରି ରଖିଛି ! ବୋଉର ଅସହାୟତା ବଢ଼ି ବଢ଼ି ଚାଲୁଥିଲା। ମିଥ୍ୟା ଆତ୍ମ ସାନ୍ତ୍ୱନାର ଲେପ ତା ହୃଦୟର ଗଭୀର କ୍ଷତକୁ ଉପଶମ କରିପାରୁନଥିଲା। ବେଳକୁ ବେଳ ତା'ର ଯନ୍ତ୍ରଣା ଅସହ୍ୟ ହୋଇପଡୁଥିଲା। ସତେ ଯେମିତି ଦୁନିଆ ଯାକର ହଳାହଳ ବିଷ ସେ ଗଳସ୍ଥ କରିଛି ଗୋପନରେ। ଅତି ଗୋପନରେ। ଯାହାର କୌଣସି ଉପଚାର ନାହିଁ। ଏକା ଏକା ଏଗୁଡିକୁ ହଜମ କରିବାକୁ ନିଷ୍ଫଳ ପ୍ରୟାସ ତଥାପି ସେ ଜାରି ରଖିଥିଲା।

# କାକ୍‌ଟସ୍ କଣ୍ଟାରେ କୁରେଇ ଫୁଲ

୧

"ତୋ ସାଇକେଲ୍ ଯେ! ତୁ ଏମିତି ଦବୁଡୁବୁ କିସ୍ ପାଇଁ? ଏକା ମୁହାଁ ହୋଇ ଧାଉଁଥିବା ଧନମତୀ ଆଗରେ ଲକ୍ଷ୍ମଣ ତାଣ୍ଡି ତା' ଲୁନା ଗାଡ଼ିଟା ଅଟକେଇ ଦେଇ କହିଲା। ଛଟ୍ କରି ଚମକି ପଡ଼ି ଧନମତି ନିଜ ଛାତିରେ ଦୁଇ ଲଣ୍ଡା ଛେପ ପକେଇ ଦେଇ କହିଲା - "ମୋ ମାଆ କାଇଲା ପଡ଼ିଛି। ବାବା ମୋ ସାଇକେଲ୍‌ରେ ତାକୁ ବସେଇ ହସ୍‌ପିଟାଲ୍ ନେଇଛି। ସ୍କୁଲ ବେଳ ହେଇଯାଉଛି ତ ମୁଁ ସେଥିପାଇଁ ବେଗି ବେଗି ଯାଉଛି।"

ଲକ୍ଷ୍ମଣ ତାଣ୍ଡି ତା' ମୁହଁକୁ ଚାହିଁ ଟିକେ ହସିଦେଲା। ଲକ୍ଷ୍ମଣ ତାଣ୍ଡିର ମୁହଁକୁ ହସଟା ଆଦୌ ମାନେ ନାହିଁ। ହସିଦେଲେ ତା ବଙ୍କା ତେଢ଼ା ଦାନ୍ତ ସହ ମାଢ଼ି ଗୁଡ଼ାକ ବି ବାହାରକୁ ବାହାରିପଡ଼େ। ନାକପୁଡ଼ା ଦୁଇଟା ଫୁଲିଯାଏ। ଗାଲ ଦୁଇଟା ଉଠିଯାଏ ଉପରକୁ। ଆଖି ଅଛି କି ନାହିଁ ଜଣାପଡ଼େ ନାହିଁ। ଭାରି ଅବର୍ଯ୍ୟା ଲାଗେ ଦେଖିବାକୁ। ସେ ହସିଲା ବେଳେ ଧନମତୀ ଆଦୌ ଚାହେଁନାହିଁ ତା' ମୁହଁକୁ। ଲକ୍ଷ୍ମଣ ତାଣ୍ଡି ଦାନ୍ତ ଚିପିଚିପି

କହିଲା - ମୁଁ ତ ତୋ ସ୍କୁଲ ଆଡ଼େ ଯିବି। ତୁ ବସ ମୋ ଗାଡ଼ିରେ ତତେ ଛାଡ଼ିଦେବି ତୋ ସ୍କୁଲରେ।

ଅନ୍ୟଦିନ ହୋଇଥିଲେ ସେ ଆଦୌ ବସି ନଥାନ୍ତା ତା' ଗାଡ଼ିରେ। ଲୋକଟାକୁ ସହ୍ୟ କରିପାରେ ନାହିଁ ଧନମତୀ। ତା' କଳା ମଚମଚ ମୁହଁରେ ବିଲେଇ ଆଖି ପରି ଦୁଇଟା ଆଖିକୁ ମିଞ୍ଜିମିଞ୍ଜି କରି ସେ ଯେତେବେଳେ ଚାହେଁ, ତା' ଚାହାଁଣୀ ଚମଡା ଭେଦି ମାଉଁସ ହାଡ଼ ଫଟେଇ ଅସ୍ଥିମଜ୍ଜାକୁ ଗିଳିଗଲା ପରି ଲାଗେ।

ଅତ୍ୟନ୍ତ ଅଶ୍ୱସ୍ତି ଅନୁଭବ କରେ ଧନମତୀ। ତାକୁ ଏଡ଼େଇ ଏଡ଼େଇ ଚାଲେ। ଧନମତୀ ଲକ୍ଷ୍ମଣ ତାଣ୍ଡିକୁ କି ଉତ୍ତର ଦେବ ଚିନ୍ତା କରୁ କରୁ ସ୍କୁଲର ପ୍ରାର୍ଥନା ଘଣ୍ଟାଟା ଟିଙ୍ଗ୍ ଟିଙ୍ଗ୍ ହୋଇ କାନରେ ବାଜିଲା। ତା' ଛାତି ଭିତରୁ କ'ଣ ଗୋଟାଏ ଖସି ପଡ଼ିଲା ଭଳି ଲାଗିଲା। ତା' ଗୋଡ଼ ହାତ ଥରିଲା। ଆଉ ପାଞ୍ଚ ମିନିଟ୍ ପରେ ଗେଟ୍ ତାଲା ପଡ଼ିଯିବ। ଏତେଗୁଡ଼ାଏ ବାଟ ଆହୁରି ଅଛି। ସେ ବିଚଳିତ ହୋଇ ପଡ଼ିଲା। ତା' ମୁହଁର ଭାବଭଙ୍ଗୀ ସ୍ପଷ୍ଟ ପଢ଼ି ଦେଲା ଲକ୍ଷ୍ମଣ ତାଣ୍ଡି। କୃତ୍ରିମ କ୍ରୋଧ ପ୍ରଦର୍ଶନ କରି ମୁରବୀସୁଲଭ କଣ୍ଠରେ କହିଲା - ଡେରି ତ ହେଲାଣି। ମୁଁ ଚୋର ନା ଖଣ୍ଟ। ମୋ ସାଙ୍ଗରେ ଆସିବାକୁ ଡରୁଛୁ ? ବସ୍। ମୁଁ ତୋତେ ତୋ ସ୍କୁଲରେ ଛାଡିଦେବି। ଆଗପଛ କିଛି ନ ବିଚାରି ସେ ବସି ପଡିଲା ଲକ୍ଷ୍ମଣ ତାଣ୍ଡି ଗାଡ଼ିରେ। ସାଏଁ କିନା ଗାଡ଼ିଟା ଉଡ଼େଇ ଦେଲା ଲକ୍ଷ୍ମଣ। ଧନମତୀକୁ ପବନରେ ଉଡ଼ିଯିବା ପରି ଲାଗିଲା। ଚଟ୍‌କରି ତା' ଡ଼ାହାଣ ହାତଟା ଲକ୍ଷ୍ମର ତାଣ୍ଡି ପେଟ ଚାରିପଟେ ବେଢ଼େଇ ଦେଲା।

ଲକ୍ଷ୍ମଣ ତାଣ୍ଡି କହିଲା - ପଡ଼ିଯିବୁ କି ନିନି। ଭଲ୍ କରି ବସ୍।

ମୁହୂର୍ତ୍ତଟିଏ ଲାଗିଲାନି ଗାଡ଼ିଟା ପହଞ୍ଚିଗଲା ସ୍କୁଲ ପାଖରେ। ଖପ୍ କରି ଗାଡ଼ିରୁ ଡେଇଁପଡି ଧନମତୀ ପିଲାଙ୍କ ଭିତରେ ହଜିଗଲା। ଥରଟିଏ ବି ଫେରି ଚାହିଁଲା ନାହିଁ।

ସ୍କୁଲ ଛୁଟି ହେଲା। ସାଙ୍ଗ ଝିଅମାନେ ଯେ ଯାହାର ସାଇକେଲ୍‌ରେ ଚାଲିଗଲେ। ଏକା ରହିଗଲା ଧନମତୀ। ସ୍କୁଲଠୁଁ ଦୁଇ କିଲୋମିଟର ଦୂର ଘର। ଆଗରୁ ଚାଲି ଚାଲି ଆସୁଥିଲା। ରାସ୍ତାଟା ବେଶି ଜଣାପଡୁ ନଥିଲା। ଏବେ ସାଇକେଲ ମିଳିବା ପରଠୁଁ କେବେ କେମିତି ଚାଲି ଚାଲି ଯିବାକୁ ପଡିଲେ ରାସ୍ତାଟା ଯେମିତି ଆହୁରି ଲମ୍ବିଯାଏ। ପୁଷୁମାସିଆ ଦିନ। ସୁରୁଜ ଦେବତା ନଡୁବୁଣୁ ସନ୍ଧ୍ୟା

ଆସିଯିବା ପରି ଲାଗେ । ସନ୍ଧ୍ୟାକୁ ବାଟ ଛାଡ଼ିଦେଇ ସୁରୁଜ ଦେବତା ଶୀଘ୍ର ଯିବାପାଇଁ ବାହାରି ପଡ଼େ । ଘରେ ପହଞ୍ଚିଲା ବେଳକୁ ନିଶ୍ଚୟ ଅନ୍ଧାର ହୋଇଯିବ । ଛାଇଗୁଡ଼ାକ ଲମ୍ବି ଲମ୍ବି ଆସିଲାଣି । ଧୂଳି ଉଡ଼େଇ ଉଡ଼େଇ ଆଗରୁ ଆସୁଥିବା ଗାଈ ପଲଟା ତାକୁ ଅତିକ୍ରମ କରି ଚାଲିଗଲା ପଛକୁ । ଜଙ୍ଗଲିଆ ରାସ୍ତାଟା ଧୀରେ ଧୀରେ ମାନବ ଶୂନ୍ୟ ହୋଇପଡୁଛି, ଶୀତୁଆ ପବନଟା ଦେହ ଥରେଇ ଦେଉଛି । ସେ ତା' ପାଦର ଗତି ବଢ଼େଇଲା । ସେଇଠି ସେଇ ଜାଗାରେ ଗାଡ଼ି ଧରି ଠିଆ ହେଇଚି ଲକ୍ଷ୍ମଣ ତାଣ୍ଡି । ତାକୁ ଦେଖି ଧନମତୀ ମନେ ମନେ ଭାବିଲା । ଲୋକଟାର କିଛି କାମଦାମ ନାଇଁ ନା କ'ଣ ? ତା' ଗୋଡ଼ ଦୁଇଟା ମୁହୂର୍ତ୍ତେ ଅଟକି ଗଲଣ । ନା ଯେତେ ଡେରି ହେଉ ପଛେ ସେ ଚାଲି ଚାଲି ଯିବ । ସେ ଲକ୍ଷ୍ମଣ ତାଣ୍ଡି ଗାଡ଼ିରେ ବସିବ ନାହିଁ ଜମା । ସେ ଲକ୍ଷ୍ମଣକୁ ନ ଦେଖିଲା ପରି ଏଡ଼େଇ ଦେଇ ଆଗକୁ ମାଡି ଯାଉଥିଲା । ଲକ୍ଷ୍ମଣ ଡାକିଲା- ଏୟ ଧନମତୀ ।

ଫେରି ଚାହିଁଲା ଧନମତୀ । ଲକ୍ଷ୍ମଣ ତାକୁ ଇଙ୍ଗିତରେ ଗାଡ଼ି ପଛରେ ବସିବାକୁ କହିଲା ।

ଧନମତୀ କହିଲା - ନାଇଁ ନାଇଁ ମୋର ମାଆ ରାଗ୍ ହେସି । ମୁଇଁ ନାଇଁ ଯାଏ ତମର ସାଙ୍ଗେ ।

ଲକ୍ଷ୍ମଣ ତାକୁ ଥଟ୍ଟା କଲାପରି କହିଲା - ମୁଇଁ ବାଘ୍ କି ଭାଲୁ ଆଏ । ତୋର ମାଆ ରାଗ୍ ହେସି ଯେ । ଆଜି କାଲିର ଟୋକୀ ମନ୍‌କେ ଭଲ୍ କଥା ବୋଇଲେ ମନ୍ଦ ହସି । ସଞ୍ଜ ବୁଡିଲାଣି । ବାଟ୍‌ରେ ସତ୍‌ସତିକା ଭାଲୁ ଛେକ୍‌ସି ଯେ ୟୁ' ୟୁ' ।

ଭାଲୁ କଥା ଶୁଣି ଧନମତୀ ଟିକେ ଶଙ୍କି ଗଲା । ଭାଲୁ କୁଆଡ଼େ ଦେହରୁ ସବୁ ମାଉଁସ ଚାଟିଚୁଟି ଖାଇଦେବ । ହାଡ଼ ଛାଁ ହାଡ଼ ପଡିଥିବ । ଧନମତୀ ନିଜ ଦେହକୁ ଦେଖିଲା । କଅଁଳ ମାଉଁସ ଖୁନ୍ଦି ହେଇଛି ତା' ଦେହରେ । ଭାଲୁ ଯଦି ଏ ସବୁ ଚାଟିଚୁଟି ଖାଇଦିଏ ଖାଲି ହାଡ଼ତକ ଥିବ ତା' ଦେହରେ ।

ପୁଣି ଥରେ ଲକ୍ଷ୍ମଣ ତାକୁ କହିଲା - ବସ୍, ବସ୍ । ମୁଁ ତତେ ତୋ ଗାଁରେ ଛାଡ଼ିଦେବି । ତୋ ମାଆ ଜାଣିବ ନାଇଁ ।

ଧନମତୀ ଆଗପଛ ନ ବିଚାରି ବସିପଡ଼ିଲା ତା' ଗାଡ଼ିରେ । ଗାଁ ମୁଣ୍ଡ ହଉ ନ ହଉଣୁ ଧନମତୀ ପାଟି କରି ଉଠିଲା- ଇଥାନେ ରଖିଦିଆସ୍ । ଇଥାନେ ରଖିଦିଆସ୍ ।

ଗାଡ଼ି ଅଟକାଇଲା ଲକ୍ଷ୍ମଣ। ଧନମତୀ ଖପ୍ କରି ଗାଡ଼ିରୁ ଡ଼େଇଁ ପଡି ଗାଁ ଭିତରକୁ ପଶିଗଲା।

ନୁଆଁଣିଆ ଚାଳ ଭିତରକୁ ନଇଁ ପଡି ଯିବା ପୂର୍ବରୁ ଢ଼ିଙ୍କିଶାଳ ଆଡ଼କୁ ଟିକେ ଚାହିଁ ଦେଲା। ତା' ସାଇକେଲ୍ ସେଠି ନଥିଲା। ବାପା ଫେରି ନଥିଲା ବୋଧହୁଏ।

ସେଦିନ ବିଳମ୍ବିତ ରାତିରେ ଟୁଳୁଟୁଳୁ ପାଦରେ ଧନମତୀର ବାପା ଚଇତୁ ଫେରିଲା। ପିଲାଗୁଡ଼ାକ ଶୋଇ ପଡିଥିଲେ। ଧନମତୀର ମାଆ ବୁଧବାରୀ ପଚାରିଲା ସାଇକେଲ୍ କାଏ ହେଲା ? କିଛି ଜବାବ୍ ଆସିଲା ନାହିଁ।

ସେଇ ଘାଇଲା କଣ୍ଠରେ ପୁଣି ଥରେ ବୁଧବାରୀ କହିଲା - ନାଇଁ ଶୁଣିଲୁସ୍ କି ? କାଏ ହେଲା ଧନମତୀର ସାଇକଲ୍ ?

ସେ କିଛି ଅଘଟଣ ଆଶଙ୍କା କରୁଥିଲା, କିନ୍ତୁ ଚଇତୁ ଠୁଁ ସେଇ ଘଟଣା ହେଉ କି ଅଘଟଣ କିଛି ଶୁଣିବାର ଉପାୟ ନଥିଲା। ସେ ବି ଚୁପ୍‌ଚାପ୍ ଘର ଭିତରକୁ ପଶିଗଲା ଓ ପିଲାଙ୍କ ପାଖରେ ଶୋଇ ପଡ଼ିଲା। ପରେ ପରେ ଅଛପା ରହିଲାନି ଯେ ତା' ସାଇକେଲ୍‌ଟା ମଦଭାଟି ମାଲିକ ଚଇତୁ ଠୁଁ ଛଡ଼େଇ ରଖିଛି। ତା' ବାକି ପାଉଣା ପାଇଁ।

ତା' ପରଦିନ ସ୍କୁଲ ବେଳ ହେଲା। ଧନମତୀ ଖୋଜିଲା ସାଇକେଲ୍। ସାଇକେଲ୍ ନାହିଁ। କେମିତି ସ୍କୁଲ ଯିବ ବୋଲି ମାଆକୁ ପ୍ରଶ୍ନ କଲା। ମାଆ ତାକୁ ଆଶ୍ୱାସନା ଦେଲା, ତୁ ଆଜି ଚାଲି ଚାଲି ଯାଆ। ମୁଁ ତୋ ସାଇକେଲ୍ ମୁକୁଳେଇ ଆଣିବି।

ମାଆ ମୁକୁଳେଇ ପାରିଲା ନାହିଁ ସାଇକେଲ୍। ଧନମତୀକୁ ଚାଲି ଚାଲି ଯିବାକୁ ହେଲା ସ୍କୁଲକୁ। ରାଜାପୁଅ ପକ୍ଷୀରାଜ ଘୋଡ଼ା ଧରି ରାଜା ଝିଅର ବାଟ ଓଗାଳିଲା ପରି ଲକ୍ଷ୍ମଣ ତାଣ୍ଡି ଧନମତୀର ବାଟ ଓଗାଳୁଥିଲା। ତାକୁ ନେଇ ସ୍କୁଲରେ ଛାଡୁଥିଲା। ରାଜାପୁଅ ରାଜାଝିଅକୁ ଘୋଡ଼ାରେ ବସାଇବା ପରି ସେ ଧନମତୀକୁ ତା' ଲୁନାରେ ବସେଇ ସ୍କୁଲରେ ଛାଡୁଥିଲା ସିନା, ରାଜାପୁଅ ପରି ତା' ଆଖିରେ ଲକ୍ଷେ ଚମ୍ପା ଫୁଲ ଫୁଟୁ ନଥିଲା କି ରାଜା ପୁଅର ଖିଆଲି ହୃଦୟ କି ମନଟିର ସେ ଅଧିକାର ନଥିଲା। ତା' ଆଖିରେ କାମନାର ନିଆଁ କୁଅଭିସନ୍ଧିର ଜାଳେଣୀରେ ହୁତୁହତୁ ହେଉଥିଲା।

ସେ ଦିନେ ପ୍ରସ୍ତାବ ଦେଲା ଧନମତିକୁ। ଭୁବନେଶ୍ୱରରେ ଗୋଟାଏ ବଡ଼

ସ୍କୁଲ ଅଛି। ପନ୍ଦର ହଜାର ଆଦିବାସୀ ପିଲା ସେଠାରେ ପଢୁଛନ୍ତି। ଧନମତୀ ଯଦି ଚାହିଁବ ସେ ସେଠି ପଢ଼ିପାରିବ। ଭଲ ସ୍କୁଲରେ ପଢ଼ିବ। ଭଲ ଖାଇବ, ଭଲ ପିନ୍ଧିବ। କେତେ ନୂଆ ନୂଆ ସାଙ୍ଗଙ୍କ ସହ ମିଶିବ। ନୂଆ ନୂଆ ଜିନିଷ ଦେଖିବ। ପାଠ ପଢ଼ିସାରି ସେଇ ଭୁବନେଶ୍ୱରରେ ଚାକିରି କରି ରହିବ ବାବୁମାନଙ୍କ ପରି। ଗାଡ଼ି ମଟରରେ ବୁଲିବ। ଯେତେବେଳେ ଚାହିଁବ ଗାଁକୁ ମଟର ଗାଡି ଚଢ଼ି ଆସିବ। ତା'ର ଆଉ ସାଇକେଲ୍‌ର ଆବଶ୍ୟକତା ରହିବ ନାହିଁ।

ଧନମତୀ ହତାଶ କଣ୍ଠରେ କହିଲା - ଆମେ ଗରିବ ଲୋକ। ସାଇକେଲ୍‌ଟା ଥିଲା ଯେ ବାବା ବନ୍ଧା ପକେଇ ଦେଲା। ମୁଁ ଭୁବନେଶ୍ୱର ଯିବି। ଏତେ ପଇସା କୋଉଠୁ ଆସିବ?

ଲକ୍ଷ୍ମଣ ତାଣ୍ଡି କହିଲା - ତୁ ଭକୁଆଣୀଟା। ସରକାର ପଇସା ଦେବେ ଲୋ। ଖାଇବାକୁ, ରହିବାକୁ, ପିନ୍ଧିବାକୁ, ଖର୍ଚ୍ଚ କରିବାକୁ ପଇସା ଦେବେ। ତୁ ଖାଲି ଥରେ ହଁ କରି ଦେ, ମୁଇଁ ତୋର ବାବା ସାଙ୍ଗେ କଥା ହେବି।

ନୀରବ ରହିଲା ଧନମତୀ। ମନେ ମନେ ଗୁଣି ହେଲା। ଲକ୍ଷ୍ମଣ କ'ଣ ସତ କହୁଛି। ଲକ୍ଷ୍ମଣଟା ଖରାପ ଲୋକ ବୋଲି ସମସ୍ତେ କୁହନ୍ତି। ହେଲେ ସିଏ କେବେ ତା' ପ୍ରତି ଖରାପ ବ୍ୟବହାର କରିନି। ଓଲଟି ତାକୁ କେତେ ଘାସିରି କରି କଥା ହେଲେ ବି ଜମା ରାଗୁନି। ସବୁବେଳେ ସାହାଯ୍ୟ କରୁଛି। ତା' ପାଇଁ ସମୟ ଦଉଚି।

ଧନମତୀ ମୁହଁ ଟେକି ଚାହିଁଲା ଲକ୍ଷ୍ମଣ ମୁହଁକୁ। ହସିଦେଲା ଲକ୍ଷ୍ମଣ-ମତେ ବିଶ୍ୱାସ ନାଇଁ କରୁ? ମୁଇଁ ମିଛ କଥା କହୁଛି? ହଉ ତୋର ଇଚ୍ଛା।

ଲକ୍ଷ୍ମଣ ମୁହଁଟା ତାକୁ ଯେମିତି ଆଗରୁ କଦାକାର ଲାଗୁଥିଲା ଆଉ ସେମିତି ଲାଗିଲା ନାହିଁ। ତା' ଆଖି ଆଗରେ କେତେ ସ୍ୱପ୍ନ ନାଚିଗଲା। ଧନମତୀ ମାଝୀ ଆଉ ଗରିବ ମଦୁଆ ଚଇତୁ ମାଝୀର ଝିଅ ନୁହେଁ। ଖାଇବା ପାଇଁ ଭାତ ପେଜ ନାହିଁ। ପିନ୍ଧିବା ପାଇଁ ଜାମା ନାହିଁ। ସରକାର ସ୍କୁଲ ଡ୍ରେସ୍ ଖଣ୍ଡେ ଦଉଛି ବୋଲି ଚଳିଯାଉଛି। ବହି ଖାତା, ପେନ୍ ପେନ୍‌ସିଲ୍ ନାହିଁ, ସେଥିରେ ପୁଣି ବାପାଟା ଅଧାଦିନ ମଦ ପିଇ ଉତ୍ପାତ କରୁଛି। ତା' ଆଖି ଆଗରେ ଗୋଟାଏ ରଙ୍ଗୀନ୍ ଚିତ୍ର ଖେଳିଗଲା। ସେ ଚାକଚକ୍ୟର ସହର ଭୁବେନଶ୍ୱରରେ ପାଠ ପଢୁଛି। କାହିଁ କେତେ ଦୂରରୁ ସବୁ ପିଲା ଆସି ପାଠ ପଢୁଛନ୍ତି। ଭୁବନେଶ୍ୱର ଆମ ରାଇଜର ରାଜଧାନୀ। ସେଠି ସବୁ ବଡ଼ ବଡ଼ ଲୋକ ପଢ଼ନ୍ତି। ଯେଉଁମାନେ ସେଠିକି ଯାଆନ୍ତି ସେମାନେ

ସବୁ ବଡ଼ ଲୋକ ହୋଇଯାଆନ୍ତି। ତା' ଆଖିରେ ବି ଗୁଡ଼ାଏ ସ୍ୱପ୍ନ ଝୁନ୍ଦି ହୋଇଗଲା। ତା' ସାଙ୍ଗ କନକର ମାମୁଁ ଝିଅ ସୁମିତ୍ରା ସେଇଠି ପଢୁଛି। ସେ କେବେ ଛୁଟିରେ ବୁଲି ଆସିଲେ କନକ ଘରକୁ ଆସେ। ତା'ର ପିନ୍ଧା ଲୁଗା ଠାରୁ କେଶ ସଜ୍ଜା ପର୍ଯ୍ୟନ୍ତ, ନଖ ଠାରୁ ନାସିକା ପର୍ଯ୍ୟନ୍ତ ସବୁଠି ଗୋଟାଏ ନିଆରା ପଣ ବାରି ହୋଇପଡେ। ତା' କଥା କହିବାର ଭଙ୍ଗୀ ବି ଅଭିଭୂତ କରିଦିଏ ଧନମତୀକୁ। ସେ ଆଉ ଦେଶୀୟା ଭାଷାରେ କଥା ହୁଏନାହିଁ। ନନ୍ଦନକାନନ, କୋଣାର୍କ ମନ୍ଦିର, ଲିଙ୍ଗରାଜ ମନ୍ଦିର, ଧଉଳି ପାହାଡ, ପୁରୀ ମନ୍ଦିରର କଥା କୁହେ। ଆଶ୍ଚର୍ଯ୍ୟ ହୋଇଯାଏ ଧନମତୀ। ଯାହା ଯାହା ସବୁ ବହିରେ ପଢୁଛି, ସେ ସବୁ ସୁମିତ୍ରା ନିଜ ଆଖିରେ ଦେଖିଛି। ହାତରେ ଛୁଇଁଛି। ତା' ପାଦରେ ସେଠି ଚାଲିଛି। ତା' ଆଖି ବଡ଼ ବଡ଼ ହୋଇଯାଏ। ଈର୍ଷା ହୁଏ ଧନମତୀର। ବଡ ଭାଗ୍ୟବତୀ ସୁମିତ୍ରାଟା। ସେ ଜାଣିଶୁଣି ସୁମିତ୍ରାକୁ ଟିକେ ଛୁଇଁଦିଏ। ତା' ଦେହରେ ଟିକେ ଘଷି ହୋଇଯାଏ। ତା'ର ଇଛା ହୁଏ ସେ ବି ସୁମିତ୍ରା ପରି ଭୁବନେଶ୍ୱର ଯାଇ ଏ ସବୁ ଥରେ ଦେଖି ଆସନ୍ତା। ନ ରହିଲେ ନାଇଁ। କିନ୍ତୁ ତା' ମଦୁଆ ବାପା କଥା ଚିନ୍ତା କରି ତା' ମନଟା ଖରାପ ହୋଇଯାଇଥିଲା। ଏବେ ଲକ୍ଷ୍ମଣ ତାଣ୍ଡିର କଥା ତାକୁ ଅପୂର୍ବ ପରି ଲାଗୁଥିଲା। ଲକ୍ଷ୍ମଣ ତାଣ୍ଡି ଦ୍ୱାରା ଯେ ତା' ସ୍ୱପ୍ନ ସାର୍ଥକ ହେବ ସେ କଥା ସେ ଚିନ୍ତା କରି ନଥିଲା।

ଲକ୍ଷ୍ମଣ ତା' ମନ ଜିତିବା ପାଇଁ କହିଲା - କାଇଟା ଏତେ ଭାବିଲୁସନି ବେ। ହଉ ନ ଯିବୁ ନାଇଁ। ତତେ ମୁଇଁ ବାଧ ନାଇଁ କରେ। ଗାଡ଼ିରେ ବସ୍। ଗାଁକୁ ଯିବୁନି ?

ଧନମତୀର ହୋସ୍ ଆସିଲା। ସେ ଲକ୍ଷ୍ମଣ କାନ୍ଧରେ ହାତ ଢ଼ିରା ଦେଇ ଗାଡ଼ି ପଛରେ ବସୁ ବସୁ କହିଲା - ଲକ୍ଷ୍ମଣ କକା! ତମେ କେବେ ଯାଇଛ ଭୁବନେଶ୍ୱର।

ଲକ୍ଷ୍ମଣ ଗାଡ଼ି ଷ୍ଟାର୍ଟ କରୁ କରୁ କହିଲା - ଫୁଃ! ସବୁ ମାସରେ ଯାଉଛି ଲୋ। କେବେ ବସ୍‌ରେ। କେବେ ଟ୍ରେନ୍‌ରେ। କେବେ ଏଇ ଲୁନାରେ ତ କେବେ ଏରୋପ୍ଲେନ୍‌ରେ।

ଲକ୍ଷ୍ମଣର କୋଉ କଥାଟା ସତ କୋଉଟା ଥଟ୍ଟା ନବମ ଶ୍ରେଣୀରେ ପଢୁଥିବା ଝିଅଟାର ମୁଣ୍ଡରେ ପଶିଲା ନାହିଁ। ତା'ର ସବୁଗୁଡାକ କଥା ସତ ବୋଲି ଭାବିଲା।

ଲକ୍ଷ୍ମଣ ଚଇତୁ ମାଝି ଆଗରେ କଥାଟା ପକେଇଲା ବେଳକୁ ଚଇତୁର ନିଶା ଟିକେ ଉତୁରି ଆସୁଥିଲା। ପ୍ରଥମରୁ ହିଁ ସେ ଚିହିଁକି ଉଠି କହିଲା- ନାଇଁ, ନାଇଁ। ଦିଣ୍ଡା ଝିଅଟା, ତାକୁ କୁଆଡ଼େ ପଠେଇବି। ସିଏ ଦଶ କିଲାସ୍ ପାସ୍ ହୋଇଗଲେ ତାକୁ ମାଷ୍ଟ୍ରାଣୀ କି ଅଙ୍ଗନୱାଡ଼ି କାମରେ ଲଗେଇ ଦେଲେ ଗଲା।

ଲକ୍ଷ୍ମଣ ଚଇତୁ ହାତକୁ ଧୁଙ୍ଗିଆ ପୁଡାଟା ବଢ଼େଇ ଦେଇ ନିଜେ ଗୋଟାଏ ପୁଡ଼ା ଖୋଲି ବାମ ହାତ ପାପୁଲି ଉପରେ ଢ଼ାଳିଲା ଓ ଡାହାଣ ହାତର ତିନି ଆଙ୍ଗୁଳିରେ ଧୁଙ୍ଗିଆ ଗୁଣ୍ଡକୁ ପିଟୁ ପିଟୁ କହିଲା – ତୋ ଝୁଅଟା ଭଲ ପଢୁଛି ବୋଲି ହେଡ୍‌ମାଷ୍ଟ୍ର କହୁଥିଲା। ଯିବା ଆସିବା, ରହିବା ଖାଇବା, ପିଇବା ସବୁ ଖର୍ଚ୍ଚ ସରକାର ଦବ। ହଷ୍ଟେଲ୍‌ରେ ରହିବ। ଏଠି ତିନି କିଲୋମିଟର ରାସ୍ତା ସାଇକେଲ୍‌ରେ ଯାଉଛି ଆସୁଛି। ତମେ ଦେଣ୍ଡୀୟା ମନ୍। ଭଲକଥା କହିଲେ ନାଇଁ ବୁଝ।

ସାଇକେଲ କଥା ପଡ଼ିବାରୁ ଚଇତୁର ମନ ପଡିଲା ଆଠ ଦିନ ହେଲା ମଦଭାଟିରେ ବନ୍ଧା ପଡ଼ିଛି ସାଇକଲ। ବୁଧବାରୀ କେଁ କେଁ କରୁଛି। ସେ ଆଣି ପାରୁନାହିଁ। ଟିକେ ନରମି ଗଲା ଚଇତୁ। ଗମ୍ଭୀର ହେଇ କହିଲା – ସେ ମାଆ ବେଟୀ ଦୁଇଟାକୁ କହ ସେମାନେ ରାଜି ହେଇଗଲେ ମୋର କିଛି କହିବାର ନାହିଁ।

ପରୀକ୍ଷା ସରୁ ସରୁ ଲକ୍ଷ୍ମଣ ଧନମତୀ ସହ ଅଷ୍ଟମ ଓ ନବମରେ ପଢୁଥିବା ଆଉ ଚାରିଜଣ ଝିଅ ମନ୍‌କୀ, ସେବତୀ, ମଲ୍ଲୀ, କଉଶୁଲା ଏମିତି ପାଞ୍ଚଜଣଙ୍କୁ ନେଇ ଭୁବନେଶ୍ୱର ବାହାରିଲା। ଗାଡ଼ି ଖର୍ଚ୍ଚ ବାବଦକୁ ଟଙ୍କାଟିଏ ବି ନେଲାନାହିଁ। ପରେ ସରକାରଠୁଁ ସେ ପଇସା ତକ ମାଗି ଆଣିବ ବୋଲି କହିଲା। ପାଞ୍ଚଜଣଙ୍କୁ ପାଞ୍ଚଟା ଆଲୁମିନିୟମ୍ ବାକ୍ସ କିଣି ଦେଇଥିଲା ଲକ୍ଷ୍ମଣ। ସେଥିରେ ସେମାନେ ପିନ୍ଧା ପୋଷାକ, ସାବୁନ୍, ତେଲ, ବ୍ରସ ପେଷ୍ଟ, ପାନିଆ ଦର୍ପଣ ଟିକିଲି ପାଉଡର୍, କଳା, ଲିପ୍‌ଷ୍ଟିକ୍ ଆଦି ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ ସଜେଇ ରଖିଲେ।

ଭୁବନେଶ୍ୱରରେ ପାଠ ପଢ଼ିବାର ଉଚ୍ଚାଟନ ତ ଥିଲା ଧନମତୀର କିନ୍ତୁ କେବେ ଗାଁ ଛାଡି ସେ ବାହାରକୁ ଯାଇନଥିଲା। ଧନମତୀର ପାଦ ସହର ଆଗକୁ ବଢୁନଥିଲା। ଗାଁ ମାଟିର ମମତା, ପରିବାର ଆତ୍ମୀୟସ୍ୱଜନଙ୍କ ବିଚ୍ଛେଦ ଯନ୍ତ୍ରଣାପୂର୍ବରୁ ଆଦୌ ଅନୁଭବ କରି ନଥିଲା ଝିଅଟ। ଆଖିରୁ ନିଗିଡ଼ି ପଡ଼ିଲା କେଇଟୋପା

ଲୁହ। ବୁଧବାରୀ ପିନ୍ଧା ଲୁଗାଟା ଝିଅ ମୁହଁରେ ବୁଲେଇ ଆଣି କହିଲା, ଛି ନନି। ପାଠ ପଢ଼ିବାକେ ଯାଉଚୁ। କାନ୍ଦିବାର ନାଇଁ। ଧନମତୀର ଅଲକ୍ଷ୍ୟରେ ବୁଧବାରୀ ନିଜ ଭିଜା ଗାଲ ଉପରେ ତା କାନିଟାକୁ ବୁଲେଇ ଆଣିଲା। ସାନ ସାନ ଭାଇଭଉଣୀ ଦୁଇଟାଙ୍କ ଆଖିରୁ ବି ନିଗିଡ଼ି ପଡୁଥିଲା ଲୁହ। ଚଇତୁ ଝିଅକୁ ଷ୍ଟେସନ୍ ପର୍ଯ୍ୟନ୍ତ ଛାଡିଯିବାକୁ ଚାହୁଁଥିଲା। ଲକ୍ଷ୍ମଣ କହିଲା - କାହିଁକି ଆସିବୁରେ ଚଇତୁ ପଇସା ଖର୍ଚ୍ଚ କରି। ନେ ଏ ଦୁଇଶଟଙ୍କା ରଖ। ଗାଡ଼ି ଟିକଟ ହେଇଯାଇଛି। ଗାଡ଼ି ଫିଟିଗଲେ ପଇସା ପାଙ୍ଗୁଆରେ ଯିବ । ଧନମତୀ ଓ ଅନ୍ୟ ଝିଅମାନଙ୍କୁ ଠିକଣା ଜାଗରେ ଛାଡ଼ି ୮ ଦିନ ପରେ ଫେରିଥିଲା ଲକ୍ଷ୍ମଣ। ସେ ବେଶ ଖୁସି ଜଣାପଡୁଥିଲା। ଭୁବନେଶ୍ୱରରୁ ଦୁଇ ହଳ ଭଲ ଡ୍ରେସ୍ ବି କିଣିଥିଲା। ବଡ଼ ମୋବାଇଲ୍‌ଟିଏ ଧରିଥିଲା ହାତରେ। ଚଇତୁକୁ ଆଶ୍ୱାସନା ଦେଇ କହିଲା - ଧନମତୀର ଏଥର ଭାଗ୍ୟ ଖୋଲିଗଲା ଚଇତୁ। ସେ ପାଠ ପଢ଼ି ହାକିମ ହେଇ ଗାଁକୁ ଫେରିବ। ତୋ ବଅଁଶର ନାଁ ରଖିବ। ଗାଁର ନାଁ ରଖିବ।

ସୌଭାଗ୍ୟ ସୂର୍ଯ୍ୟର ପ୍ରତିଶ୍ରୁତି ବହନ କରି ଧନମତୀ ଯେଉଁ ଯାତ୍ରା ଆରମ୍ଭ କରିଥିଲା, ତାହା ପ୍ରଥମରୁ ହିଁ ହୋଇଗଲା ଭିନ୍ନମୁଖୀ। ଭୁବନେଶ୍ୱର ବଦଳରେ ସେ ଆଉ କୋଉ ମାୟାପୁରୀରେ ପହଞ୍ଚିଗଲା। କଲମ୍ବସ୍‌ଙ୍କର ଆମେରିକା ଆବିଷ୍କାର କରି ଭାରତ ଆବିଷ୍କାରର ଭ୍ରମ ସୃଷ୍ଟି ହେବାପରି ଧନମତୀ ସେମିତି ଭୁବନେଶ୍ୱର ମହାନଗର ମୋହରେ ଆଉ କୋଉ ମାୟାନଗରରେ ପହଞ୍ଚିଗଲା। ସେ ନିଜକୁ ଏମିତି ଏକ ଜାଗାରେ ଆବିଷ୍କାର କଲା, ଯେଉଁଠି ତା' ଚାରିପଟର ସବୁକିଛି ତାକୁ ଦୁର୍ବୋଧ ଲାଗୁଥିଲା। ତା' ମାଟି, ତା' ମଣିଷ, ତା' ଭାଷା, ତା'ର ଭାବ, କେଉଁଠି ବି ସେ ଆପଣାପଣ ଖୋଜି ପାଉନଥିଲା। ଯେ ଯାହାର କାର୍ଯ୍ୟରେ ବ୍ୟସ୍ତ ଥିଲେ। ତା' ଆଡକୁ କେହି ଆଡ଼ ଆଖିରେ ସୁଦ୍ଧା ଚାହୁଁ ନଥିଲେ। ସତେ ଯେମିତି ଏତେବଡ଼ ସହରରେ ସେ, ସେବତୀ, ମଲ୍ଲୀ, ମନ୍‌କୀ ଆଉ କଉଶଲୀ ଚାରି ପାଞ୍ଚଟା ପିମ୍ପୁଡ଼ି। ଖାଦ୍ୟ କଣିକାଟିଏ ଧରି ଧାର ଧାର ଚାଲିବା ପରି ଏଇ ମଣିଷ ଧାର ଭିତରେ ସେମାନେ ବି ଚାଲିଛନ୍ତି। ସେମାନଙ୍କ ପ୍ରତି କାହାରି ନିଘା ନାହିଁ। ହାତରେ ଆଲୁମିନିୟମ୍ ବାକ୍ସ ଖଣ୍ଡେ ଖଣ୍ଡେ ଧରି ଚାଲିଥିବା ସେମାନଙ୍କ ଦୟନୀୟ ଅସ୍ତିତ୍ୱକୁ ଜାହିର କରିବା ତ ଦୂରର କଥା, ସେମାନେ ଅନୁଭବ କରିପାରୁ ନଥିଲେ ଯେ ନବରଙ୍ଗପୁର ଜିଲ୍ଲାର କେଉଁ ଅଖ୍ୟାତ ପଲ୍ଲୀରୁ ଆସି ସ୍ୱପ୍ନର ଜାଲ ବୁଣୁ ବୁଣୁ କେଉଁ ଅଛିଣ୍ଡା ଜାଲ ଭିତରେ ସେମାନେ ଛନ୍ଦି ହୋଇଯାଇଛନ୍ତି।

ଧନମତୀ କହିଲା - ଲକ୍ଷ୍ମଣ କାକା! ଆମେ ପରା ଭୁବନେଶ୍ୱର ଯିବା। ଏଇଟା ତ ଭୁବନେଶ୍ୱର ନୁହେଁ। ଆଉ ଗୋଟାଏ କ'ଣ ଲେଖା ହୋଇଛି ଇଂଲିଶ୍‌ରେ।

ଲକ୍ଷ୍ମଣ କହିଲା - ଭୁବନେଶ୍ୱର ଆଉ ଟିକେ ଦୂରରେ। ଆମେ ଏଠୁ ଓହ୍ଲେଇ ଟ୍ୟାକ୍ସିରେ ଯିବା। ଲକ୍ଷ୍ମଣ ପାଟିରୁ କଥା ସରିନି, ସଙ୍ଗେ ସଙ୍ଗେ ଟ୍ୟାକ୍ସିଟିଏ ଆସି ପହଞ୍ଚିଗଲା। ଗାଡ଼ି ଚଳାଉଥିବା ଲୋକଟା କହିଲା- ଟ୍ୟାକ୍ସି ?

ଲକ୍ଷ୍ମଣ ସମ୍ମତି ପ୍ରଦାନ କରି ଗାଡ଼ିବାଲାକୁ କୋଉ ଏକ ଗଳିକୁ ନେଇଯିବା ପାଇଁ କହିଲା। ସେ ନିଜେ ଡ୍ରାଇଭର ପାଖ ସିଟ୍‌ରେ ବସିଲା ଓ ଅନ୍ୟମାନଙ୍କୁ ପଛରେ ବସିବାକୁ ଇଙ୍ଗିତ ଦେଲା।

ଟ୍ୟାକ୍ସି ନେଇ ତାଙ୍କୁ ଠିକଣା ଜାଗାରେ ପହଞ୍ଚାଇ ଦେଲା। ସବୁଥିଲା ପୂର୍ବ ନିର୍ଦ୍ଧାରିତ। ଗୋଟାଏ ଅନ୍ଧାରୁଆ ଅପରିଷ୍କାର କୋଠରୀ ଭିତରେ ସେମାନଙ୍କୁ ରହିବାକୁ କୁହାଗଲା। ସ୍କୁଲ ଓ ହଷ୍ଟେଲର ଠିକଣା ଯୋଗାଡ଼ କରିସାରି ସେମାନଙ୍କୁ ନେଇଯିବାର ପ୍ରତିଶ୍ରୁତି ଦେଇ ଚାଲିଗଲା ଲକ୍ଷ୍ମଣ।

ସେଇ ଅନ୍ଧକାର କୋଠରୀ ଭିତରେ ପାଞ୍ଚଟା ନବୋନ୍ମେଷ କଳିକାର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ଦିଗହରା ହୋଇଗଲେ। ସେଥିରୁ ନିବର୍ତ୍ତିବାର କଳା କୌଶଳ ସେହି ଗ୍ରାମ୍ୟ କିଶୋରୀମାନଙ୍କୁ ଜ୍ଞାତ ନଥିଲା। ନିୟତି ପାଖରେ ଅସହାୟ ଆତ୍ମ ସମର୍ପଣ ବିନା ଆଉ ସେମାନଙ୍କ ପାଖରେ ଚାରା ନଥିଲା।

ସପ୍ତାହଟିଏ ମାତ୍ର ସେମାନେ ସେଇ ଦୁର୍ଭୋଗର ଦିନଗୁଡ଼ିକ ମିଳିତ ଭାବରେ ଅତିକ୍ରାନ୍ତ କରିଥିଲେ। ତା'ପରେ କିଏ କୁଆଡେ କେମିତି କାହା ଦ୍ୱାରା ବିଚ୍ଛିନ୍ନ ହୋଇଗଲେ ଓ ଜୀବନର ପରବର୍ତ୍ତୀ ପର୍ଯ୍ୟାୟଗୁଡିକ କେମିତି ବଞ୍ଚିଲେ କେହି କାହାର ଖବର ରଖିପାରିଲେ ନାହିଁ। ଗୋଟାଏ ବିରାଟ ମହୀରୁହର ବାତ୍ୟା ଅନ୍ଦୋଳିତ ଛିନ୍ନ ଶାଖାମାନଙ୍କ ପରି ଓଡ଼ିଶାର କେଉଁ ଅଖ୍ୟାତ ପଲ୍ଲୀରୂପକ ମହୀରୁହରୁ ଏଇ ସୁକୁମାରୀ କିଶୋରୀଗୁଡ଼ିକ ସମ୍ପୂର୍ଣ୍ଣ ଛିନ୍ନବିଚ୍ଛିନ୍ନ ହୋଇଗଲେ।

## ୩

ଧନମତୀ ସାଙ୍ଗ ଝିଅମାନଙ୍କ ପାଖରୁ ବିଚ୍ଛିନ୍ନ ହୋଇ ଭାଗ୍ୟବରାଦରେ ପହଞ୍ଚି ଯାଇଥିଲା ଗୋଟିଏ ପୁରୁଷ ବିଉଟିପାର୍ଲରରେ। ବିଉଟିପାର୍ଲର ମାଲିକ ତାକୁ ସମ୍ପୂର୍ଣ୍ଣ କ୍ରୟ କରି ଆଣିଥିଲା। ତାକୁ ସେ କୌଣସି ପାରିଶ୍ରମିକ ଦେଉ ନଥିଲା।

କେବଳ ତା'ର ରହିବା, ଖାଇବା, ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟ ପାଇଁ ଯାହା ଆବଶ୍ୟକ ତା' ଠାରୁ ପଇସାଟିଏ ବି ଅଧିକ ମିଳୁ ନଥିଲା। ମୁଖର ସୌନ୍ଦର୍ଯ୍ୟ ବୃଦ୍ଧି କରିବା ନିମନ୍ତେ ପୁରୁଷମାନେ ସୌନ୍ଦର୍ଯ୍ୟବିତ୍‌ମାନଙ୍କ ଦ୍ୱାରା ବିଭିନ୍ନ ପ୍ରକାର ପ୍ରସାଧନ ସାମଗ୍ରୀ ପ୍ରୟୋଗ କରୁଥିଲେ। ଫେସିଆଲ୍ କରୁଥିଲେ। ବ୍ଲିଚିଂ କରୁଥିଲେ। ମସାଜ୍ ଥିଲା ଏ ବିଉଟିପାର୍ଲରର ଅନ୍ୟତମ ଆକର୍ଷଣ। ନବତରୁଣମାନଙ୍କ ପାଖରେ ଲୋଳିତ ଚର୍ମ ବୃଦ୍ଧ ପର୍ଯ୍ୟନ୍ତ ସମସ୍ତେ ଆକର୍ଷିତ ହେଉଥିଲେ। ସହରରେ ଅନ୍ୟାନ୍ୟ ମସାଜ୍ ସେଣ୍ଟରଠାରୁ ଏ ସେଣ୍ଟରର ଖ୍ୟାତି ଥିଲା ବେଶି। ଏଠାରେ ମାଲିସ୍‌କାରୀଙ୍କ ଅପେକ୍ଷା ମାଲିସ୍ କାରିଣୀ ଥିଲେ ବେଶି। ବାହାର କୋଠରୀମାନ ଥିଲା ଫେସିଆଲ୍ ପାଇଁ। କିନ୍ତୁ ମସାଜ୍ ପାଇଁ ଅନ୍ଦର ମହଲ ଉର୍ଦ୍ଦିଷ୍ଟ ଥିଲା। କେଉଁ ରହସ୍ୟମୟୀ ଯାଦୁ କୋଠରୀ ପରି ଭିତରେ ଭିତରେ କେତେ ଯେ ଆଳିନ୍ଦ ନିଳୟ ଥିଲା ଏତେଦିନ କାମ କଲାପରେ ଧନମତୀ ବି ଟେର ପାଉନଥିଲା। ଏ ଭିତରେ ଯେଉଁ ମାଲିସ୍‌କାରିଣୀମାନେ କାମ କରନ୍ତି, ସେମାନଙ୍କୁ ଚବିଶଘଣ୍ଟା ସତର୍କ ଦୃଷ୍ଟିରେ ରଖାଯାଇଥିଲା। ସେମାନଙ୍କୁ ବାହାରକୁ ଛଡ଼ାଯାଉନଥିଲା। ସେମାନଙ୍କ ପାଇଁ ସ୍ୱତନ୍ତ କୋଠରୀ ସବୁ ରହିଥିଲା। ଆବଶ୍ୟକବେଳେ ବ୍ୟବହାର ପାଇଁ ଗୁପ୍ତ ସୁଡଙ୍ଗମାନ ବି ରହିଥିଲା। ଏହାର ରାସ୍ତା ସେମାନଙ୍କୁ ଦେଖାଇ ଦିଆଯାଇନଥିଲା। କେବଳ ଏତିକି ସୂଚାଇ ଦିଆଯାଇଥିଲା ଯେ ଯଦି ଆବଶ୍ୟକ ପଡ଼େ ସିଗ୍‌ନାଲ୍ ବାଜିଲେ ଗୁପ୍ତ ସୁଡ଼ଙ୍ଗ ଖୋଲିଯିବ ଓ ସେମାନେ ନିର୍ଦ୍ଧାରିତ ସ୍ଥାନକୁ ଚାଲିଯିବେ।

ମାଲିସ୍‌କାରିଣୀମାନଙ୍କୁ ଅର୍ଥ ଗଚ୍ଛିତ କରିବାକୁ ଦିଆଯାଇନଥିଲା। ମଝିରେ ମଝିରେ ସେମାନଙ୍କ କୋଠରୀ ତନଖି କରାଯାଉଥିଲା। ଗ୍ରାହକମାନଙ୍କଠାରୁ ଟିପ୍‌ସ୍ ସୂତ୍ରରେ ଯଦି କିଛି ଅର୍ଥ ସେମାନେ ପାଉଥିଲେ, ସେ ଅର୍ଥ ମାଲିକ ବ୍ୟାଜ୍ୟାପ୍ତି କରୁଥିଲେ। ଏହି ସୂତ୍ରରେ ମାଲିସ୍‌କାରିଣୀମାନଙ୍କର ମୁକ୍ତିର ସକଳ ସମ୍ଭାବନାକୁ ଅବରୋଧ କରାଯାଇଥିଲା।

ବିଭିନ୍ନ କିସମର ଗ୍ରାହକ ଆସୁଥିଲେ। କାହାର ମସ୍ତକରେ ଟିକେ ତୈଳ ମାଲିସ୍‌ର ଆବଶ୍ୟକତା ହେଉଥିଲା ତ କପାଳରେ ମାଲିସ୍ କରି କେତେକ ଗ୍ରାହକ ସନ୍ତୁଷ୍ଟ ରହୁଥିଲେ। ଆଉ କେତେ ଗ୍ରାହକଙ୍କର ସମଗ୍ର ଶରୀର ମାଲିସ୍ କରିବାକୁ ହେଉଥିଲା। ଗ୍ରାହକମାନଙ୍କର ଫରମାଇସ୍ ଅନୁସାରେ ମାଲିସ୍ କାରିଣୀମାନେ ସେବା ଯୋଗାଇ ଦେଉଥିଲେ। ଆଉ କେତେକ ଗ୍ରାହକଙ୍କ ପାଇଁ ସ୍ୱତନ୍ତ୍ର କୋଠାରୀମାନ ବ୍ୟବହୃତ ହେଉଥିଲା। ସେଥିପାଇଁ ସମୟ ନିର୍ଘଣ୍ଟ ଥିଲା। ସମୟ ଅନୁସାରେ ମୂଲ୍ୟ

ନିର୍ଦ୍ଧାରିତ ହୋଇଥିଲା। ସବୁ ପ୍ରକାର ସେବା ପାଇଁ କୋର୍ଡଓ୍ୱାର୍ଡ ଥିଲା। ସେହି ଅନୁସାରେ ମାଲିସ୍‌କାରିଣୀ ନିଯୁକ୍ତି ହୋଇଥିଲେ। ପ୍ରତି ମାଲିସ୍‌କାରିଣୀଙ୍କ ସେବା ପାଇଁ ଭିନ୍ନ ଭିନ୍ନ ମୂଲ୍ୟ ନିର୍ଦ୍ଧାରିତ କରାଯାଇଥିଲା। ବହୁ ଧନୀମାନୀ ରାଜନୈତିକ ନେତା, ଅଭିନେତା ଘରର ପୁରୁଷ ଆସୁଥିଲେ। ଶରୀରର ହେପାଜତ୍ କରିବା ସଙ୍ଗେ ସଙ୍ଗେ ପ୍ରବୃତ୍ତିର ବି ହେପାଜତ୍ କରୁଥିଲେ। ପଚାଶ ବର୍ଷରୁ ଉର୍ଦ୍ଧ୍ୱ ବ୍ୟକ୍ତିଙ୍କ ସଂଖ୍ୟା ଏଠି ଥିଲା ବେଶି।

ମାଲିସ୍ କାରିଣୀ ଟ୍ରେନିଂ ନେବା ପରେ ପ୍ରଥମେ ଧନମତୀ ଯେଉଁ ପୋଷାକ ଧରି ଗାଁରୁ ଆସିଥିଲା ତାକୁ ବିସର୍ଜନ ଦେଲା। ବିଉଟି ପାର୍ଲରରେ ଧନମତୀକୁ ସେମାନଙ୍କ ଇଚ୍ଛା ଅନୁସାରେ ସଜିତ କରାଗଲା। ଜଡ଼ାତେଲ ମାଖି କଳା ମୁଚୁମୁଚୁ କରିଥିବା ତା'ର ପିଠିଏ ଗହଳ କେଶଗୁଚ୍ଛକୁ ବେକ ଉପରକୁ ଉଠେଇ ଦିଆଗଲା। ଗହଳ ଭ୍ରୂଲତାକୁ କାଟି ସୂତାଏ ମାପର କରାଗଲା। ଡିଉଟି ସମୟରେ ଯେଉଁ ୟୁନିଫର୍ମ ପିନ୍ଧିବା ପାଇଁ ତାକୁ ଦିଆଗଲା ତାହା ଥିଲା ସଂକ୍ଷିପ୍ତରୁ ସଂକ୍ଷିପ୍ତତମ। ପ୍ରଥମେ ପ୍ରଥମେ ଏ ପୋଷାକରେ ସେ ଆଦୌ ସ୍ୱଚ୍ଛନ୍ଦ ଅନୁଭବ କରୁନଥିଲେ ବି ପରେ ପରେ ତା'ର ଦେହସୁହା ହୋଇଗଲା।

ପାଠ ପଢ଼ିବା ସହ ବାପାମାଆଙ୍କ ସାଙ୍ଗରେ ବଣ ଜଙ୍ଗଲ ପାହାଡ଼ ପର୍ବତରେ କାମ କରି ଦୁଇ ପାପୁଲିକୁ ବଳିଷ୍ଠ କରିଥିବା ଧନମତୀ ମସାଜର ମାଦକତା ଥିଲା ସ୍ୱତନ୍ତ୍ର। ତା' ହାତରେ ମସାଜରେ ଶରୀର ପରାସ୍‌ମେଣ୍ଟୁଥିଲା ତ ମନର ପରାସ ବୃଦ୍ଧି କରି ଦେଉଥିଲା। ସେଥିପାଇଁ ସେମାନେ ସ୍ୱତନ୍ତ୍ର ମୂଲ୍ୟ ଦେଇ ଅଧିକ ସେବା ଚାହୁଁଥିଲେ। ସେମାନଙ୍କ ଦାଉରୁ ବର୍ତ୍ତିବା ସବୁବେଳେ ସମ୍ଭବ ନଥିଲା। ମାଲିକର ନିର୍ଦ୍ଦେଶ ଥିଲା ଗ୍ରାହକଙ୍କୁ ସନ୍ତୁଷ୍ଟ କରିବା କର୍ମଚାରୀମାନଙ୍କର ସର୍ବନିମ୍ନ କର୍ତ୍ତବ୍ୟ। ସେଥିରେ ସାଲିସ୍ ହୋଇପାରିବ ନାହିଁ। ବ୍ୟତିକ୍ରମ ହେଲେ ମାଲିସ୍‌କାରିଣୀମାନଙ୍କୁ ବିଭିନ୍ନ ପ୍ରକାର ନିର୍ଯ୍ୟାତନା ଭୋଗିବାକୁ ପଡୁଥିଲା। ଧନମତୀର ଏଇ ଜୀବନ ସହ ନିଜକୁ ସାମିଲ୍ ନ କରିବାର ଉପାୟ ନଥିଲା।

## ୪

ଚଇତୁ ଓ ବୁଧବାରୀ ବ୍ୟସ୍ତ ହୋଇ ପଡ଼ିଲେ। ଝିଅଟା ପାଠ ପଢ଼ିବାକୁ ଗଲା। ତିନି ବରଷ ପୁରିବାକୁ ବସିଲାଣି। ଖୋଜଖବର ନାହିଁ। ଖରାଛୁଟି ହେଉଛି, ଦଶହରା ଛୁଟି ହେଉଛି, ଯିଏ ଯେଉଁଠି ପାଠ ପଢ଼ିବାକୁ ଯାଉଛନ୍ତି ସମସ୍ତେ ଆସୁଛନ୍ତି

କେବଳ ଧନମତୀ ଛଡ଼ା। କି ପାଠ ଏମିତି ପଢୁଛି ଯେ ବାପା ମାଆଙ୍କୁ ଭୁଲିଗଲା। ଭାଇ ଭଉଣୀକୁ ଭୁଲିଗଲା। ଗାଁ ମାଟିକୁ ଭୁଲିଗଲା। ବିଚଳିତ ହୋଇ ପଡୁଥିଲେ ଦିନକୁ ଦିନ। ଲକ୍ଷ୍ମଣକୁ ପଚାରିଲେ କହେ ଏ ବର୍ଷ ତା'ର ମେଟ୍ରିକ୍ ପରୀକ୍ଷା। ଛୁଟିରେ ତାକୁ ଛାଡିବେ ନାଇଁ। ଅଇଲା ବର୍ଷ ତାକୁ ଦଶହରା ଛୁଟିରେ ପୁରୀ ମନ୍ଦିର ଦେଖେଇବାକୁ ନେବେ, ଆସିବ ନାଇଁ। ତା'ପର ଛୁଟିରେ +୨ ପରୀକ୍ଷା। ଆସିବ ନାହିଁ। ଭୁବନେଶ୍ୱରରେ ପଢୁଛି। ତମ ଦେଶୀୟାମାନଙ୍କ ପାଠ ହେଇଚି ଯେ ସକାଳବେଳା ପାଠ ପଢ଼ିଗଲେ ଉପରବେଳାକୁ ବଣକୁ ଯିବ କାଠ ଆଣିବାକୁ। ବାରମ୍ବାର ଘରକୁ ଆସିବ ତ ପାଠ କେତେବେଳେ ପଢ଼ିବ। ତା' ମାଇଣ୍ଡ ଡାଇଭର୍ଟ୍ ହୋଇଯିବ। ପାଠରୁ ଅନ୍ୟ ଆଡକୁ ଚାଲିଯିବ। ସେ ପାଠ ପାଇଁ ଯାଇଛି। ପାଠ ସରୁ। ଏକାଥରେ ହାକିମ୍ ହେଇ ଆସିବ। ଦେଖିବୁ ସେତେବେଳକୁ ତୋର ଆଉ ଏ ଝୁମ୍ପୁଡି ଘର ନଥିବ, କି ଇନ୍ଦିରା ଆବାସ ଘରଖଣ୍ଡେ ପାଇଁ ତୋତେ ଆଉ ଏମିତି ଦଉଡିବାକୁ ପଡିବ ନାହିଁ। ସେ ତୋ ପାଇଁ ମେଢ଼ ଘର ବାନ୍ଧିଦବ। ତୁ ଏମିତି ଆଉ ଖଲାସି କାମ ପାଇଁ ଦିନରାତି ବସ୍‌ଷ୍ଟାଣ୍ଡରେ ଠିଆ ହେବୁନାହିଁ। ଝିଅ ହାକିମ ଆଉ ବାପ ଖଲାସି। ଛି ! କି ଲାଜର କଥା।

ଚଇତୁ ଓ ବୁଧବାରୀ ଦୁହିଁଙ୍କୁ ଲକ୍ଷ୍ମଣ ମୁହଁରୁ ବାହରୁଥିବା କଥାଗୁଡାକ ଅମୃତ ପରି ଲାଗୁଥିଲା। ଏକାବେଳେ ଦୁହିଁଙ୍କ ମୁହଁରୁ ବାହାରି ପଡିଲା, ହଇ, ହଇ... ସତ୍ କଥା ଏକା।

ବୁଧବାରୀ ନିରୀହ କଣ୍ଠରେ କହିଲା, ଦିଣ୍ଡା ଝିଅଟା ବିଭା ହେବନାହିଁ ?

ଲକ୍ଷ୍ମଣ ଭୁରୁଡିଟାଏ ପକେଇ କହିଲା - ହୁଟ୍ ! ସିଏ କ'ଣ ଆଉ ଦେଶୀୟା ଟୋକୀ ହୋଇ ଅଛି ଯେ ମଣ୍ଡେଇରୁ ବର ବାଛି ବିଭା ହେବ ? ଦେଖିବୁ ସିଏ ହାକିମ ହେବ। ଗୋଟାଏ ହାକିମକୁ ବିଭା ହୋଇ ମଟରଗାଡି ଚଢ଼ି ଆସିବ ତୋ ଘରକୁ। ହଁ-ହଁ-ସେତେବେଳକୁ ତୋର ଏ ଝୁମ୍ପୁଡିଘର ଚଳିବ ନାହିଁ। ମେଢ଼ ଘର, ମେଢ଼ ଘର କରି ଦେଇଥିବୁ।

ଲକ୍ଷ୍ମଣ ଉଠି ଚାଲିଯାଏ। ବୁଧବାରୀ ଚଇତୁ ହାଁ ଫାଡି ଅନେଇଥାନ୍ତି ତାକୁ। ସିଏ ତା'ର ନୂଆ ମଟର ସାଇକେଲଟା ଘୁଁ କରି ଉଡ଼େଇ ଦେଇ ଚାଲିଯାଏ। ପଛରେ ରହିଯାଆନ୍ତି ଚଇତୁ ଆଉ ବୁଧବାରୀ।

ବୁଧବାରୀ ମନକୁ ପାପ ଛୁଏଁ। ଦିଣ୍ଡା ଝିଅଟା। ସହର ବଜାର ଜାଗା। ଟୋକୀଟାକୁ ଏକା ଛାଡ଼ିଦେଲେ। ମତେ କିଛି ଭଲ ଦିଶୁନାଇଁ।

ଚଇତୁ କହେ – ପାଠ୍ ପଢ଼ି ଯାଇଚି ଲୋ ବାଇରୀ। କାଇଟା ଆଉରି ହେସି ? ଯଦି ତା'ର କୋଉଠି ମନ୍ ମିଶିଲା ତ ଯାଉ। ଆମର ହାତର୍ କଥା କି ? ତୋର ଟୋକୀ ଆଉ ସାନପିଲା ହେଇ ନାଇଁ। ତା'ର ବିଭାଲାଗି ବୟସ ହେଲାଣି।

ତୁନିପଡେ ଗୁରୁବାରୀ। ଦେଶୀୟା ସମାଜରେ ପୁଅଝିଅ ଜୀବନସାଥୀ ବାଛିବା ବେଳେ ବାପମାଆଙ୍କ ଅନୁମତି ନେବାକୁ ଆବଶ୍ୟକ ମଣନ୍ତି ନାହିଁ। ଯାହାକୁ ସେମାନେ ନିର୍ବାଚନ କରନ୍ତି ବାପାମାଆ ଆଦରରେ ଗ୍ରହଣ କରନ୍ତି। ଝିଅମାନଙ୍କୁ ନେଇ ଅନ୍ୟ ବିପଦ ସେମାନେ ଆଶଙ୍କା କରନ୍ତି ନାହିଁ। ତାଙ୍କ ସମାଜରେ ଧର୍ଷଣ ବଳାତ୍କାର ପରି ଦୁଷ୍କର୍ମ ନାହିଁ। ତାଙ୍କ ସମାଜ ଝିଅମାନଙ୍କୁ ସମ୍ପୂର୍ଣ୍ଣ ସ୍ୱାଧୀନତା ଦେଇଛି। ହାଟ ବଜାର, କ୍ଷେତବାଡି ବଣ ଜଙ୍ଗଲ ସବୁଠି ସେମାନଙ୍କର ଅବାଧ ଗତି। ମଣିଷର ଘୃଣ୍ୟ କାମ ଲାଳସାରେ ସେମାନେ ଆକ୍ରାନ୍ତ ହୁଅନ୍ତି ନାହିଁ। ପିଲା ଟୋକୀ ରାଜି ତ ସବୁ ଠିକ୍‌ଠାକ୍। ମନ ମିଶିଛି, ଭଲ ପାଇବା ଅଛି, ଆକର୍ଷଣ ଅଛି, ବିଶ୍ୱାସ ଭରସା ଅଛି ତ ଗୋଟାଏ ଘରେ ରହିଲେ। ଏସବୁଥିରୁ ଏତେଟିକେ ଉଣା ହେଲେ ସେମାନେ ଅଲଗା ହୋଇଯାଆନ୍ତି। ତାଙ୍କ ଦାମ୍ପତ୍ୟ ଜୀବନ ସାଲିସ୍‌ରେ ଚାଲେନାହିଁ। ପ୍ରେମ ଭଲପାଇବା ତାଙ୍କ ଦାମ୍ପତ୍ୟ ଜୀବନର ଆଧାରଶୀଳା। ନାରୀମାନଙ୍କୁ ଯଥେଷ୍ଟ ସମ୍ମାନ ଦେଇଥାଏ ଆଦିବାସୀ ସମାଜ। ତେଣୁ ଧନମତୀ ପ୍ରତି ସେମାନେ ବେଶି ଚିନ୍ତିତ ଥିବାପରି ଲାଗୁନଥିଲା। ସେ ପାଠ ପଢୁଛି ତ ପଢୁ। ବିଭା ହେବାକୁ ଚାହୁଁଛି ତ ହେଉ। ସେଥିରେ ଏମାନେ ବାଧା ଦେବେନାହିଁ।

୫

ଝିଅଙ୍କର ଭବିଷ୍ୟତ ନେଇ ସିନା ସେମାନେ ଚିନ୍ତିତ ନଥିଲେ କିନ୍ତୁ ତିନି ବରଷ ହେଲାଣି, ଝିଅଟାକୁ ଟିକେ ଦେଖିବେ ନାଇଁ ? ଇଏ କେମିତିକା କଥା। ବୁଧବାରୀର ମାତୃ ହୃଦୟ ବ୍ୟାକୁଳ ହୋଇଉଠେ। ଦିଆଲି ମଣ୍ଡେଇ ଅମୁଷ୍ ପର୍ବ ପର୍ବାଣୀପରି ଝିଅଟା କଥା ମନେ ପଡିଲେ ତା' ଛାତିଟା କରତି ହୋଇଯାଏ। ଘରେ ପିଠାପଣା, ମାଛ ମାଉଁସ ହୁଏ, ଝିଅଟା ପାଟିରେ ଟିକେ ବାଜିଲା ନାହିଁ। ତା'ର ଆଖିରେ ଲୁହ ଆସିଯାଏ। କୋହରେ କଣ୍ଠ ରୁଦ୍ଧି ହୋଇଯାଏ। ଦିନେ ଦିନେ ପୂଜାପରବ ଦିନ ବୁଧବାରୀ ଚଇତକୁ କହେ ଚାଲ ଝିଅଟାକୁ ଟିକେ ଦେଖି ଆସିବା। ଲକ୍ଷ୍ମଣ ବିନା କିଛି କରିପାରିବେ ନାହିଁ। ଲକ୍ଷ୍ମଣ ପାଖକୁ ଚଇତୁ ଆଉ ବୁଧବାରୀ ଯାଆନ୍ତି। ଲକ୍ଷ୍ମଣ ଖୁବ୍ ଜୋର୍‌ରେ ହସେ। ହସି ହସି ନୟାନ୍ତ ହୋଇ

କହେ- ତୁ କି ପିଠାପଣା ଦେଖଉଚୁ ଲୋ ବୁଧବାରୀ। ସିଏ କ'ଣ ଆଉ ତୋର ଏଇ ପିଠାପଣା ଖାଇବାକୁ ଅନେଇ ବସିଛି। ତୁ ଏଇୟାକୁ ଧରି ତା' ପାଖକୁ ନେଇ କି ଯିବୁ? ତା' ସାଙ୍ଗସାଥୀ ଦେଖି ହସିବେ। କୋରାପୁଟିଆ ଦେଶୀୟା କହି ନାକ ଟେକିବେ। ଲାଜ ପାଇବ ତୋ ଝିଅ।

ଚଇତୁ କହିଲା - ହଇରେ ଲକ୍ଷ୍ମଣ। ତୁଇ ସତ କଥା କଇଚୁ।

ବୁଧବାରୀ ମନଟା ଏକାବେଳେ ମରିଯାଏ। ସେ ଝିଅଟାକୁ ଯେ କେବେ ଆଉ ଦେଖିବ ସେ ଆଶା ତା'ର ଧୀରେ ଧୀରେ ମଉଳି ଯାଉଥିଲା। ହଁ- ଶାଶୁଘର ଖଟିଥାନ୍ତି ହେଲେ ମନଟା ବୁଝେଇ ଦେଇ ରହିଯାଇଥାନ୍ତା। କି ଯୋଗରେ ଗଲା ଯେ ଝିଅଟା।

ସାନ ସାନ ପିଲା ଦୁଇଟା ମାଆକୁ ପଚାରନ୍ତି, ଏ ମା! ଦିଦି କେବେକୁ ଆସିବ? ସମ୍ବାରୀ କିଛି ଜବାବ ଦେଇ ପାରେନାହିଁ। ତା'ର କୋହ ଉଠେ।

ପିଲା ଦୁଇଟା ପୁଣି ପଚାରନ୍ତି - କେବେକୁ ଆସିବ ଗୋ ମା' ଦିଦି? ବୁଧବାରୀ କଣ୍ଠ ଚାପି ଗମ୍ଭୀର ସ୍ୱରରେ କହେ, ସେ ପାଠ ପଢ଼ି ଯାଇଛି। ପାଠ ସରିଲେ ଆସିବ।

ହେଲେ, ଧନମତୀର ପାଠ ସରୁନଥିଲା...

# ବରହମପୁରିଆଣୀ ଆଈ

ସମୟ ସବୁ ଯନ୍ତଣାର ମଲମ ବୋଲି ମୋ ଦୃଢ଼ୀଭୂତ ବିଶ୍ୱାସ, ବାଲିବନ୍ଧ ପରି ଭୁଷୁଡି ପଡୁଥିଲା। ଅଘଟଣ ଘଟିବାର ଦୁଇବର୍ଷ ବିତିଯାଉଥିଲେ ବି ଅବସାଦରୁ ମୁଁ ମୁକ୍ତ ହୋଇପାରୁନଥିଲି। ବରଂ ଦିନକୁ ଦିନ ମୁଁ ମୋର ମାନସିକ ସନ୍ତୁଳନ ହରେଇବା ପରି ଅନୁଭବ କରୁଥିଲି। ସବୁବେଳେ ଅନ୍ୟମନସ୍କ ରହୁଥିଲି। କାହାସହ କଥାବାର୍ତ୍ତା କରିବାପାଇଁ ଇଚ୍ଛା ହେଉନଥିଲା। ଲେଖାଲେଖି କିମ୍ବା ପଢ଼ାପଢ଼ି କରିପାରୁନଥିଲି। ବାହାରକୁ ଯିବାପାଇଁ ସୁବ୍ରତ କହିଲେ ମୁଁ ବିରକ୍ତ ହୋଇପଡୁଥିଲି। ମୋ ଜୀବନରେ ଯେ ଏମିତି କିଛି ଝଡଝଞ୍ଜା ଆସିନାହିଁ ମୁଁ ତାକୁ ସାହସରସହ ସାମ୍ନା କରିନାହିଁ, ଏମିତି ନୁହେଁ। ସମସ୍ୟା ଯେତେବଡ଼ ହେଉ ଅବିଚଳିତ ଭାବରେ ସାମ୍ନା କରିପାରେ ବୋଲି ଆମ ପରିବାର ଓ ସାଙ୍ଗସାଥୀ ମହଲରେ ମୋ ଧୈର୍ଯ୍ୟକୁ ସମସ୍ତେ ତାରିଫ୍ କରୁଥିଲେ। କିନ୍ତୁ ଏବେ ମୁଁ ଅନୁଭବ କରୁଛି, ମୁଁ ଯେମିତି ଭିତରେ ଭିତରେ ସଂପୂର୍ଣ୍ଣ ଭାଙ୍ଗିତୁଟି ପଡୁଛି। ମୋର ଏ ଦୁର୍ଭାଗ୍ୟର କୌଣସି ବିକଳ୍ପ ନାହିଁ, ସେ କଥା ହୃଦ୍‌ବୋଧ ପରେ ମୁଁ ଆଦୌ ମୋ ମନକୁ ବୁଝେଇ ପାରୁନଥିଲି।

ଦୁର୍ଘଟଣା ଜନିତ ଗର୍ଭପାତ ବେଦନାବୋଧରୁ ଉତୁରି ଆସିବା ମୋ ପାଇଁ

କଷ୍ଟସାଧ୍ୟ ନଥିଲା, କିନ୍ତୁ ଯେଉଁ ସତ୍ୟକୁ ଡାକ୍ତରଙ୍କ ସମେତ ମୋ ପରିବାରବର୍ଗ ମୋ ପାଖରୁ ଲୁଚେଇବାକୁ ଚେଷ୍ଟା କରିଥିଲେ, ମୋ ପାଖରେ ଉନ୍ମୋଚନ ହୋଇ ପଡିବା ପରେ ଯେଉଁ ଶକ୍ତ ଆଘାତ ପାଇଛି, ସେଥିରୁ ମୁଁ ମୁକ୍ତ ହୋଇପାରୁନାହିଁ। ଏ ଯନ୍ତ୍ରଣା ମୋର କିଛି ଲାଘବ ହୁଅନ୍ତା ଯଦି ମୁଁ କାହାସହ ଏ ବେଦନାବୋଧକୁ ବାଣ୍ଟି ପାରନ୍ତି। ମୁଁ କଷ୍ଟ ପାଇବି ବୋଲି ଯେଉଁ ସତ୍ୟକୁ ମୋ ପାଖରୁ ଗୋପନୀୟ ରଖାଯାଇଛି, ତାହା ଯେ ମୋ ପାଖରେ ଆଉ ଗୋପନୀୟ ହୋଇନାହିଁ, ଏହା ମଧ୍ୟ ମୁଁ ଜାଣିବାକୁ ଦେଲିନାହିଁ ଅନ୍ୟ କାହାକୁ। ଏଇଥିପାଇଁ ଯେ ମୁଁ ଦୁଃଖୀ ହୋଇପଡିଛି, ମୋ ଆତ୍ମବିଶ୍ୱାସ ହରେଇ ଦେଇଛି, ଜୀବନପ୍ରତି ବିତସ୍ପୃହ ହୋଇପଡୁଛି, ଏହା ସୁବ୍ରତଙ୍କୁ ଅତ୍ୟନ୍ତ କଷ୍ଟ ଦେବ ସେ ସମ୍ଭାଳି ପାରିବେ ନାହିଁ। ସାମାନ୍ୟ ଦୁଃଖରେ ବିଚଳିତ ହୋଇ ପଡୁଥିବା ସେ ନରମ ଲୁତୁପୁତୁ ମଣିଷଟିଏ। ମୋ କଷ୍ଟ ତାଙ୍କୁ ଜାଣିବାକୁ ଦେଲିନାହିଁ। ଅନୁଭବ କଲି ପରିବର୍ତ୍ତନ ପାଇଁ ମୁଁ କିଛି ଦିନ ଆମ ଗାଁକୁ ଚାଲିଯିବି। ହୁଏତ କିଛି ସୁଫଳ ମିଳିପାରେ।

ମୋ ପ୍ରସ୍ତାବକୁ ସେ ଆନନ୍ଦର ସହ ଗ୍ରହଣ କଲେ। ୧୦/୧୫ ଦିନର ରହଣି ପାଇଁ ପ୍ରସ୍ତୁତ ନେଇ ମୁଁ ବାହାରି ପଡିଲି। କାହାକୁ କିଛି ନ ଜଣେଇ ଅଚାନକ ମୁଁ ପହଞ୍ଚି ଯାଇଥିଲି ଗାଁରେ। ଗାଁରେ ପହଞ୍ଚି ମୁଁ ଏମିତି ଅଭାବନୀୟ ପରିସ୍ଥିତିର ସମ୍ମୁଖୀନ ହେଲି, ଯାହା ମୋ ଚେତନା ରାଜ୍ୟରେ ଭୂମିକମ୍ପଟିଏ ସୃଷ୍ଟି କରିବାପାଇଁ ଯଥେଷ୍ଟ ଥିଲା। ଆମର ପ୍ରତିଟି ଭୋଗ ଦୁର୍ଭୋଗ ଅନୁଭୋଗ, ଚିନ୍ତା ଚେତନା କଳ୍ପନା ପଛରେ ଯେ ଏକ ଶକ୍ତିଶାଳୀ ଅଦୃଶ୍ୟ ଶକ୍ତିର ହାତ ରହିଛି ବିଶ୍ୱାସ କରିବାକୁ ବାଧ୍ୟ ହେବା ଛଡ଼ା ମୋର ଉପାୟନ୍ତର ନଥିଲା।

ବୋଉ ଥିଲା ଏ ସବୁର ସୂତ୍ର ଧର। ସେ ମୋତେ ଦେଇଥିଲା ବରହମ୍‌ପୁରିଆଣୀ ଆଈର ମୃତ୍ୟୁ ସମ୍ବାଦ। ହଁ ବରହମ୍‌ପୁରିଆଣୀ ଆଈ କଥା କହୁଛି - ବରହମ୍‌ପୁରିଆଣୀ ଆଈକୁ ବଡମାନେ ବରହମ୍‌ପୁରିଆଣୀ କହୁଥିବାବେଳେ ଆମେସବୁ ସାନମାନେ ଖୁଡୀ ମାଉସୀ ଆଈ ମାଈଁ ଯିଏ ଯେଉଁ ସମ୍ବୋଧନ କରୁନା କାହିଁକି ପୂର୍ବରୁ ବରହମ୍‌ପୁରିଆଣୀ ବିଶେଷଣଟିଏ ପ୍ରୟୋଗ କରିଥାଉ।

ତା'ର ଯେ ଗୋଟାଏ ନାଁ ଥାଇପାରେ, ବାପମାଆ ଥାଇପାରନ୍ତି, ଭାଇଭଉଣୀ ଥାଇପାରନ୍ତି, ଆତ୍ମୀୟ ସ୍ୱଜନ ଥାଇପାରନ୍ତି ଏକଥା ମୁଁ କ'ଣ, ଆମ ଗାଁରେ କେହି ଚିନ୍ତା ଚେତନାରେ ସୁଦ୍ଧା ଆଣିନଥିଲେ। ସେ ଆମ ଗାଁକୁ ଆସିବା ପରଠୁଁ ସେସବୁ ପରିଚୟ ତା'ର ହଜିସାରିଥିଲା। ସେ କେବଳ ସେଇ ଗୋଟାଏ

ନାଁରେ ପରିଚିତ ଥିଲା ବରହମ୍ପୁରିଆଣୀ, ଆବାଳ ବୃଦ୍ଧବନିତା ତାକୁ ସେଇ ନାଁରେ ଡାକୁଥିଲେ ।

ଦୁଇ ଦୁଇଟି ପତ୍ନୀ ବିୟୋଗ ଘଟିବା ପରେ ଆମ ଗାଁର ଆନ୍ଦିଆ ଅଜା ବନାମ ଆନନ୍ଦ ମିଶ୍ର ତୃତୀୟ ବାର ଘର ସଂସାର କରିବାକୁ ଚାହିଁଲେ । ପ୍ରଜାପତି ଘଟସୂତ୍ରମାନେ କନ୍ୟାପିତାମାନଙ୍କ ଘରକୁ ଯେତେବେଳେ ଆନ୍ଦିଆ ଅଜା ପାଇଁ ପ୍ରସ୍ତାବ ନେଇଗଲେ କନ୍ୟାପିତାମାନଙ୍କ ପାଖରୁ ବାରମ୍ବାର ଗାଳି ଓ ଗଳାଧକ୍କା ଖାଇବା ପରେ ତାଙ୍କ ବାହାଘର ପାଇଁ ମଧ୍ୟସ୍ଥି ହେବାର ଚେଷ୍ଟାରୁ ବିରତ ରହିଲେ । ଆନ୍ଦିଆ ଅଜା କିନ୍ତୁ ହତାଶ ହୋଇନଥିଲେ । ସେ ତାଙ୍କର ଜଣେ ଦୂର ସଂପର୍କୀୟ ମାମୁଁଙ୍କ ସହାୟତାରେ ବରହମ୍ପୁରରୁ ଧରିଆଣିଥିଲେ ଝିଅଟିଏ । ଦୁହିଁଙ୍କ ମଧ୍ୟରେ ବୟସର ବ୍ୟବଧାନ ଅନ୍ୟୁନ ୩୦ ବର୍ଷ ହେବ । ସେତେବେଳକୁ ଆନ୍ଦିଆ ଅଜାଙ୍କର କେଶର ଅର୍ଦ୍ଧାଧିକ ପକ୍ୱ ହୋଇସରିଲାଣି । ପଚାଶରୁ ଉର୍ଦ୍ଧ୍ୱ ହେଲାଣି ବୟସ । ଆମ ଗାଁ ମଠରେ ବରଣମାଳା ବଦଳେଇ ହୋଇଥିଲା ତାଙ୍କ ବିବାହ ।

ଆମ ହେତୁ ପାଇଲା ବେଳୁ ଆନ୍ଦିଆ ଅଜା ନଇଁ ପଡିଲେଣି । ହାତରେ ବଙ୍କୁଲି ବାଡି ଧରିଲେଣି । ପାକୁଆ ପାଟିରୁ ବାହାରୁ ଥିବା ଶବ୍ଦ ସବୁ ଅସ୍ପଷ୍ଟ ଲାଗିଲାଣି । ବାତପିତ୍ତ କଫ ଅସନ୍ତୁଳିତ ଲାଗିଲାଣି । ଦିନରାତି ଖୁଁ ଖୁଁ କାଶରେ ଅତିଷ୍ଠ ହେଲେଣି । ବରହମ୍ପୁରିଆଣୀ ଆଈର କହିବା ଅନୁସାରେ ଆନ୍ଦିଆ ଅଜାର ବୟସ ୩ କୋଡି କି ଚାରିକୋଡି ପାଖାପାଖି । ଆନ୍ଦିଆ ଅଜାର ଯିବାବୟସ ବେଳକୁ ବରହମ୍ପୁରିଆଣୀ ଆଈର ଯୁବାବୟସ । ୩୦ କି ୩୫ ଭିତରେ । ଯୌବନ ଯେମିତି ତାଙ୍କ ପାଖରୁ ନଯିବା ପାଇଁ ପଣ କରି ବସିଥିଲା । ସିଏ ଦିଶୁଥିଲା ଅପରୂପା । ଆମ ଗାଁର ଯେତେ ଝିଅ ବୋହୂ ଥିଲେ ସମସ୍ତଙ୍କଠାରୁ ସେ ନିଆରା ଥିଲା । ଗାଁ ଠୁଁ ତିନିକିଲୋମିଟର ଦୂରତ୍ୱରେ ପ୍ରବାହିତ ହେଉଥିବା ଗୋବରୀ ନଦୀ ଅତିକ୍ରମି ବାହାରକୁ ଯାଇଥିବା ଝିଅବୋହୂଙ୍କ ସଂଖ୍ୟା ଥିଲା ହାତ ଗଣତି । କିନ୍ତୁ ବରହମ୍ପୁରିଆଣୀ ଆଈ ଆସିଥିଲା ବାହାର ଜଗତରୁ । ତା ଚେହେରା ଚଳଣି ବାରି ହେଇପଡୁଥିଲା ଆମ ଗାଁ ଝିଅ ବୋହୂ ମଧ୍ୟରେ । ସେ ନାକ ଅଗରେ ପିନ୍ଧିଥିବା ଲବଙ୍ଗ କଡ଼ି ଦୁଇଟା ଆମ ଗାଁ ଝିଅବୋହୂଙ୍କ ପରିନଥିଲା । ନାସାର ସଂପୂର୍ଣ୍ଣ ଅଗ୍ରଭାଗ ମଣ୍ଡନ କରିଥିଲା ଲବଙ୍ଗ କଡ଼ି ଦୁଇଟା । ତା କଥା କହିବାର ଶୈଳୀ ବି ଥିଲା ନିଆରା । ଶାଢ଼ୀ ବି ପିନ୍ଧୁଥିଲା ଟିକେ ଭିନ୍ନ ଧରଣର । ପାଣିହାଣ୍ଡି କାଖ ପରିବର୍ତ୍ତେ ମୁଣ୍ଡରେ ବୋହି ଆଣୁଥିଲା । ସେ ଅଳସେଇ ନଥିଲା । ରୋଷେଇବାସ, ଘରଲିପିବା, ଲୁଗା କାଚିବା, ଗୁହାଳ

ଗୋବର କାଢ଼ିବା, ଗଛରେ ପାଣି ଦେବା, କୋଦାଳ ଧରି ମାଟି ହାଣିବା ଆଦି କୌଣସି କାର୍ଯ୍ୟରେ ସେ କେବେ କ୍ଳାନ୍ତି ଅନୁଭବ କରିବା କେହି ଦେଖିନାହାଁନ୍ତି। ଆନ୍ଦିଆ ଅଜା ଘର ପଛପଟକୁ ଲାଗି ଲମ୍ବିଥିଲା ଅଧା ଏକର ଜମିରେ ବିରି ଉପାଡିବା, ମୁଗ ଉପାଡିବା, ବିହନ ଉପାଡିବା, ତଳି ରୋଇବା, ଧାନ କାଟିବା, ମୁଣ୍ଡରେ ମୁଣ୍ଡେଇ କଳେଇ ଖଳାକୁ ଆଣିବା ପରି ଯାବତୀୟ କାମ ମଧ୍ୟ କରିବାକୁ ଦ୍ୱିଧାବୋଧ କରୁନଥିଲା।

ଆମ ଗାଁ ସମ୍ଭ୍ରାନ୍ତ କରଣମାନଙ୍କର ଗାଁ। ସ୍ତ୍ରୀ ଲୋକମାନେ ଜମିରେ କାମ କରିବାକୁ ଯାଉନଥିବାବେଳେ ସେ ପ୍ରଥମ କରି ଆନ୍ଦିଆ ଅଜା ସହ ବିଲକାମ କରିବାକୁ ବାହାରିଥିଲା। ଏଥିପାଇଁ ଗାଁ ପଞ୍ଚପର୍ଯ୍ୟନ୍ତ ବି କଥା ଯାଇଥିଲା। କିନ୍ତୁ ଶେଷରେ ବରହମ୍‌ପୁରିଆଣୀର ଅକାଟ୍ୟ ଯୁକ୍ତି ପାଖରେ ସମସ୍ତେ ଚୁପ୍ ପଡିଯାଇଥିଲେ। ନାକ ଅଗ ପର୍ଯ୍ୟନ୍ତ ଓଢ଼ଣି ଟାଣି ତାରି ଭିତରୁ ହାଉ ହାଉ ହୋଇ ବରହମ୍‌ପୁରିଆଣୀ ଆଈ କହିଲା - ସାଆନ୍ତ ଘର ସାଆନ୍ତାଣୀମାନେ ତାଙ୍କ ବାଡିରୁ ବରୁଗୁଡି, ବାଇଗଣ, ଲଙ୍କାମରିଚ ତୋଳୁ ନାହାଁନ୍ତି ? ସେଥିରେ କ'ଣ ତାଙ୍କ ମାନସମ୍ମାନ ତଳେ ପଡିଯାଉଛି ? ମୋ ଗେରସ୍ତ ଏକୁଟିଆ ନିପାରିଲା ମଣିଷ। ମୋ ଜମିରୁ ଯଦି ମୁଁ ମୁଗ, ବିରି ଉପାଡିଲି, ଧାନ କାଟି ଆଣିଲି, କି ଅପରାଧ ହେଲା ସାଆନ୍ତେ ?

ବରହମ୍‌ପୁରୀଆଣିର ପ୍ରଶ୍ନ ପାଇଁ ଜବାବ୍ ନଥିଲା ପଞ୍ଚଙ୍କ ମୁହଁରେ। ତା' ପରଠାରୁ ବରହମ୍‌ପୁରିଆଣୀ ଆଈର ଆତ୍ମବିଶ୍ୱାସ ଆହୁରି ବଢ଼ିଯାଇଥିଲା ସେ ଦିଗୁଣ ଉତ୍ସାହରେ ସେଇ ଜମି ଅଧମାଣକରେ ବର୍ଷସାରା କିଛି ନା କିଛି ଫସଲ ଉପୁଜେଇ ତା ଅଭାବି ସଂସାରର ଗୁଜରାଣ ମେଣ୍ଟାଇଲା।

ଆନ୍ଦିଆ ଅଜାର ବିଧିବଦ୍ଧ ଭାବେ କିଛି ରୋଜଗାର ନଥିଲା। ବଡ ଧରଣର ପୂଜାପାଠକୁ ସେ ପାରୁନଥିଲା। ପ୍ରତିଦିନ ସମସ୍ତଙ୍କ ଚଉଁରା ପୂଜା କରିବା ଥିଲା ତା ରୋଜଗାରର ପନ୍ଥା। ହାତରେ ଢ଼ାଳଟିଏ ଧରି ସେ ସାରା ଗାଁଟିର ତୁଳସୀ ଚଉଁରା ମୂଳେ ମୁନ୍ଦେ ମୁନ୍ଦେ ପାଣି ଢ଼ାଳି ତାଳିଟିଏ ମାରିଦିଏ ଓ ମନେ ମନେ ଗୁଣୁଗୁଣୁ ହୋଇ ସଂସ୍କୃତ ଶ୍ଳୋକ ପଦେ ଦୁଇପଦ ଗାଇଦିଏ ଓ ଦୁଇ ହାତ ଯୋଡି ନମସ୍କାର ହୋଇଥାଏ। ଏଇଟା ଥିଲା ତା'ର ନିତ୍ୟ ନୈମିତ୍ତିକ କାର୍ଯ୍ୟ। ମାସ ଶେଷରେ ପ୍ରତିଘରୁ ଯାହା ବିଦାକୀ ମିଳେ ସେଇଥିରେ ଚଳେ ତାଙ୍କ ସଂସାର। ଜମି ଖଣ୍ଡକ କେବଳ ବାଆକୁ ବତା।

ବରହମ୍ପୁରିଆଣୀ ଆଈ ସ୍ନେହୀ ମଣିଷଟିଏ ଥିଲା। ତା'ର ନିଜର କେହି ପିଲାଛୁଆ ନଥିଲେ ସତ କିନ୍ତୁ ସାରା ଗାଁଟା ଯାକ ଛୁଆଙ୍କର ଅଳିଅର୍ଦଳି ସେ ସହୁଥିଲା। ଏଥିପାଇଁ ଯେଉଁ ଗୋଟାଏ ବଡକାରଣ ଥିଲା ତା'ର ଶ୍ରେୟ ଯିବ ତା ବାଡି ପଟେ ଥିବା ତିନୋଟି ବୃକ୍ଷ ମହାତ୍ମାଙ୍କୁ। ଗୋଟାଏ ପିଜୁଳିଗଛ, ଗୋଟାଏ ବରକୋଳି ଗଛ ଓ ଅନ୍ୟଟି ହେଉଛି କାହିଁ କେଉଁ କାଳରୁ ତା ବାଡିପଟେ ଠିଆ ହୋଇଥିବା ସ୍ୱାଦିଷ୍ଟ ଆମ୍ବ ଗଛଟିଏ। ଏଇ ତିନୋଟି ଗଛର ଆକର୍ଷଣ ଆମମାନଙ୍କୁ ବରହମ୍ପୁରିଆଣୀ ଆଈ ସହ ସମ୍ବନ୍ଧିତ କରିଥିଲା। ବର୍ଷ ସାରା ଏହି ଗଛ ତିନୋଟି ଆମକୁ କିଛି ନା କିଛି ଖୋରାକ ଯୋଗାଉଥିଲା। ଶୀତ ଦିନେ ତା ବରକୋଳି ଗଛରେ ପତ୍ର ଗୋଟାକୁ କୋଳି ଗୋଟାଏ ହୋଇ ଡାଳ ପାଲା ସବୁ ନଇଁ ଆସେ ତଳକୁ। ସେ କୋଳିର ନିଆରା ସ୍ୱାଦ ଆମ ଗାଁର ଅନ୍ୟ କୌଣସି କୋଳିରେ ନଥାଏ। କୋଳିର ପର୍ବ ସରୁ ସରୁ ଆରମ୍ଭ ହୋଇଯାଏ ଆମ୍ବ ଉତ୍ସବ। ବଉଳରୁ ଚଣା ଗଳିବା ପାଖରୁ ପାଚିବା ପର୍ଯ୍ୟନ୍ତ। ବରହମ୍ପୁରିଆଣୀ ଆଈ ବାଡିରେ ଆମର ହୁଏ ମହୋତ୍ସବ। ଆଉ ପିଜୁଳି ଗଛଟା ତ ବର୍ଷସାରା ଐଶ୍ୱର୍ଯ୍ୟମୟୀ ହୋଇ ଦଣ୍ଡାୟମାନ ହୋଇଥାଏ ତା ବାଡିରେ।

ବରହମ୍ପୁରିଆଣୀ ଆଈର ନିଅଣ୍ଟିଲା ସଂସାର ପାଇଁ ଏଗୁଡିକ ରସଦ ଯୋଗାଇଥାଏ। ସିଏ କିନ୍ତୁ ଆମ ମାନଙ୍କଠାରୁ ପଇସାଟିଏ ନିଏ ନାହିଁ। ଏଇ ପ୍ରାଚୁର୍ଯ୍ୟମୟ ଦିନମାନଙ୍କରେ ଆମେ କେହି ଖାଲି ହାତରେ ତା ଦୁଆର ମୁହଁରୁ ଫେରିଆସିବା ମୋର ମନେ ପଡୁନାହିଁ।

ଶୈଶବର ସେଇ ସ୍ୱପ୍ନିଳ ଜଗତରେ ଥିବାବେଳେ ବରହମ୍ପୁରିଆଣୀର ବାତ୍ସଲ୍ୟ ମମତାରେ ଉବୁଟୁବୁ ହେଉଥିବାବେଳେ ତା ବ୍ୟକ୍ତିଗତ ଜୀବନ, ତା ଅତୀତ ବର୍ତ୍ତମାନ ଭବିଷ୍ୟତ ସମ୍ପର୍କରେ ମୋର କିଛି କୌତୁହଳ ନଥିଲା। ଆମ୍ବ ପିଜୁଳି ବରକୋଳିମୟ ଥିଲା ଜୀବନ। ନିଃସ୍ୱ ନିସମ୍ବଳ ନିରିମାଖୀ ଜୀବନ ବିତାଉଥିବା ବରହମ୍ପୁରିଆଣୀ ଆଈ ଆମମାନଙ୍କ ପାଇଁ ଥିଲା ପ୍ରାଚୁର୍ଯ୍ୟମୟୀ ଓ ଐଶ୍ୱର୍ଯ୍ୟମୟୀ ନାରୀଟିଏ। ତା ହୃଦୟଟା ସମୁଦ୍ର ଠାରୁ ଆହୁରି ସଂପ୍ରସାରିତ ମନେ ହେଉଥିଲା। ସେ କେବଳ ତା ଆମ୍ବ ଗଛ, ପିଜୁଳି ଗଛ ଓ ବରକୋଳି ଗଛ ସବୁ ଆମ ପାଇଁ ଉତ୍ସର୍ଗ କରିଥିଲା ତା ନୁହେଁ, ତା' ଘର ଅଗଣା, ତା କୋଳ ଉପରେ ଆମରଥିଲା ଅବାଧ ଅଧିକାର। ସେ ଅନାୟାସରେ ପରକୁ ଆପଣାର କରିପାରୁଥିଲା। ତା' କୋମଳ ମଧୁର ବ୍ୟବହାରରେ ସେ କିଣିନେଇ ଯାଉଥିଲା ସମସ୍ତଙ୍କୁ। ମୋ

ଶୈଶବର ସ୍ମୃତିମାନଙ୍କ ଗହଣରେ ବରହମ୍‌ପୁରିଆଣୀ ଆଈ ଏକ ସମ୍ଭ୍ରାନ୍ତ ସ୍ଥାନ ଦଖଲ କରିଥିଲା ।

ଗାଁ ସ୍କୁଲରେ ପାଠସାରି ମୁଁ ବାହାର ଜଗତକୁ ଯାତ୍ରା କଲି । ପଛରେ ପଡିରହିଲା ଶୈଶବର ସ୍ମୃତି । ଧୂଳିଖେଳ, ବାଲ୍ୟସାଥୀ, ଗାଁ ସ୍କୁଲ, ବରହମ୍‌ପୁରିଆଣୀ ଆଈ ଓ ତା'ର କୋଳିଗଛ, ଆମ୍ବଗଛ ଓ ପିଜୁଳି ଗଛ ।

ସ୍ନାତକୋତ୍ତର ଅଧ୍ୟୟନ ପାଇଁ ମୁଁ ଯେତେବେଳେ ବରହମ୍‌ପୁର ବିଶ୍ୱବିଦ୍ୟାଳୟରେ ପାଦଦେଲି, ମୋତେ ବେଶି ବେଶି ମନେ ପଡିଲା ବରହମ୍‌ପୁରିଆଣୀ ଆଈ । ଗାଁରେ ଥିବାବେଳେ ତା ଗାଁ କି ଘର ସଂପର୍କରେ କେହି କେବେ ତା ସହ କଥା ହେବାର ମୁଁ ଶୁଣିନଥିଲି । କିନ୍ତୁ ମୁଁ ବରହମ୍‌ପୁରରେ ତା ଅଞ୍ଚଳରେ ପାଠପଢୁଥିବାର ଜାଣିଲେ ସେ ନିଶ୍ଚୟ ଖୁସି ହେବ । ଏମିତି ଆବେଗଟିଏ ମୋ ଭିତରେ ଉବୁଟୁବୁ ହେଉଥିଲା । ବହୁଦିନ ହେଲା ଗାଁ ଛାଡିଥିଲେ ବି କେବଳ ଏଇ ଖବରଟା ତାକୁ ଦେବା ପାଇଁ ମୁଁ ରଜଛୁଟିରେ ଆସିଥିଲି ଗାଁକୁ । ମୁଁ ଉତ୍‌ଫୁଲ୍ଲିତ ହୋଇ କହିଲି -

ଆଈ, ମୁଁ ତମ ଗାଁରେ ପାଠ ପଢୁଛି । ବରହମ୍‌ପୁରରେ । କୋଉ ସାହିରେ ତୋ ଘର କହିଲୁ ।

କିନ୍ତୁ ମୋର ସବୁତକ ଉଦ୍‌ବେଗ ଉତ୍ସୁକତାକୁ ହିମଶୀତଳ କରିଦେଇ ସେ କହିଲା -

ମୋ ଘର ବରହମ୍‌ପୁର ନୁହେଁ । ମୁଁ ବିସ୍ମିତ ହୋଇ ଚାହିଁ ରହିଲି ତା ମୁହଁକୁ । ସେ କିଛି ସମୟ ନିରବ ରହି ମୁରୁକି ହସି କହିଲା - ମୋ ଘର ଆସ୍କା ।

ଅଥଚ ଗାଁ ସାରା ତାକୁ ବରହମ୍‌ପୁରିଆଣୀ ଡାକୁଥିଲେ ବି ସେ କେବେ ପ୍ରତିବାଦ କରିନାହିଁ । ଆରେ ଆସ୍କା ! ମୋ ସାଙ୍ଗ ନର୍ମଦାର ଘର ତ ଆସ୍କା । ସେ କୁମୁଟି ଘର ଝିଅ । ତୁ ଜାଣିଛୁ ତାକୁ ? ସେ କହିଲା - କୁମୁଟି ଘର ତ ଅନେକ ଅଛନ୍ତି । ତା ବାପା ନାଁ କହିଲେ ଜାଣିବି, ଆଜି କାଲିକା ଛୁଆଙ୍କୁ ମୁଁ କ'ଣ ଚିହ୍ନି ପାରିବି । ମୁଁ ତ କେବେ ଠୁଁ ଯାଇନି ଗାଁକୁ ।

କେବେଠୁଁ ନୁହେଁ, ବାହା ହୋଇ ଆସିଲା ପରଠୁଁ ସେ ଆଦୌ ଯାଇନାହିଁ ତା ଗାଁକୁ ।

ପ୍ରଥମ ଥର ପାଇଁ ବୋଧହୁଏ ସେ ତା ଗାଁ ସଂପର୍କରେ ସେ ମୋ ଠୁଁ କିଛି ଶୁଣିଲା । ତା ମୁହଁରେ ଉଛୁଳି ଉଠୁଥିବା ଉଲ୍ଲାସକୁ ମୁଁ ଠିକ୍ ଅନୁଭବ କଲି । ତାଙ୍କ

ଗାଁ ଝିଅଟା ମୋ ସାଙ୍ଗରେ ପଢୁଛି, ଏତିକି ଜାଣିବା ପରେ ମୋ ପ୍ରତି ତା'ର ସ୍ନେହ ମମତାର ମାତ୍ରା ବହୁଗୁଣିତ ହୋଇଗଲା। ମୁଁ ଯେମିତି ଆଉ ଆମ ଗାଁ ଝିଅ ନୁହେଁ। ତା ବାପ ଘର ଗାଁର ଝିଅ। ମୋ ପାଖରୁ ସେ ତା ଗାଁର ସବୁ ସମ୍ବାଦ ପାଇଯିବ। ମୋ ଦେହରୁ ଯେମିତି ତା ଗାଁ ମାଟିର ବାସ୍ନା ବାହାରୁଛି। ମୋ କଣ୍ଠରୁ ତା ଆତ୍ମୀୟ ସ୍ୱଜନଙ୍କ ସ୍ୱର ଶୁଭୁଛି। ଦୀର୍ଘଦିନ ଧରି ଯେଉଁ ଭାବ ଅବରୁଦ୍ଧ ହୋଇଥିଲା ତାହା ଯେମିତି ବିସ୍ତାରିତ ହୋଇଗଲା। ସେ ମୋ ପାଖରେ ଅହରହ ତା ଗାଁ କଥା ଗପିଚାଲିଲା, ତା ଗାଁ ସଂପର୍କରେ ତା'ର ଏ ଆବେଗ ଆତୁରତା ଲକ୍ଷ୍ୟକରି ମୁଁ କହିଲି, ଆଈ ତୋ'ର ତମ ଗାଁକୁ ଯିବାକୁ ଇଛା ହୁଏନାହିଁ? ଏ ସ୍ପର୍ଶକାତର ପ୍ରଶ୍ନଟି ଆଈର ହୃଦୟତନ୍ତ୍ରୀକୁ ଥରେଇ ଦେଲା। ତା ଆଖି କୋଣରୁ ଗଡ଼ିପଡ଼ିଲା ଦୁଇଧାର ଲୁହ। ସେ ତା କାନ୍ଧ ଉପରୁ କାନିଟା ଖସେଇ ମୁହଁ ଉପରେ ବୁଲେଇ ଆଣି କହିଲା – ମୁଁ ହତଭାଗିନୀଟା, ଜନ୍ମ ସମୟରେ ମୋ ମାଆକୁ ଖାଇଥିଲି। ବାପା ଆଉ ଗୋଟାଏ ବାହା ହେଲା। ମୋ ଉପରେ ସାବତ ମାଆର ଅତ୍ୟାଚାରକୁ ସେ ସହି ପାରିଲାନି। ଅନୁତାପ କରି କରି ସେ ଚାଲିଗଲା ସେ ପୁରକୁ। ସାବତ ମାଆ ତା ଧରମ ଭାଇ ସଙ୍ଗେ ମିଶି ମତେ ବିକି ଦେଲେ ତୋ ଅଜାକୁ। ଚାଳ ଛପରର ଘର ଡିହ ଖଣ୍ଡେ ଥିଲା। କିଏ ଜାଣେ, ସେ ସବୁ ଅଛି କି ନା। ଗଲେ ମୁଁ କେଉଁଠିକୁ ଯିବି?

ମୁଁ ଆଈ ମୁହଁରେ ହସ ଫୁଟେଇବା ପାଇଁ କହିଲି – ମୁଁ ତତେ ନେଇ ଥରେ ତମ ଗାଁକୁ ଯିବି। ନର୍ମଦା ମୋର ଭଲ ସାଙ୍ଗ। ଦରକାର ହେଲେ ଆମେ ତାଙ୍କ ଘରେ ରାତିରେ ରହି ତା ପରଦିନ ଫେରିଆସିବା।

ଭାବାବିଷ୍ଟ ହୋଇପଡ଼ିଥିଲା ଆଈ। ବୋଧହୁଏ ସାତତାଳ ପଙ୍କ ଓ ସାତ ତାଳ ପାଣି ଭିତରେ ପୋତି ଦେଇଥିବା ତା ବାଲ୍ୟ ଓ କିଶୋରୀ ଜୀବନର ସ୍ମୃତି ତାକୁ ବିଚଳିତ କଲା। ମୁହୂର୍ତ୍ତକ ପାଇଁ ସେଇ ସ୍ମୃତି ସବୁକୁ ଉଖାରି ନିଖାରୀ ସେ ଭିତରେ ଦରାଣ୍ଡି ହେଉଥିଲା ନିଜକୁ।

ତୁ ଯିବୁ ନା ଆଈ?

ସେ ଦରଦୀ କଣ୍ଠରେ କହିଲା, ମୋ ଜୀବନ ଧନ୍ୟ ହୋଇଯାଆନ୍ତା ଯଦି ଜୀବନରେ ଥରେ ମୁଁ ମୋ ଜନମ ମାଟିରେ ପାଦ ଦିଅନ୍ତି। ଧୀରେ ଧୀରେ ତା କଣ୍ଠ ବାଷ୍ପାକୁଳ ହୋଇଉଠୁଥିଲା। ମୁଁ ଆଉ ଅଧିକ କିଛି ନକହି ଫେରିଆସିଲି। ମନେ ମନେ ସଂକଳ୍ପ କଲି – ମୁଁ ଯେମିତି ହେଉ ଆଈକୁ ଥରେ ତା' ବାପ ଘର ଗାଁ ବୁଲେଇ ଆଣିବି।

କିନ୍ତୁ ପର ମୁହୂର୍ତ୍ତରେ ମୋ ପରୀକ୍ଷା, ଚାକିରି ପାଇଁ ପ୍ରସ୍ତୁତି, ଚାକିରି ପାଇଲା ପରେ କଲେଜ ଜଞ୍ଜାଳ, ବାହାଘର ଆଦି ଭିତରେ ମୁଁ ମୋ ପ୍ରତିଶ୍ରୁତି ରକ୍ଷା କରିପାରିନାହିଁ ସିନା କିନ୍ତୁ ଅହରହ ସେଇ ପ୍ରତିଶ୍ରୁତି ମୋ ସ୍ମୃତି କୋଷକୁ କ୍ଷତାକ୍ତ କରୁଥିଲା।

ମୁଁ ବହୁତ ଡେରି କରିଦେଲି। ବରହମ୍‌ପୁରିଆଣୀ ଆଈକୁ ମୁଁ ଆଉ କେବେ ବି ତା ଜନ୍ମମାଟିକୁ ନେଇପାରିବି ନାହିଁ। ବୋଉ ଠୁଁ ତା ମରିବା ଖବର ଶୁଣିବା ପରେ ଗଭୀର ପଶ୍ଚାତାପରେ ମୁଁ ବିଷଣ୍ଣ ହୋଇପଡିଲି। ବରହମ୍‌ପୁରିଆଣୀ ଆଈର ସ୍ମୃତିରେ ମୁଁ ଅନ୍ୟମନସ୍କ ଥିବାବେଳେ ବୋଉ ମୋତେ ଆଉ ଗୋଟାଏ ଚମକପ୍ରଦ ଖବରଟିଏ ଦେଲା। ବୋଉ ମୋତେ ଯାହାସବୁ କହିଲା ତା'ର ସାରାଂଶ ଥିଲା ଏମିତି। ଦୁଇବର୍ଷ ହେଲା ଆନ୍ଦିଆ ଅଜା ମରଣ ଶେଜରେ ପଡିଛି। ଖଗୁଆ ମଳିକ ଅଟୋରେ ବରହମ୍‌ପୁରିଆଣୀ ଆଈ ତାକୁ ମଝିରେ ମଝିରେ ଡାକ୍ତରଖାନା ନେଇଯାଏ। ତା'ରି ଭିତରେ ଖଗୁଆ ମଳିକ ସହ ତା'ର ସଂପର୍କ ବଢ଼ି ଗର୍ଭବତୀ ହୋଇ ପଡିଲା ବରହମ୍‌ପୁରିଆଣୀ। ଗର୍ଭଟା ହେଲେ ନଷ୍ଟ କରି ଦେଇଥା'ନ୍ତା ଚାଣ୍ଡାଳୁଣୀ। କାହାରି କଥା ଶୁଣିଲା ନାହିଁ। ପାଚି ଫଳି ପିଲାଟା ଜନ୍ମହେଲା। ଏତେ ବଡ ପାପ କେମିତି ଭଗବାନ୍ ସହିବେ, ସେଇ ଏନ୍ତୁଡି ଶାଳରେ ହତଭାଗିନୀଟାର ପ୍ରାଣ ଚାଲିଗଲା। ଏବେ ସାଇ ଭାଇ ଅଡି ବସିଛନ୍ତ। ତା ଶବଟାକୁ ଯେନ ତେନ ସତ୍କାର କରିଦେଲେ। ଛୁଆଟାକୁ ବ୍ରାହ୍ମଣ ଶାସନ ଭିତରେ ରଖେଇ ଦେଉନାହାଁନ୍ତି। ଖଗୁଆ ମଳିକ ସ୍ତ୍ରୀ ବି ବାଡି ପକେଇ ବସିଛି। ସେ ଛୁଆକୁ ଘରକୁ ପୂରେଇ ଦେବନି। ବୋଉର ମନ୍ତବ୍ୟ ଥିଲା - କଳଙ୍କିନୀଟା ମରିଗଲାନି ଯେ ଏଠି ମହାଭାରତ ଲଗେଇ ଦେଇଗଲା। ଶୁକୁଣୀ ଶୁଳୀ କଣ୍ଢୁରୁଣୀ ନେଇଯାଇଛି ଛୁଆକୁ। ଏଣେ ଆନ୍ଦିଆ ଅଜା ମରଣ ଶେଜରେ ଘଡଘଡ ହେଉଛି।

ବୋଉ ଆଉ କ'ଣ କହୁଛି ଶୁଣିବାକୁ ମୋର ଧୈର୍ଯ୍ୟ ନଥିଲା। ଅଧାପିଆ ଚା କପ୍‌ଟା ତଳେ ଥୋଇ ଦେଇ ମୁଁ ସେମିତି ବସିବା ଜାଗାରୁ ଉଠିପଡିଲି ଓ କି ଏକ ଅଦୃଶ୍ୟ ଶକ୍ତିର ତାଡନାରେ ଧାଇଁଗଲି ଦାଣ୍ଡକୁ। ସିଧା ପହଞ୍ଚିଗଲି ଶୁଳୀ ଘରେ।

ଶୁଳୀ ସଦ୍ୟଜାତ ଛୁଆଟାକୁ କୋଳରେ ଧରି ମାଟି ଅଗଣାରେ ଗୋଡ ଲମ୍ବେଇ ବସିଥିଲା ଓ ତୁଳା ଖଣ୍ଡକରେ ମିଶ୍ରିପାଣି ବୁଡେଇ ତା ପାଟିରେ ବିନ୍ଦୁ ବିନ୍ଦୁ କରି ଛାଡୁଥିଲା। ଛୁଆଟା ତା' ନାଲି ଟୁକୁଟୁକୁ ଓଠରେ ଚଁ ଚଁ କରି ଶୋଷି ନେଇ ଯାଉଥିଲା।

ମୁଁ ବୋଧେ ହିତାହିତ ଜ୍ଞାନ ଶୂନ୍ୟ ହୋଇପଡିଥିଲି। ଶୁଲୀର ପାଦ ପାଖରେ ଦୁଇ ଆଣ୍ଠୁମାଡି ବସିପଡି ଆକୁଳ ସ୍ୱରରେ କହିଲି - ଦେ ଦେ ଲୋ ଶୁଲୀ ଖୁଡି। ମତେ ସେ ଛୁଆଟାକୁ ଦେ। ମୁଁ ତାକୁ ପାଳିବି। ବରହମ୍‌ପୁରିଆଣୀ ଆଈ ମୋତେ ଭାରି ଭଲପାଉଥିଲା। ମୁଁ ତା ସନ୍ତକକୁ ଅତି ଆଦରରେ ବଡ କରିବି। ଶୁଲୀ ଆଶ୍ଚର୍ଯ୍ୟ ହୋଇ ମୋ ମୁହଁକୁ ଚାହିଁଲା। ମୁଁ ବିକଳ ହୋଇ ମୋ କାନି ପତେଇ ଦେଇ ସେମିତି ଆକୁଳ ସ୍ୱରରେ କହିଲି- ଦେ, ଲୋ ମତେ ସେ ପିଲାଟାକୁ ଦେ। ଯନ୍ତଚାଳିତପରି ଶୁଲୀ ଛୁଆଟାକୁ ବଢ଼େଇ ଦେଲା ମୋ ଆଡକୁ।

କୋଟିନିଧି ପାଇଲା ପରି ମୁଁ ତାକୁ କୋଳେଇ ନେଇ ବୋକ ପରେ ବୋକ ବର୍ଷିଦେଇଗଲି। ମୁଁ ବୋଧହୁଏ ମୁହୂର୍ତ୍ତକ ପାଇଁ ବାହ୍ୟଜ୍ଞାନ ଶୂନ୍ୟ ହୋଇପଡିଥିଲି। ମୋ କପାଳରେ କାହାର କରସ୍ପର୍ଶରେ ମୁଁ ସଂବିତ୍ ଫେରିଯାଇ ମୁହଁ ଉଠାଇ ଦେଖିଲି ସୁବ୍ରତ।

ମୁଗ୍ଧ ଦୃଷ୍ଟିରେ ସେ ଚାହିଁ ରହିଥିଲେ ଶିଶୁଟିକୁ। ସେ ଦୃଷ୍ଟିରୁ ଯେମିତି ଝରିପଡୁଥିଲା ଅସରା ଅସରା ଅମୃତ। ସେଇ ଅମୃତ ରାଶିରେ ଭିଜି ଯାଉଥିଲା କନ୍ୟା ସନ୍ତାନଟି। ସେ ସବୁ ଅନେକ ଦିନ ତଳର କଥା। ସେଇ କନ୍ୟାଟି ଏବେ ମୋ ଜୀବନର ସର୍ବସ୍ୱ। ମୋର ବର୍ତ୍ତମାନ, ମୋର ଭବିଷ୍ୟତ, ମୋର ସ୍ୱପ୍ନ, ମୋ କଳ୍ପନା, ମୋ ଦୁନିଆ। କ'ଣ ଏତେ ଭାବୁଛ ମାମା। ଦେଖିଲ ଏ ଶାଢ଼ୀରେ ମୁଁ କେମିତି ଦିଶୁଛି।

ପିଙ୍କିର କଣ୍ଠ ସ୍ୱରରେ ମୁଁ ତା ଆଡେ ଦୃଷ୍ଟି ଫେରେଇ ଚମକି ପଡିଲି। ପିଙ୍କି ପିନ୍ଧିଛି ଶାଢ଼ୀ। ତା କଲେଜରେ ବାର୍ଷିକ ଉତ୍ସବ ପାଇଁ। ଦିଶୁଛି ବରହମ୍‌ପୁରିଆଣୀ ଆଈର ପ୍ରତିରୂପ। ସେଇ ଆଖି, ସେଇ ନାକ, ସେଇ ଓଠ, ରଙ୍ଗଟା କିନ୍ତୁ ତା ଠାରୁ ତୋଫା, ତା' ନାକ ଅଗରେ ନ ଥିଲା ନାକଚଣା।

ଆବେଗ ପ୍ରବଣ ହୋଇ ମୁଁ ତାକୁ କୋଳେଇ ନେଲି, ଯେମିତି ଟୋଳି ଆଣିଥିଲି ଶୁଲି ଖୁଡି ପାଖରୁ। ଅକାରଣରେ ମୋ ଆଖିରୁ ଝରିପଡିଲା ଦୁଇ ଧାର ଲୁହ।

# ଚରମ ଅଭିମାନ

କୁଳୀନେତା ଗଣପତି ରାଓ ରୂପଧର ଆଡକୁ ପାଞ୍ଚଖଣ୍ଡ ଦୁଇହଜାର ଟଙ୍କା ବଢ଼େଇଦେଇ କହିଲା - ନେ ଏସବୁ ରଖ୍। ତୋ ପାଇଁ ଋକିରି ଖଣ୍ଡେର ବ୍ୟବସ୍ଥା ହୋଇଯିବ। ତୋ ବାପାପାଇଁ ଇନ୍ଦିରା ଆବାସ ଘର ବି ମିଳିବ। ତୁ କାହାକୁ କିଛି କହିବା ଦରକାର ନାଇଁ ରୂପଧର। ଗାଁର ମାନ ମହତ୍ ଗାଁରେ ଥାଉ।

ଆଶ୍ଚର୍ଯ୍ୟ ହୋଇଗଲା ରୂପଧର। ସେ କାହିଁକି ଗଣପତି ରାଓ ଠାରୁ ଟଙ୍କା ନେବ ? ସରକାର କାହିଁକି ତାକୁ ଋକିରି, ଇନ୍ଦିରା ଆବାସ ଦେବେ ? ସେ ବିସ୍ମୟ ବିସ୍ଫାରିତ ଦୃଷ୍ଟିରେ ଋହିଁ ରହିଲା ଗଣପତି ରାଓ ମୁହଁକୁ।

ଗଣପତି ରାଓ ଆଉଟିକେ ଲାଗିଆସିଲା ତା' ପାଖକୁ। ଆନ୍ତରିକତାର ଅଭିନୟ କରି ନରମ ଗଳାରେ କହିଲା - ଦେଖ୍ ରୂପଧର, ଝିଅଟାକୁ ତୁ ଭଲ ପାଉଥିଲୁ, ସେ ତୋ ମାମୁର ବେଟି। ତାକୁ ନେଇ ଟିଭି, ରେଡିଓ ଖରବକାଗଜରେ ଏମିତି ଚର୍ଚ୍ଚା ହେଉଛି। ଥାନା କୋର୍ଟ କଚେରୀ ଡାକ୍ତରଖାନା ବାଲା ତାକୁ ଏତେ ହିନସ୍ତା କରୁଛନ୍ତି ତତେ କ'ଣ ଭଲ ଲାଗୁଛି ?

ଅସହାୟ କଣ୍ଠରେ ରୂପଧର କହିଲା - ମୁଁ କ'ଣ କରିବି। ଗମ୍ଭୀର କଣ୍ଠରେ

କହିଲା ଗଣପତି, ତୁ ଖାଲି ପାଟିଖୋଲିଲେ ଥରେ ତା' ପେଟରେ ଥିବା ପିଲାର ବାପ ବୋଲି କହିଦେଲେ ସବୁ ସମସ୍ୟାର ସମାଧାନ ହୋଇଯିବ।

ରୂପଧରର ମୁଣ୍ଡ ଗୋଳମାଳ ହୋଇଗଲା। ସେ ଭଲପାଉଥିଲା ରଦ୍‌ମାକୁ। ସାନବେଳୁ, ଧୂଳିଖେଳ ଖେଳିବା ବେଳଠୁଁ। ଗାଁ ସ୍କୁଲରେ ପଢୁଥିଲେ ଦୁହେଁ, ତା'ର ଦୁଇଟା କ୍ଲାସ ତଳେ ପଢୁଥିଲା ରଦ୍‌ମା। ଗାଁ ସ୍କୁଲରୁ ପାଠସାରି ହାଇସ୍କୁଲ ପାଠ ପାଇଁ ବାହାରକୁ ଗଲା ରୂପଧର, ଦୁଇବର୍ଷ ପରେ ରଦ୍‌ମା ବି ଗଲା କନ୍ୟାଶ୍ରମ ଉଚ୍ଚ ଶିକ୍ଷା ପାଇଁ। ଏବର୍ଷ ରୂପଧରର +୨ ପରୀକ୍ଷା ବେଳକୁ ରଦ୍‌ମାର ଦଶମ ପରୀକ୍ଷା। ଏବେ ଦୁହିଁଙ୍କ ମୁଣ୍ଡ ଉପରେ ଛଡ଼ିପଡିଛି ଆକାଶ। ରଦ୍‌ମା ଗର୍ଭବତୀ। ତିନିମାସ ତଳେ ତାକୁ ଏକୁଟିଆ ପାଇ ତା ସହ ଦୁର୍ବୃତ୍ତମାନେ ଦୁଷ୍କର୍ମ କରିଥିଲେ, ତାହା ପୁଣି ପୋଲିସ୍ ପୋଷାକରେ। ସେହି ଦିନଠୁଁ ସେ ଅଛି ସରକାରୀ ହେପାଜତ୍‌ରେ। କେବେ ଡାକ୍ତରଖାନାରେ ତ ପୁଣି କେବେ ସର୍ଟ ଷ୍ଟେ ହୋମ୍‌ରେ। ପୁଣି କେବେ କୋର୍ଟ କଚେରୀ ଆଉ ଥାନା। ଏନ୍.ଜି.ଓ ଦଳ ରାଜନୀତିଆ ଲୋକ ଦଳଦଳ ହୋଇ ଆସୁଛନ୍ତି ତା ପାଖକୁ। ସାମ୍ବାଦିକମାନଙ୍କର ତ ଯେମିତି ମହୋତ୍ସବ ଲାଗିଛି। ପ୍ରତିଦିନ ଗୋଟାଏ ଗୋଟାଏ ନୂଆ କଥା ଟିଭି, ରେଡିଓ ଓ ଖବରକାଗଜମାନଙ୍କରେ। କିନ୍ତୁ ଥରୁଟିଏ ବି ରୂପଧରକୁ ତା ସହ ଭେଟିବାକୁ ଦିଆଯାଉନି। ରଦ୍‌ମା ରୂପଧରର ମାମାର ବେଟୀ। ତା' ଉପରେ ତା'ର ପ୍ରଥମ ଅଧିକାର। ସେ ତାକୁ ବିଭାହେବାପାଇଁ ମନାକଲେ ରଦ୍‌ମା ଆଉ କାହାକୁ ବାହାହେବ। ଏ ହେଉଛି ତାଙ୍କ ସମାଜର ବେଭାର। ସେ କାହିଁକି ମନା କରିବ? ରଦ୍‌ମା ତା'ର, ସଂପୂର୍ଣ୍ଣ ଭାବରେ ତା'ର ଅଧିକାର ରଦ୍‌ମା ଉପରେ। କେହି ତାକୁ ତା'ଠାରୁ ଛଡେଇ ନେଇପାରିବେନି। ଅଥଚ ଚାରିମାସ କଟିଗଲାଣି, ତାକୁ ରଦ୍‌ମା ସହ ଦେଖାକରିବାକୁ ଦିଆଯାଉନି। କି ଫୋନ୍‌ରେ ବି କଥା ହୋଇପାରୁନି। ୨୪ ଘଣ୍ଟା ତା ପାଖରେ ପୋଲିସ୍ ପହରା। ମାଆ ବାପାଙ୍କୁ ତ ଝିଅଟାକୁ ଦେଖିବାକୁ ମିଳିନି। ତା କଥା ପଚାରେ କିଏ?

ଯାହା ବି ହେଉ ରଦ୍‌ମା ଯେ ଭଲରେ ନାହିଁ, ଏ କଥା ସେ ଠିକ୍ ଅନୁଭବ କରିପାରୁଛି। ତା ସାଙ୍ଗରେ ଯାହା ସବୁ ଘଟଣା ଘଟୁଛି, ସିଏ ଯଦି ରଦ୍‌ମା ପାଖରେ ଥାଆନ୍ତା, ରଦ୍‌ମାକୁ ଆଦୌ କଷ୍ଟ ହୋଇନଥାନ୍ତା। ତା କଷ୍ଟକୁ ପିଇଯାଇଥା'ନ୍ତା ରୂପଧର। କିନ୍ତୁ ସେ କିଛି କରିପାରୁନାହିଁ ରଦ୍‌ମା ପାଇଁ। ରଦ୍‌ମା ଏବେ ହୋଇଛି ସରକାରଙ୍କ ସଂପତ୍ତି। ତା'ର ନିଜସ୍ୱ ବ୍ୟକ୍ତିତ୍ୱ ବୋଲି କିଛିନାହିଁ। ସରକାରଙ୍କ

ଅନୁମତି ନନେଇ ସେ କିଛି କରିପାରିବନାହିଁ। ତାକୁ କେହି ଦେଖା କରିପାରିବେନି। ବିଦ୍ରୋହ କରିଉଠୁଥିଲା ରୂପଧରର କଅଁଳ ମନ। ଏବେ ପୁଣି ସରକାରୀ ଘର ଲୋକେ କହିଲେଣି ସେ ପାଗଳୀ। ତା'ର ମୁଣ୍ଡ ଦୋଷ ଅଛି। ତା' କଥାର ଓ କାମର କିଛି ତାଳମେଳ ରହୁନାହିଁ। ତାକୁ ଏବେ ମେଣ୍ଟାଲ ହସ୍‌ପିଟାଲ ନେବେ ବୋଲି ଟିଭି, ଖବରକାଗଜ ସମ୍ବାଦ ଦେଉଥିଲା। ସେ ଅନ୍ୟମନସ୍କ ହୋଇପଡିଲା।

ଗଣପତି ଛାଡିବା ଲୋକ ନଥିଲା। ରୂପଧରର କୋମଳ ଭାବନା ଉପରେ ଚତୁରତାରସହ ଶକ୍ତ ଆଘାତଟିଏ ଦେଇ କହିଲା, ତୋ'ର ପଦେ କଥାରେ ତୋ ରଦ୍‌ମାର ଜୀବନ ମାନ୍ ଇଜ୍ଜତ୍ ସବୁ ରହିଯିବରେ ରୂପଧର। ଝିଅଟାକୁ ତା' ଘରକୁ ପଠେଇ ଦେବେ। ତିନିମାସ ହେଲା କେତେ କଷ୍ଟ ପାଉଛି ଝିଅଟା। ପୋଲିସ୍ ବାଲା ତ ସରକାର ଘର ଗେହ୍ଲାପୁଅ। ସେମାନଙ୍କୁ ବଞ୍ଚେଇବାକୁ ଝିଅଟାର ଜୀବନ ନେଇଯିବେରେ। ହାର୍ଟଫେଲ୍‌ରେ ମରିଗଲା ବୋଲି କହିବେ।

ସତେ ଯେମିତି ତା କଲିଜା ଭିତରଟାକୁ କେହିଟାଣି ଓଟାରି ଛିଣ୍ଡେଇ ଦେଲା ତା' ଛାତି ଭିତରୁ। ସେ ଅବ୍ୟକ୍ତ ଆର୍ତ୍ତନାଦଟାଏ କଲା। ରଦ୍‌ମା ବିନା ସେ ବଞ୍ଚିପାରିବନି। ତା' ମନରେ ହୃଦୟରେ ଆତ୍ମାରେ ଶିରା ପ୍ରଶିରାରେ ସ୍ନାୟୁ କଣିକାରେ ବସା ବାନ୍ଧିଛି ରଦ୍‌ମା। ତା ଚିନ୍ତା ଚେତନା ସ୍ୱପ୍ନ କଳ୍ପନା ସବୁ କେବଳ ରଦ୍‌ମା ମୟ। ଏ ତିନିମାସ କାଳ ସେ କେମିତି ବଞ୍ଚିଛି ସେ କଥା କେବଳ ଈଶ୍ୱର ଜାଣିଛନ୍ତି। ତା'ର ପଦେ କଥାରେ ଯଦି ରଦ୍‌ମାକୁ ସେମାନେ ମୁକ୍ତି ଦେଇଦେବେ, ତେବେ କ୍ଷତି କ'ଣ? ଥରେ ସେମାନଙ୍କ କବଳରୁ ବାହାରି ଆସିଲେ ରଦ୍‌ମାକୁ ଆଉ କେହି ତା' ଠୁଁ ଅଲଗା କରିପାରିବେ ନାହିଁ।

ଗଣପତି ବାଁ ହାତରେ ଖପ୍‌କିନା ରୂପଧରର ଡାହାଣ ହାତ କଚଟି ଧରିନେଲା, ଡାହାଣ ହାତରେ ଧରିଥିବା ଟଙ୍କା ଗୁଡିକୁ ତା' ହାତରେ ଗୁଞ୍ଜିଦେଇ କହିଲା, ନେ, ନେ, ତୁ ଏତକ ରଖିଥା। ଆଉ ତୋର ଯାହା କହିବା କଥା କାଗଜ ଖଣ୍ଡକରେ ଲେଖିଦେ।

ବିରକ୍ତ ହୋଇ କହିଲା ରୂପଧର। ନାଁ ନାଁ ମୋର ଟଙ୍କା କ'ଣ ହେବ ଆଜ୍ଞା? ମୋର ରଦ୍‌ମା ଦରକାର। ସେ ଏତେ କଷ୍ଟ ପାଉଛି, ମୁଁ ସହିପାରୁନି। ଏଥର ସତକୁ ସତ କାନ୍ଦି ପକାଇଲା ରୂପଧର।

ଉତ୍ସାହିତ ହେଲା ଗଣପତି। ପଇସା ତକ ରୂପଧରର ଛାତି ପକେଟରେ ଭରିଦେଇ କହିଲା – ପଇସା ବହୁତ କାମରେ ଲାଗିବରେ ଭକୁଆ। ତୋ ବାପାମାଆ

ତୋ ରଦ୍‌ମାକୁ କ'ଣ ବୋହୂ କରିନେବେ ଭାବିଛୁ? ତୁ ତାକୁ ଧରି ଭୁବନେଶ୍ୱର ପଳା। ସେଇଟି ରହିବୁ। ତୋ ପାଇଁ ସରକାର ସବୁ ବ୍ୟବସ୍ଥା କରିଦେବେ। ରହିବାକୁ ଘର, ତୋ ପାଇଁ ଚାକିରି। ତୋ ରଦ୍‌ମାର ପାଠପଢ଼ା। ସବୁ କିଛି।

ପ୍ରଥମରୁ ଗଣପତି ପ୍ରତି ଯେତିକି ଅସହିଷ୍ଣୁ ହେଉଥିଲା, ସେ ଭାବ ଟିକେ ପ୍ରଶମିତ ହେଲା ରୂପଧରର। ସେ କିଛି ଖରାପ କଥା କହୁନି ତ! ପକେଟରେ ପଶିଥିବା ଟଙ୍କା ଗୁଡାକ ବି ତାକୁ ଆଉ ଅଛୁଆଁ ଲାଗୁନଥିଲା। ଏଇ ଟଙ୍କାରେ ସେ ରଦ୍‌ମାପାଇଁ ସୁଖ କିଣିବ। ଶାନ୍ତି କଣିବ। ତାକୁ ବଦନାମ୍‌ରୁ ମୁକ୍ତି ଦବ। ସେମାନେ ସ୍ୱଭାବିକ ଜୀବନ ବଞ୍ଚିବେ। ରଦ୍‌ମାକୁ ନେଇ ପ୍ରତିଦିନ ପୋଖରୀ ତୁଠ ଠୁଁ ବିଧାନସଭା ଯାଏ ସବୁଠି ସେଇ ଚର୍ଚ୍ଚା। ସେ ଅସନା ଚର୍ଚ୍ଚା ଜମା ତାକୁ ଭଲ ଲାଗୁନାହିଁ। ସେ ଚାହୁଁଥିଲା ଏସବୁର ଅନ୍ତ ହେଉ।

ଗଣପତି ତା ହାତକୁ କାଗଜ ଖଣ୍ଡେ ବଢ଼େଇ ଦେଇ କହିଲା - ନେ - ଏଥିରେ ସବୁ ଲେଖା ହୋଇଛି, ତୁ ଯଦି ରଦ୍‌ମାର ମଙ୍ଗଳ ଚାହୁଁ, ତା'ର ମୁକ୍ତି ଚାହୁଁ ଏଥିରେ ସନ୍ତକ କରିଦେ। ପଢ଼ ଏ କାଗଜଟା ଭଲକରି।

ଥର ଥର ହାତରେ ରୂପଧର ତା ହାତରୁ କାଗଜଟାକୁ ଆଣି ଆଖି ବୁଲେଇଲା, ତା ଲୁହ ସାଲୁବାଲୁ ଆଖିରେ ସବୁକିଛି ଜାଲୁଜାଲୁଆ ଦିଶିଲା। ଭଲଭାବେ ପଢ଼ିବାପାଇଁ ତା'ର ଧୈର୍ଯ୍ୟ ନଥିଲା, ସେମିତି ଠିଆ ଠିଆ ବଙ୍କା ତେଢ଼ା ଅକ୍ଷରରେ ତଳେ ତା ନାଁ ଦସ୍ତଖତ କରି ବଢ଼େଇ ଦେଲା ଗଣପତି ହାତକୁ।

ସଂଧ୍ୟା ସୁଦ୍ଧା ସାରା ଓଡ଼ିଶା ହୁଲସ୍ଥୁଲ୍ ହୋଇସାରିଥିଲା। ରଦ୍‌ମା କରିଥିବା ଅଭିଯୋଗ ଭିତ୍ତିହୀନ। ତା' ପ୍ରତି କୌଣସି ଗଣ ଦୁଷ୍କର୍ମ ହୋଇନାହିଁ। ତା' ଗର୍ଭରେ ବଢୁଥିବା ସନ୍ତାନର ପିତୃତ୍ୱକୁ ତା ପ୍ରେମିକ ସ୍ୱୀକାର କରିଛି। ଦୁହିଁଙ୍କ ଭିତରେ ଉପୁଜିଥିବା ସାମୟିକ ମନୋମାଳିନ୍ୟ ହେତୁ ସେ ନିଜ ପୋଷାକ ନିଜ ହାତରେ ଚିରି ଦେଇଥିଲା। ଚିରା ପୋଷାକରେ ଘରକୁ ଫେରି ମାଆ ବାପାଙ୍କର ଗୁଡାଏ ପ୍ରଶ୍ନର ଶିକାର ହେବା ଆଶଙ୍କାରେ ସେମାନେ ଦୁହେଁ ମିଶି ପୋଲିସ୍‌ର ନାଁ କହିବାପାଇଁ ସ୍ଥିର କରିଥିଲେ।

ରୂପଧର କାନରେ ପଡ଼ିଲା ସମ୍ବାଦ। ସେ ସ୍ତବ୍ଧ ହୋଇଗଲା। ଲୋକ ଲଜ୍ଜ୍ୟାରୁ ରଦ୍‌ମାକୁ ବଞ୍ଚାଇବାକୁ ଯେଉଁ ଛୋଟ ମିଥ୍ୟାଟିର ଆଶ୍ରୟ ନେଇଥିଲା, ତାହା ମହାମିଥ୍ୟା ହୋଇ ସତ୍ୟର କଣ୍ଠରୋଧ କରୁଛି। ଏବେ ନିଷ୍ପାପ ରଦ୍‌ମା ଚରିତ୍ରରେ ଯେଉଁ ଗଭୀର କଳାଦାଗ ଲାଗିଗଲା, ତାକୁ ଧୋଇବାପାଇଁ ସାତ ସମୁଦ୍ର ତେର

ନଈର ଜଳରାଶି ବି ନିଅଣ୍ଟ ପଡିଯିବ। ଛାତି କୋରି ହୋଇ ଯାଉଥିଲା ରୂପଧରର। ସେ ଏ କ'ଣ କଲା ? ରଦ୍‌ମା କ'ଣ ତାକୁ କ୍ଷମା ଦେବ ? ସେ ଧର୍ତ୍ତବ୍ୟ ଅପରାଧଟିଏ କରିଛି, ଅପରାଧ ତ ନୁହେଁ ମହାପାପ କରିଛି ? ଏ ପାପର କ୍ଷମା ନାହିଁ।

ରଦ୍‌ମା ଉପରେ ତା'ର ଭରସା ଥିଲା। ତା' ମନର କଥା କେହି ବୁଝନ୍ତୁ ନ ବୁଝନ୍ତୁ ରଦ୍‌ମା ବୁଝିବ। ତା' ବିବଶତାକୁ ସେ ଭଲଭାବରେ ବୁଝେଇ ଦେଇପାରିବ ରଦ୍‌ମାକୁ। ସେ ଯାହା କିଛି କରିଛି, ସେ ତା ପ୍ରେମ ପାଇଁ କରିଛି। ସେ ରଦ୍‌ମାକୁ ଭଲପାଏ। ଜୀବନଠୁଁ ବଳକା। ଠିକ୍ ଯେମିତି ପାହାଡ ଭଲପାଏ ଝରଣାକୁ, ନଦୀ ଭଲପାଏ ସମୁଦ୍ରକୁ। ଜଙ୍ଗଲ ଭଲପାଏ ଗଛଲତାକୁ। ଆକାଶ ଭଲପାଏ ସୂର୍ଯ୍ୟ ଚନ୍ଦ୍ର ଗ୍ରହ ନକ୍ଷତ୍ରକୁ। ରାକ୍ଷସମାନଙ୍କ ଗୁମ୍ଫାରୁ ସେ ତା' ସ୍ୱପ୍ନର ରାଜକୁମାରୀକୁ ଉଦ୍ଧାର କରିବା ପାଇଁ ଆଉ କୌଣସି ରାସ୍ତା ତା'ର ନଥିଲା। ସେ ନିରୁପାୟ ଥିଲା। ରଦ୍‌ମା ଜୀବନ ବଦଳରେ ପଦେ ମିଛ କଥାକୁ ସେ ସେମିତି କିଛି ମହାପାପ ଭାବୁନଥିଲା ସେତେବେଳେ। କିନ୍ତୁ ଏବେ ସବୁକିଛି ଓଲଟପାଲଟ ହୋଇଗଲା। ରୂପଧରର ସ୍ୱପ୍ନର ଇମାରତ୍ ଭାଙ୍ଗି ଚୁରମାର୍ ହୋଇଗଲା। ଅଭିମାନିନୀ ରଦ୍‌ମା ଏମିତି କାଣ୍ଡଟାଏ କରିବସିଲା ଯେ ପୃଥିବୀ ସ୍ତବ୍ଧ ହୋଇଗଲା। ଫାଟିଗଲା ଆକାଶର ଛାତି। ଗୁମୁରି ଗୁମୁରି କାନ୍ଦିଲେ ଗଛଲତା ନଦୀ ନାଳ ପାହାଡ ପର୍ବତ।

ରୂପଧର ପାଖରୁ କପଟକରି ମିଥ୍ୟା ବୟାନ ନେବା ପରେ ଗଳାରେ ହଳାହଳ ବିଷ ଧାରଣ କରିଥିବା ମଣିଷମାନେ ଅମୃତବର୍ଷୀ ହେବାର ଛଳନା କଲେ। ମଧୁକ୍ଷରାର ଅଭିନୟ କଲେ। ପାପୀମାନଙ୍କର ପାପ ପ୍ରକ୍ଷାଳନ ହୋଇଗଲା। ସେମାନେ ନିର୍ଦ୍ଦୋଷ ବୋଲାଇ ହେଲେ। ଅଥଚ ଜଗତ ଯାକର ନିନ୍ଦା ଅପବାଦ କଳଙ୍କର କାଳିମା ଅଜାଡ଼ି ହୋଇପଡିଲା ବିଚାରି ରଦ୍‌ମା ଉପରେ। ଘୃଣା ତାଚ୍ଛଲ୍ୟ ଗାଳି ଟାହିଟାପରାରର ତୀର ସବୁ ଗଳିଗଲେ ତା ଦେହରେ। କିଏ ନିଆଁ ହୋଇ ତାକୁ ଜାଳିଲା ଆଉ କିଏ ଜହର ହୋଇ ତାକୁ ଦହିଲା। ଶତ ବୃଷ୍ଟିକର ଦଂଶନ ଜ୍ୱାଳା ତା ଆତ୍ମସତ୍ତାକୁ ଜର୍ଜରିତ କଲେ। ସେ କାହାକୁ ମୁହଁ ଟେକି ଚାହିଁ ପାରିଲା ନାହିଁ। ଅଭିମାନ ହିମାଳୟ ପର୍ବତର ରୂପ ନେଲା। ତା' ପାଟିରେ ଯେମିତି ଅବାଜକ ପଡିଗଲା, ସେ ପୋଲିସ୍‌ର ଜେରା ଜୁଲମ୍ ସହୁଥିଲା। ତାକୁ ଜୀବନ୍ତ ବ୍ୟବଚ୍ଛେଦ କରୁଥିବା ଓକିଲମାନଙ୍କର ଲାଞ୍ଛନାକୁ ବରଦାସ୍ତ କରୁଥିଲା, ରାଜନେତାମାନଙ୍କର ଅଭିନୟକୁ ହଜମ କରୁଥିଲା, ସାମ୍ବାଦିକମାନଙ୍କର ଅଶ୍ଳୀଳ ଉତ୍ପୀଡନରେ କାଠେଇ ଯାଉଥିଲା। ସେ ତଥାପି ଆଶାବାଦୀ ଥିଲା ଯେ ସତ୍ୟ ତା ସପକ୍ଷରେ ଅଛି। ସେ

ନ୍ୟାୟ ପାଇବ ନିଶ୍ଚୟ। ଦୃଷ୍କୃତମାନେ ଶାସ୍ତିପାଇବେ। ଦୃଢ଼ତାର ସହ ସେ କହୁଥିଲା, ଚାରିଜଣ ଦୁଷ୍କର୍ମକାରୀଙ୍କୁ ନହେଲେ ବି ଜଣକୁ ସେ ନିଶ୍ଚୟ ଚିହ୍ନିବ, ଯାହାର ମୁହଁରେ ଥିଲା କଳା ଭାଉ୍ତୁଡିଟିଏ ଟିଆଇ ପ୍ୟାରେଡ୍‌ରୁ ସେ ତା ସାର୍ଟ କଲର ଧରି ଝିଙ୍କିଆଣିବ। କିନ୍ତୁ ସେ ସୁଯୋଗ ତାକୁ ଦିଆଗଲାନାହିଁ। ସେମାନଙ୍କୁ ଘଣ୍ଟ ଘୋଡାଗଲା। ନିର୍ଦ୍ଦୋଷ ସାବ୍ୟସ୍ତ କରାଗଲା। ସବୁଠାରୁ ଦୁର୍ଭାଗ୍ୟର କଥା, ଯାହାର ପ୍ରେମ ଓ ଭଲପାଇବା ଉପରେ ଭରସା କରି ସେ ସତ୍ୟପାଇଁ ନ୍ୟାୟପାଇଁ ଲଢୁଥିଲା, ସିଏ ତା ପ୍ରତି ବିଶ୍ୱାସ ଘାତକତା କରିଛି, ତା ମୁହଁରେ ଆଙ୍କି ଦେଇଛି କଳଙ୍କର ଟୀକା। ସେ ଟୀକା ଏତେ ଗଭୀର ଯେ ସାତଜନ୍ମ ପର୍ଯ୍ୟନ୍ତ ସେ ଟୀକା ଲିଭିବାର ନୁହେଁ। ତା ମନୋବଳ ଭାଙ୍ଗିଯାଇଛି। ଯେଉଁ ଆତ୍ମ ବିଶ୍ୱାସରେ ସେ ୧୦୦ଦିନ କାଳ ଯୁଝି ଆସୁଥିଲା, ଏ କଠିନ ପରୀକ୍ଷାରୁ ଉତ୍ତୀର୍ଣ୍ଣ ହେବାପରେ ଯେଉଁ ସ୍ୱପ୍ନର ରାଜକୁମାରକୁ ନେଇ ସେ ପରୀରାଇଜରେ ମଧୁର କଳ୍ପନାରେ ମସ୍‌ଗୁଲ ଥିଲା, ସେଠାରୁ ଖସିପଡି ରସାତଳଗାମୀ ହେବାପାଇଁ ତାକୁ ମୁହୂର୍ତ୍ତଟିଏ ଲାଗିଲାନାହିଁ। କୁଢ଼ କୁଢ଼ ଘୃଣା, ତାଛଲ୍ୟ, ଅସହ୍ୟ ଅସହିଷ୍ଣୁତାର ଛେପ ଖଙ୍କାରରେ ତା ଶରୀର ଜୁଡୁବୁଡୁ ହୋଇଗଲା। ଦୁଷ୍କୃତମାନଙ୍କର ଦୁଷ୍କର୍ମକୁ ତ ସହ୍ୟକରି ନେଇଥିଲା, ନ୍ୟାୟ ପାଇବା ଆଶାରେ। ତା ପ୍ରେମ ଓ ଭଲ ପାଇବା ଉପରେ ଆସ୍ଥା ରଖି। ଯେଉଁ ଟାଣପଣରେ ସେ ୧୦୦ଦିନ ପର୍ଯ୍ୟନ୍ତ ବଞ୍ଚିରହିଥିଲା ତାହା ରଟ ରଟ ଛିଣ୍ଡି ଗଲା। ଜୀବନ ତୁଚ୍ଛ ଲାଗିଲା। ବିଷପିତା ଲାଗିଲା ବଞ୍ଚିବା। ମରଣ ତାକୁ ହାତଠାରି ଡାକିଲା। ସେ ଆଉ ଚାହିଁଲା ନାହିଁ ଏ ଅକୃତଜ୍ଞ ଦୁନିଆରେ ଆଉ ବଞ୍ଚି ରହିବାପାଇଁ । ମିଥ୍ୟା ପ୍ରତାରଣା ପୂର୍ଣ୍ଣ ଆସୁରିକ ପ୍ରବୃତ୍ତିର ପରିଧି ଭିତରେ ସେ ଅଣ ନିଃଶ୍ୱାସୀ ହୋଇପଡିଲା।

ରଦ୍‌ମା ଫେରି ଆସିବା ପରେ ରୂପଧର ଖୁବ୍ ଆଶାୟୀ ହୋଇପଡିଲା। ଦୀର୍ଘ ତିନିମାସରୁ ଉର୍ଦ୍ଧ୍ୱ ବିତିଗଲାଣି ଏ ଭିତରେ। ତିନିଯୁଗ ପରିଲାଗୁଛି। ଶେଷରେ ତା'ର ପଦେ କଥା ଓ ଗୋଟାଏ ସନ୍ତକରେ ରଦ୍‌ମା ଫେରି ଆସିଛି। ଏହାଠାରୁ ବଳି ସୁଖ ଆନନ୍ଦ ଆଉ କ'ଣ ହୋଇପାରେ ତା ପାଇଁ। ରଦ୍‌ମା ନ ଥିବା ବେଳର ସକଳ ବେଦନା ଗୋଟାଏ ମୁହୂର୍ତ୍ତରେ ଦୂରୀଭୂତ ହୋଇଗଲା। ଅସୁମାରୀ ଆଶା ଆନନ୍ଦ ଆବେଗ ଉତ୍ତେଜନାରେ ସେ ଉଲ୍ଲସିତ ହୋଇପଡିଲା। ସେ ବିଷ ପିଇଯିବ ନୀଳକଣ୍ଠ ପରି, ରଦ୍‌ମା ତାପାଇଁ ଗଙ୍ଗାପରି ପବିତ୍ର। ସେ ମାନିବ ନାହିଁ କାହା କଥା। ରଦ୍‌ମା ତା ପ୍ରାଣ। ସେ ତାକୁ ଆପଣେଇବ। ଆଗ ଅପେକ୍ଷା ଆହୁରି ବେଶି ଭଲପାଇବା ଦେବ।

ରଦ୍‌ମା ଭଲପାଏ ଗୋଲାପ ଫୁଲ। ସବୁଥର ପରି ଏଥର ବି ସେ ତା ଅଗଣାର ଫୁଲ କୁଣ୍ଡରୁ ବାଛି ବାଛି ସବୁଠୁଁ ଲାଲ ରଙ୍ଗର ଗୋଲାପଟିଏ ତୋଳି ଅତି ଆଦରରେ ଛାତି ପକେଟ୍‌ରେ ରଖିଲା। ରଦ୍‌ମା ଯେତେ ରାଗିଥିଲେ ବି ଗୋଲାପ ଫୁଲଟିଏ ଦେଖିଲେ ତା ରାଗ ଶାନ୍ତ ହୋଇଯାଏ। ତାକୁ ମନେଇବାକୁ ବେଶି ସମୟ ଲାଗେ ନାହିଁ। ରୂପଧରର ଘରଠାରୁ ଗଲି ଛଅଟା ଘରଛାଡି ରଦ୍‌ମାର ଘର। ତା ଘରଠୁ ରୂପଧରର ଅବାଧ ଯିବା ଆସିବା। ପ୍ରଥମରେ ସେ ତା'ର ମାମୁଘର। ଦ୍ୱିତୀୟରେ ରଦ୍‌ମା ତା'ର ବାଗ୍‌ଦତ୍ତା। ତେଣୁ ତା ଘରକୁ ଯିବାରେ କେବେ କୌଣସି ପ୍ରତିବନ୍ଧକ ନଥିଲା।

ରୂପଧର ପହଞ୍ଚିଗଲା ରଦ୍‌ମା ଘରେ। ଦଉଡିଆ ଖଟ ଖଣ୍ଡକରେ ମୋଞ୍ଚାଏ ହୋଇ ମୁହଁ ମାଡି ପଡିଥିଲା ରଦ୍‌ମା। ତା'ର ହୃଷ୍ଟପୁଷ୍ଟ ଶରୀରଟା ଅଧାରେ ବି ନଥିଲା। ଯେମିତି ଲାଗିଯାଇଥିଲା ବିଛଣାରେ। ରୂପଧରର ଛାତି ଭିତରଟା ଯନ୍ତ୍ରଣାରେ କରତି ହୋଇଗଲା। ତା ମୁହଁରୁ ଭାଷା ପଇଟିଲା ନାହିଁ। କିଛି ସମୟ ନିରବରେ ଠିଆ ହେବା ପରେ ସେ ଛେପ ଢୋକି ଯଥାସମ୍ଭବ ନରମ ସ୍ୱରରେ ଡାକିଲା – ରଦ୍‌ମା ! ଏ ରଦ୍‌ମା ! ମୁଁ ଆସିଛି।

ସତେ ଅବା ପାଉଁଶ ଗଦା ଭିତରୁ ଛିଟିକି ଆସିଲା ନିଆଁ ଝୁଲଟିଏ। ପୁଞ୍ଜିଭୂତ ଅଭିମାନର ବାରୁଦଗଦା ବିସ୍ଫୋରଣ ହେବାପାଇଁ ସେଇ ନିଆଁ ଝୁଲଟିକେ ଯଥେଷ୍ଟ ଥିଲା। କୋଉଠି ଥିଲା ତା'ର ସେ ଦୁର୍ବଳ ଶରୀରରେ ଏତେ ଶକ୍ତି କେଜାଣି, ଘରେ ପାଦ ଦେବା ପରଠୁ ପାହାଡ ପରି ନିରବ ପାଲଟି ଯାଇଥିବା, ପାଟିରୁ ଶବ୍ଦଟିଏ ବାହାର କରୁନଥିବା ଝିଅଟା ଏକାବେଳକେ ଭୈରବ ରଡିଟାଏ ଦେବାପରି ଗର୍ଜନ କରି କହିଉଠିଲା – ବଦମାସ୍, ବିଶ୍ୱାସଘାତକ, ମିଥ୍ୟାବାଦୀ। ମୁଁ ତୋ ମୁହଁ ଦେଖିବାକୁ ଚାହେଁନା, ବାହାରିଯାଆ ଏଇ ମୁହୂର୍ତ୍ତରେ ମୋ ଆଗରୁ।

ଆଦୌ ରାଗୁ ନଥିଲା ରୂପଧର। ଶାନ୍ତ କଣ୍ଠରେ ସେ କହିଲା – ମୋ କଥା ଟିକେ ଶୁଣ ରଦ୍‌ମା। ତା'ପରେ ତୁ ସବୁ କଥା ବୁଝିପାରିବୁ।

ଦ୍ୱିଗୁଣ ତେଜରେ ଗର୍ଜନ କରି କହିଲା ରଦ୍‌ମା। ଗୋଟାଏ ଶବ୍ଦ ବି ମୁଁ ତୋ ପାଖରୁ ଶୁଣିବାକୁ ଚାହେଁନା। ତୁ ଚାଲି ଯା ମୋ ଆଖି ଆଗରୁ। ନହେଲେ ମୁଁ ତତେ ଖୁନ୍ କରିଦେବି। ତୋ ରକ୍ତପିଇ ଦେବି। ତା ଉଗ୍ରମୂର୍ତ୍ତି ଦେଖି ଆଶ୍ଚର୍ଯ୍ୟ ଚକିତ ହୋଇଗଲା ରୂପଧର। ସତକୁ ସତ ପାଗଳୀ ହୋଇଗଲା କି ରଦ୍‌ମା ! ସେ ଭୟ ପାଇଗଲା।

ସେତେବେଳକୁ ପରିବାରର ଅନ୍ୟାନ୍ୟ ସଦସ୍ୟ ଆସି ରୁଣ୍ଡ ହୋଇ ସାରିଥିଲେ। ରୂପଧରକୁ ସେଠାରୁ ଚାଲିଯିବାକୁ ଇଙ୍ଗିତ ଦେଲେ ସମସ୍ତେ। ଆଉ ମୁହୂର୍ତ୍ତେ ରହିଲେ ଯେମିତି ରଦ୍‌ମା ପ୍ରଳୟ କରିଦେବ।

ରୂପଧର ବି ଉଚିତ୍ ମଣିଲା ସେମାନଙ୍କ ପରାମର୍ଶ। ଝିଅଟା ଉପରେ ଏତେ ଝଞ୍ଜା ବହିଯାଇଛି। ଘରକୁ ଏବେ ଏବେ ଫେରିଛି, ଦିନେ ଓଳିଏ ଗଲେ ସେ ଶାନ୍ତ ପଡିଯିବ। ସେତେବେଳେ ସେ ଆସିବ। ଏବେ ରଦ୍‌ମାକୁ ଆଉ କେହି ତା ପାଖରୁ ନେଇପାରିବେ ନାହିଁ। ରଦ୍‌ମା ତା'ର, ସଂପୂର୍ଣ୍ଣ ଭାବରେ। ଭାବପ୍ରବଣ ହୋଇ ପଡୁଥିଲା ରୂପଧର। ତା ଆଖି କୋଣରୁ ଗଡି ଆସିଲା ଦୁଇଧାର ଲୁହ। ତା' ଲୁହ ଆଉ କେହି ଦେଖିବା ପୂର୍ବରୁ ସେ ତରତର ହୋଇ ଏରୁଣ୍ଡି ଡେଇଁ ବାହାରି ଆସିଲା ବାହାରକୁ।

ସେଇଦିନ ରାତିରେ ଘଟିଲା ଅଘଟଣ। ରଦ୍‌ମା ନେଲା ଚରମ ନିଷ୍ପତ୍ତି। ଖବରଟା ରାଷ୍ଟ୍ର ହୋଇଯିବାପାଇଁ ମୁହୂର୍ତ୍ତେ ଲାଗିଲା ନାହିଁ। ସେ ଦିନର ସବୁ ଟିଭି ଚ୍ୟାନେଲ୍ ସମ୍ବାଦପତ୍ର ମାନଙ୍କରେ ରଦ୍‌ମାର ଆତ୍ମହତ୍ୟା ଥିଲା ମୁଖ୍ୟ ସମ୍ବାଦ। ଏ ଆତ୍ମ ହତ୍ୟାକୁ ପ୍ରେମଜନିତ ବୋଲି ସାବ୍ୟସ୍ତ କରିବାକୁ ସମସ୍ତେ ପାରୁପର୍ଯ୍ୟନ୍ତ ପ୍ରଚେଷ୍ଟାରେ ଥିଲେ।

# ନିଃସର୍ତ୍ତ ହରିଶ୍ଚନ୍ଦ୍ର

ସେ ଶ୍ମଶାନ ପତି ଶିବ ନଥିଲା, କି ସତ୍ୟବନ୍ଧ ରାଜା ହରିଶ୍ଚନ୍ଦ୍ର ବି ନଥିଲା, ତଥାପି ତା' ଜୀବନର ଅର୍ଦ୍ଧାଧିକ ସମୟ କଟିଥିଲା ଶ୍ମଶାନରେ। ଶ୍ମଶାନ ଘାଟ ଥିଲା ତା'ର କର୍ମଭୂମି। ସେ ତା' କର୍ମଭୂମିକୁ ପୁଣ୍ୟକ୍ଷେତ୍ର ବୋଲି ଭାବୁଥିଲା। ଆୟୁଷ ସରିଯାଇଥିବା ମଣିଷମାନଙ୍କର ମାଟିପିଣ୍ଡକୁ ପଞ୍ଚଭୂତରେ ମିଶାଇବା କାର୍ଯ୍ୟ ସେ କରୁଥିଲା। ମରଶରୀରଗୁଡ଼ାକ ଯେତେବେଳେ ଜୁଇନିଆଁରେ କଡ଼କଡ଼ ଚଡ଼ଚଡ଼ ହୁଅନ୍ତି ପୋଡ଼ା ଫୁର୍‌କୁଟିଆ ଗନ୍ଧରେ ଗଗନ ପବନ ଅତିଷ୍ଠ କରିଦିଅନ୍ତି, ସେତିକିବେଳେ ଦରପୋଡ଼ା କାଠଖଣ୍ଡେ ଧରି କଞ୍ଚାମାଛକୁ ରଡ଼ନିଆଁରେ ପୋଡ଼ିବା ପରି ସେ ମଣିଷ ପିଣ୍ଡକୁ ଏପଟ ସେପଟ ଲେଉଟାଉଥିଲା। କେବେ ନିଆଁରେ ପଡୁପଡୁ ସେଗୁଡ଼ିକ ଫୁସ୍‌ଫାସ୍ ହୋଇ ଜଳିଯାଆନ୍ତି ତ ପୁଣି କେତେବେଳେ ଜୁଇନିଆଁ ସହ ସଂଘର୍ଷ କରୁଥାଆନ୍ତି ଶେଷପର୍ଯ୍ୟନ୍ତ। ସେଁ ସାଁ ଚେଁ ଚାଁ ଶବ୍ଦ କରି ବାହାରକୁ ଛିଟ୍‌କିଆସେ ପୂଜରକ୍ତ ମିଶା ପାଣି। ଦେହ ହାତ ବୁଡ଼ାଇଦିଏ। ସେଥିପ୍ରତି ତା'ର କିଛି ଘୃଣା କି ବିକାର ନଥିଲା। ଧନୀ ଗରିବ, ଉଚ୍ଚନୀଚ, ବ୍ରାହ୍ମଣ ଚଣ୍ଡାଳ, ସୁନ୍ଦର କୁତ୍ସିତ, ରୋଗୀ ଭୋଗୀ ଯୋଗୀ ସମସ୍ତେ ତା' ଦୃଷ୍ଟିରେ ସମାନ ଥିଲେ।

କାହା ପ୍ରତି ତା'ର ବିରାଗ କି ବିତୃଷ୍ଣା ନଥିଲା। ମୋହ କି ଆସକ୍ତି ନଥିଲା। ନିର୍ଲିପ୍ତ ନିରାସକ୍ତ ଭାବରେ ସେ ତା' କର୍ତ୍ତବ୍ୟ କରିଚାଲୁଥିଲା।

ଏ କାମ ପାଇଁ ତାକୁ କେହି କେବେ ବାଧ କରିନଥିଲା କି କାହା ପାଖରେ ସେ ସର୍ତ୍ତବଦ୍ଧ ନଥିଲା। କାଣି କଉଡ଼ିଟିଏ ବି ସେ ଶବର ଆତ୍ମୀୟସ୍ୱଜନଙ୍କ ଠାରୁ ଦାବି କରୁନଥିଲା। ବରଂ ଦୀନଦରିଦ୍ର ନିଃସମ୍ବଳ ଅସହାୟମାନଙ୍କ ଶବ ଚାନ୍ଦାଭେଦା କରି ସତ୍କାର କରୁଥିଲା। କେତେକ ବଦାନ୍ୟ ବ୍ୟକ୍ତିଙ୍କ ସାହାଯ୍ୟ ସହଯୋଗର ହାତ ସ୍ୱତଃ ଲମ୍ବିଆସୁଥିଲା ତା'ପାଖକୁ। ଏସବୁ ତା'ର ପେଶା ନଥିଲା, ଥିଲା ନିଶା। ବଞ୍ଚିବା ପାଇଁ ଏଥିରୁ ସେ ଉନ୍ମାଦନା ପାଉଥିଲା। ତା' ଦ୍ୱାରା କିଏ ଉପକୃତ ହେଲେ ସେ ଖବର ସେ ରଖୁନଥିଲା। ସିଏ ନିଜେ ଯେଉଁ ଆତ୍ମତୃପ୍ତି ପାଉଥିଲା ତାହା ହିଁ ଥିଲା ତା'ର ଜୀଇଁବାର ବ୍ରତ। ସେଇ ମଡ଼ାଚଣ୍ଡିଆ କୁସୁନିଆ ତା' ଅନ୍ଧାରିଆ କୋଠରୀଟି ଭିତରେ ଶୋଇଥିଲା ମୁହଁମାଡ଼ି। ତା' ୬୦ବର୍ଷର କର୍ମମୟ ଜୀବନ ପାହାଡ଼ଟିଏ ପରି ଲଦି ହୋଇଥିଲା ତା' ପିଠିରେ। ସେ ସେଥିରୁ ମୁକୁଳି ପାରୁନଥିଲା। ସେଇ ସ୍ମୃତିର ପାହାଡ଼ ରୋମନ୍ଥନରେ ସେ କେତେବେଳେ ଅଣନିଃଶ୍ୱାସୀ ହୋଇଯାଉଥିଲା ତ ପୁଣି କେତେ ନା କେତେ ନାଁ ନ ଜଣା, ଗଛଲତା ଗୁଳ୍ମମାନଙ୍କରେ ଲଦିହୋଇ ପଡ଼ିଥିବା ପତ୍ରଫୁଲ ଫଳକଷିଙ୍କ ମହକରେ ଉଲ୍ଲସି ଉଠୁଥିଲା। ଶ୍ୱାପଦ ଶଙ୍କୁଳ ଘନଅନ୍ଧକାର ଗିରିଗହ୍ୱର ମଧ୍ୟରେ ନିଜ ଅସ୍ତିତ୍ୱ କେତେବେଳେ ତାକୁ ଷାଠିଏମହଣ ବୋଝପରି ଲାଗୁଥିଲା ତ ପୁଣି କେତେବେଳେ ପ୍ରଜାପତିର ମହମହ ଡେଣା ଚୁଇଁ ଚଢ଼େଇର ପ୍ରାଣଉଚ୍ଛୁଳା ସଂଗୀତ, ସକାଳର କଅଁଳ ଖରାରେ ସବୁଜ ବନାନୀରେ ଲାଖିରହିଥିବା ଢଳଢଳ କାକରବିନ୍ଦୁ ଅଥବା ଶିମିଳିତୁଳା ପରି ମେଞ୍ଚା ମେଞ୍ଚା ଭାସମାନ ମେଘଖଣ୍ଡ ଭିତରେ ନିଜକୁ ବେଶ୍ ହାଲ୍‌କା ଫୁଲ୍‌କା ଅନୁଭବ କରୁଥିଲା। ପୁଣି କେତେବେଳେ ପାହାଡ଼ର ଶୀର୍ଷଦେଶରୁ ଅତଳସ୍ପର୍ଶୀ ଗହ୍ୱର ଭିତରକୁ ଖସିପଡୁଥିଲା। ରାତ୍ରିର ନିଃଶବ୍ଦ ପ୍ରହରରେ ପରୀମାନଙ୍କ ଗହଣରେ ବିଭୂଷିତ ହୋଇ ସ୍ୱର୍ଗଲୋକକୁ ଯାତ୍ରା କରୁଥିଲା। ତା'ର ସବୁତକ ଅନୁଭୂତି ଥିଲା ଚର୍ମଭେଦୀ। ମୃତ୍ୟୁ ପରି ସତ୍ୟ, ଜୀବନ ପରି ସୁନ୍ଦର। କାହାକୁ ସେ ଫାଙ୍କିପାରୁ ନଥିଲା କି ଫିଙ୍ଗିପାରୁ ନଥିଲା। ସବୁତକ ଗଣ୍ଠିଧନ କରିରଖିଥିଲା। ମଣିଷର ଦର୍ପ ଦମ୍ଭ ଅହଙ୍କାର ଅଭିମାନ ଅଦୃଷ୍ଟର ଗୋଟାଏ ଫୁଟୁକୀରେ ମାଟିରେ ମିଶିଯିବାର ନିଷ୍ଠୁର ସତ୍ୟକୁ ନିଆଁ କେଞ୍ଚଣାରେ କେଞ୍ଚି କେଞ୍ଚି ସେ ଆହୁରି ବିଭତ୍ସ ଭାବେ ଅନୁଭବ କରୁଥିଲା। ଜୀବନ୍ତରେ ଯାହାର ଗୋଟାଏ ହୁଙ୍କାର ପୃଥ୍ୱୀକୁ ଥରହର

କରିଦେଉଥିଲା ତା'ର ମାଛଟାଏ ଉଡ଼ାଇବାର ବି ଶକ୍ତି ରହୁନଥିଲା। କୁସୁନିଁଆର ନିଆଁ କେଞ୍ଚଣା ପାଖରେ ସେମାନେ ଅସହାୟ ଭାବରେ ନିଜକୁ ସମର୍ପି ଦେଉଥିଲେ। କେଉଁ ସୁନ୍ଦରୀ ଲାବଣ୍ୟପିତୁଳା ପଦ୍ମକୋରକିତ ମୁଖଶ୍ରୀ ସମ୍ପନ୍ନାମାନଙ୍କର ସୁନାଖଡ଼ିକା ପରି ଶରୀରକୁ ଅଗ୍ନିଦେବତା ଚେଁ ଚାଁ ସିଁ ସାଁ ଫିର୍‌ଫିର୍ ଟକ୍‌ଟାକ୍ କରି ଖାଇଯିବାର ନିଷ୍ଠୁର ଦୃଶ୍ୟକୁ ସେ ନିର୍ବିକାର ଭାବରେ ଆତ୍ମସ୍ଥ କରୁଥିଲା। ଦରପୋଡ଼ା ମାଛ ପରି ସେମାନଙ୍କ ସୁନ୍ଦର ସୁଗଠିତ ଶରୀର କଳା କିଟ୍‌କିଟ୍ ହୋଇ ମୁଠାଏ ପାଉଁଶରେ ପରିଣତ ହୋଇଯାଉଥିଲା। ଧନଜ୍ଞାନ, ପ୍ରତାପ, ପ୍ରତିଷ୍ଠା ପ୍ରତିପତ୍ତି ରୂପଯୌବନର କରୁଣ ପରିଣତି ସେ ଅଚଳ ମହାମେରୁ ପରି ଅବିଚଳିତ ରହି ନିରୀକ୍ଷଣ କରୁଥିଲା। କେବଳ ନିରୀକ୍ଷଣ କରୁଥିଲା କହିଲେ ଭୁଲ୍ ହେବ, ବରଂ ସେ ଏହି ପ୍ରକ୍ରିୟାର ଏକ ଅଂଶ ହୋଇଯାଉଥିଲା। ଏଥିପାଇଁ ସମାଜ ତାକୁ ଯେଉଁପରି ସମ୍ମାନ ଦେବାକଥା ସେତିକି ଦେଉନଥିଲା। ତା'ସହ ବନ୍ଧୁତା ଯୋଡ଼ିବାକୁ କେହି ଆଗେଇ ଆସୁନଥିଲା। ତା'ସହ ଶତ୍ରୁତା କରିବାକୁ ବି ଲୋକେ ଭୟ କରୁଥିଲେ। ଘଡ଼ିଏ ଦି'ଘଡ଼ି ବସି କେହି ସୁଖଦୁଃଖ ବି ହେଉନଥିଲେ। ସତେଯେପରି ସେ ଅଶୁଭ, ଅପମଙ୍ଗଳିଆ। ସେ ମୃତ୍ୟୁର ଦୂତ। ତା'ସହ ଶତ୍ରୁତା ବି ବିପଦ ଓ ମିତ୍ରତା ତା'ଠାରୁ ଆହୁରି ଆତଙ୍କପ୍ରଦ। ତାକୁ ସମସ୍ତେ ଦୂରରୁ ଦେଖୁଥିଲେ। ସେ ପାଖକୁ ଆସିଲେ ବିଭିନ୍ନ ଆଳ ଦେଖାଇ ବାଟଭାଙ୍ଗି ଚାଲିଯାଉଥିଲେ। ସତେଯେପରି ତା'ଦେହରୁ ଫୁର୍କୁଟିଆ ଗନ୍ଧ ବାହାରୁଛି। କଞ୍ଚାଶବ ପୋଡ଼ାର ଗନ୍ଧ। ସତେଅବା ସେ ଯମ ଦେବତାର ପିଆଦା। ତା'ସହ କଥା ହେଉହେଉ ଟିକେ ଆଡ଼ବାଙ୍କ ହୋଇଗଲେ ସେ କୈଫିୟତ ତଲବ କରିବ। ବାନ୍ଧି ନେଇଯିବ। ଅଥବା ନିଆଁ କେଞ୍ଚଣାରେ କେଞ୍ଚି କେଞ୍ଚି ସେମାନଙ୍କୁ ମୁଠାଏ ପାଉଁଶରେ ପରିଣତ କରିଦେବ। ସମସ୍ତେ ତାକୁ ଦୂରଛଡ଼ା ଦେଉଥିଲେ। କରଛଡ଼ା ଦେଉଥିଲେ। ଦୁଃଖ କରୁନଥିଲା ମଡ଼ାଚଣ୍ଡିଆ।

ମଡ଼ାଚଣ୍ଡିଆ କଡ଼ ଲେଉଟେଇଲା। ତା' ଆଖିଆଗରେ ଝାପ୍‌ସା ହୋଇ ନାଚିଗଲା ତା' ଶୈଶବର ସ୍ମୃତି। କିଛି ଶୁଣାକଥା। କିଛି ଆଖିଦେଖା କଥା ଆଉ କିଛି ନିଜ ଅଙ୍ଗେନିଭା କଥା। ଦୁନିଆର ଆଲୋକ ଦେଖୁ ନ ଦେଖୁଣୁ ପ୍ରଥମେ ଯିଏ ତାକୁ ଆଦରରେ କୋଳକୁ ଉଠେଇ ନେଇଥାନ୍ତା, ଯାହାର ବକ୍ଷର ଅମୃତ ତା' ଶିରାପ୍ରଶିରାରେ ରକ୍ତ ହୋଇ ପ୍ରବାହିତ ହୋଇଥାନ୍ତା, ନିଃଶ୍ୱାସ ପ୍ରଶ୍ୱାସ ହୋଇ ତା' ପ୍ରାଣଶକ୍ତିକୁ ଧାରଣ କରିଥାନ୍ତା ସିଏ ଧୋକାଦେଇ ଚାଲିଗଲା। ଛେଉଣ୍ଡ ଛୁଆଟାକୁ ବୋପାଟା କୋଳକୁ ଉଠେଇନେବା ପରିବର୍ତ୍ତେ ଦୂର୍‌ଦୂର୍ ମାର୍‌ମାର୍

କଲା। ଜନ୍ମ ହେଉହେଉ ମାଆକୁ ଖାଇଥିବା ଛୁଆଟା ବଡ଼ହେଲେ କେଜାଣି କେତେ ଲୋକଙ୍କର ମୁଣ୍ଡ ଖାଇବ। କେତେକେତେ ଅଘଟଣ ଘଟେଇବ, ତା'ମୁହଁ ଚାହିଁଲା ନାହିଁ। ଜେଜୀମା' କୋଳରେ ବଢ଼ିଲା ପିଲାଟା। ବୋପା ନୂଆ ଘରସଂସାର କଲା। ସେ ଅଲୋଡ଼ା ଅଖୋଜା ହୋଇଗଲା ପରିବାରରେ। ସାବତମାଆ ସାବତ ଭାଇଭଉଣୀଙ୍କ ଅଇଁଠା କଣ୍ଟାଖାଇ ବଞ୍ଚିରହିଲା। କେତେଦିନ ଆଉ ବୁଢ଼ୀମାଆଟା ତାକୁ ସୁରକ୍ଷା ଦେଇଥାନ୍ତା ? ଏଥର ସେ ବାହାରିପଡ଼ିଲା ଦାଣ୍ଡକୁ। ଛେଉଣ୍ଡ ଛୁଆଟା ବୋଲି କେହି ସହୃଦୟା ତା' ପେଟକଥା ବୁଝିଲେ ତ ଆଉ କେହିକେହି ମୁଢ଼ିମୁଠାଏ, ଚୁଡ଼ା ଗଣ୍ଡାଏ କି ତୋରାଣି ଢୋକେ ଦେଇ ତା'ଠାରୁ ଯାବତୀୟ ବୋଲହାକ ଆଦାୟ କଲେ। କାହାର ପିଲା ଧରିଲା, କାହାର ଦୋକାନ ସଉଦା କଲା ତ ପୁଣି କାହାର ଶାଗପଟାଳି ହାଣିଲା ଅଥବା ଗାଈଗୋରୁ ଚରେଇଲା। କାହାର ବାଇଗଣ ଗଛରେ ପାଣିଦେଲା, ପେଟ ଚାଖଣ୍ଡକ ପାଇଁ ସେ କେତେଘାଟରେ ପାଣିପିଇଛି ତା'ର ହିସାବ ନାହିଁ।

କୁସୁନିଆର ବୟସ ବଢୁଥିଲା ଧୀରେଧୀରେ। ତା'ର ବଞ୍ଚିବାର ଦାବି ବି ସେମିତି ତୀବ୍ର ହୋଇଆସୁଥିଲା। ଏଥରକ ନାରୀ ମହଲରୁ ସେ ବାହାରିଆସିଲା ବାହାରକୁ। ତା' କୋମଳ କୈଶୋର ଭୁଲ୍ ଲୋକଙ୍କ ସଂସ୍ପର୍ଶରେ ଆସି ଅବାଟରେ ଗଲା। ତାସ୍ ଲୁଡୁ ପଶା ଖେଳୁଥିବା ଲୋକଙ୍କ ପାଇଁ ବୋଲକରା ହେଉ ହେଉ ଆହୁରି ଉପରକୁ ଗଲା। ମଦ୍ୟପମାନେ ତାରି ହାତରେ ମଦପାଣି ମଗେଇଲେ। ପାରିଶ୍ରମିକ ରୂପେ ଢୋକେ ଅଧେ ତା'ଭାଗରେ ପଡ଼ିଲା। କୋମଳ ବୟସରୁ ସେ ନିଶାପାଣିରେ ଅଭ୍ୟସ୍ତ ହୋଇଗଲା। ଘରେ ଆକଟ ନାହିଁ, ଅନୁଶାସନ ନାହିଁ, ସ୍ନେହମମତା ଶ୍ରଦ୍ଧାଆଦର ବି ନାହିଁ। କେବଳ ଘୃଣା ତାଚ୍ଛଲ୍ୟ ଅଲୋଡ଼ାପଣ ନେଇ ସେ ବଞ୍ଚିଲା। ଅବାଞ୍ଛିତ ଜୀବନରେ ମଦ ହିଁ ହୋଇଗଲା ବହୁବାଞ୍ଛିତ। ଏଇ ଟୋପାକ ପଡ଼ିଗଲେ ମୁହୂର୍ତ୍ତକ ପାଇଁ ହେଉ ପଛେ ତା' ଜୀବନ ତାକୁ ସୁନ୍ଦର ତରଙ୍ଗାୟିତ ବୋଧହେଲା। ବାସ୍ତବତାର କାନକୋଳି କଣ୍ଟା ତାକୁ ଆଉ ବେଶି ପୀଡ଼ା ଦେଲାନାହିଁ। ସେଇ ନିଶାରେ ସେ ମସଗୁଲ୍ ହୋଇ ରହିବା ପାଇଁ ଚାହିଁଲା।

ଏଥର ସେ ମହିଳା ମହଲରୁ ସମବେଦନା ହରେଇଲା। ଏମାନେ ଆଉ ଭରସା କଲେନାହିଁ ତାକୁ। ତା' ଜୀବନକୁ ସତେଯେମିତି ରାହୁ ଗ୍ରାସ କରିଗଲା। ସେ ବାଇଆ ବାତୁଳ ହେଲା ସେଇ ନିଶା ପଛରେ। କ'ଣ କେତେବେଳେ

ଖାଇଲା ନ ଖାଇଲା ହିସାବ ରଖିବାକୁ କେହି ନାହିଁ । ଘରଭିତରକୁ ଆସିଲେ ଦୂର୍‌ଦୂର୍ ମାର୍‌ମାର୍ । ଗାଁର ହିତାକାଂକ୍ଷୀମାନେ ମୁହଁ ମୋଡ଼ିଲେ । ସେ ତା’ ଏକାକୀପଣକୁ ନିଶାପାଣି ସହ ଫେଣ୍ଟି ଗୋଳେଇ ଗଳାଧଃକରଣ କରିଦେଲା । ନିଶାପାଣି ଲୋଭ କେହି ଦେଖେଇଲେ ସେ ସାତକୋଶ ବାଟ ଧାଇଁଯାଉଥିଲା । ସାତସମୁଦ୍ର ତେରନଈ ଲଙ୍ଘି ଯାଉଥିଲା । ନ କରିବା କାମ କରୁଥିଲା । ଏହି ସୂତ୍ରରେ ତା’ର ମାଲଭାଇମାନଙ୍କ ସହ ସଂପର୍କ । କେଉଁଠି କାହାର ମୃତ୍ୟୁଖବର ଶୁଣିଲେ ସେ ଆପେଆପେ ସାମିଲ ହୋଇଯାଏ ଶବ ଶୋଭାଯାତ୍ରାରେ । ଶ୍ମଶାନରେ ପହଞ୍ଚି ଆତ୍ମୀୟସ୍ୱଜନମାନେ ଶବସଂସ୍କାରର ପ୍ରାକ୍‌ବିଧି ପ୍ରକ୍ରିୟା ସଂପନ୍ନ କରୁଥିବାବେଳେ ସେ ଦୂରଛଡ଼ା ହୋଇ ସବୁ ନିରୀକ୍ଷଣ କରୁଥିଲା । ଶବକୁ ସେମାନେ ଉତ୍ତରାଭିମୁଖୀ କରି ବସାଇ ଶୀତଳ ଜଳରେ ସ୍ନାନ କରାଉଥିଲେ । ଚନ୍ଦନ ତିଳକ କରୁଥିଲେ । ତୁଳସୀମାଳ ପିନ୍ଧାଉଥିଲେ । ଦୁଇଟିପତ୍ରରେ ଦରଫୁଟା ଚାଉଳର ଭାତ ବାଢ଼ି ଗୋଟାଏ ପତ୍ରକୁ ପ୍ରେତାଧିପତି ଯମାୟ ନମଃ ଓ ଆଉ ଗୋଟାଏ ପତ୍ରକୁ ଶିବାୟ ନମଃ ବୋଲି କହି ଯମ ଓ ଶିବଙ୍କ ଉଦ୍ଦେଶ୍ୟରେ ଅର୍ପଣ କରୁଥିଲେ । ଅବଶିଷ୍ଟ ଦରଫୁଟା ଭାତକୁ ଗୁଣ୍ଡାବଳି ପ୍ରେତାୟ ନମଃ ବୋଲି କହି ଶବମୁଖରେ ଦେଉଥିଲେ । ଦଶଦିଗକୁ ସାକ୍ଷୀରଖି ଶବଟିର ଲୌକିକ ନାମରେ ବାରମ୍ବାର ଡକାଯାଉଥିଲା । ଗଙ୍ଗାଜଳ, ଗଙ୍ଗାମାଟି, ଘିଅ, ତୁଳସୀକାଠ, ଚନ୍ଦନକାଠ ଆଦି ସୁଗନ୍ଧଦ୍ରବ୍ୟରେ ପ୍ରସ୍ତୁତ ଚିତା ଚାରିପଟେ ଶବକୁ ସାତଥର ପ୍ରଦକ୍ଷିଣ କରାଯାଉଥିଲା । ଏ ପିଣ୍ଡରେ ପ୍ରାଣ ନାହିଁ ବୋଲି ଉଚ୍ଚସ୍ୱରରେ ଉଚ୍ଚାରଣ କରି ଆତ୍ମୀୟମାନଙ୍କ ଦ୍ୱାରା ମୁଖାଗ୍ନି ଦିଆଯିବା ପରେ ସେମାନଙ୍କ କାର୍ଯ୍ୟ ଶେଷ ହେଉଥିଲା । ଏଥର ଆରମ୍ଭ ହେଉଥିଲା ମଡ଼ାଚଣ୍ଡିଆମାନଙ୍କ କାମ । ବିନା ମଦପାଣିରେ ପରବର୍ତ୍ତୀ ବିଭତ୍ସ କାର୍ଯ୍ୟ କରିବା ସମ୍ଭବ ନୁହେଁ । ସେ ସେମାନଙ୍କ ସହ ସାମିଲ ହୋଇଯାଉଥିଲା । ତା’ ପରଠାରୁ ନିଜ ଅଜାଣତରେ ସେ ଧୀରେଧୀରେ ଗୋଟାଏ ଭିନ୍ନମଣିଷ ପାଲଟି ଯାଉଥିଲା । ତା’ର ନାଁ, ପ୍ରକୃତି, ପ୍ରବୃତ୍ତି, ବୃତ୍ତି ସବୁକିଛି ବଦଳି ଯାଉଥିଲା । ସେତେବେଳ ପର୍ଯ୍ୟନ୍ତ ତାକୁ କେହି ମଡ଼ାଚଣ୍ଡିଆ ଡାକୁନଥିଲେ । ତା’ର ଗୋଟାଏ ନାଁ ଥିଲା । ତା’ ଜେଜୀମା’ ସରାଗରେ ତା’ ନାଁ ଦେଇଥିଲା କୃଷ୍ଣଚନ୍ଦ୍ର । ସେଇ ନାଁରେ ସେ ତାକୁ ଡାକୁଥିଲା । ଜେଜୀମାଆ ଚାଲିଗଲା ପରେ କୃଷ୍ଣଚନ୍ଦ୍ର ଅପଭ୍ରଂଶ ହୋଇ କୁସୁନିଆ ହୋଇଯାଇଥିଲା । ସେଇ କୁସୁନିଆ କୋକେଇ ବାଉଁଶକୁ ନିଆଁ କେଞ୍ଚଣା କରି

ଶବମାନଙ୍କୁ ଦଗ୍ଧ କରୁ କରୁ କେତେବେଳେ ମଡ଼ାଚଣ୍ଡିଆ ପାଲଟିଗଲା ଜାଣିପାରିଲା ନାହିଁ।

ଏବେ ସେ ମଡ଼ାଚଣ୍ଡିଆ। ଶବମାନଙ୍କୁ ଦଗ୍ଧକରିବାର ସବୁ କଳା କୌଶଳ ହାସଲ କରିସାରିଲାଣି। ଶବର କପାଳ କ୍ରିୟା କାର୍ଯ୍ୟ ତା'ଛଡ଼ା ଆଉ କେହି କରିପାରନ୍ତି ନାହିଁ। ଶବରେ ମୁଖାଗ୍ନି ଦେଇଥିବା ବ୍ୟକ୍ତି କପାଳ କ୍ରିୟା କରିବା ବିଧି। କିନ୍ତୁ ସେମାନେ ପାରନ୍ତି ନାହିଁ। କେବଳ କୋକେଇ ବାଉଁଶରୁ ଖଣ୍ଡେ ଅର୍ଦ୍ଧଦଗ୍ଧ ଶବର କପାଳରୁ ଛୁଆଁଇ ତାରି ହାତକୁ ବଢ଼ାଇ ଦିଅନ୍ତି। ସେ ସେଇ ବାଉଁଶରେ ଏକ ଶକ୍ତ ପାହାରଦିଏ ଶବର କପାଳରେ। 'ଠୋ' କରି କପାଳଟା ଛତ୍ରଖାନ ହୋଇଯାଏ। ଏଇ ମସ୍ତିଷ୍କ ମଣିଷର ପ୍ରବେଶ ଓ ପ୍ରସ୍ଥାନର ଦ୍ୱାର, ସଂକଳ୍ପ ଓ ବିଚାରର କ୍ଷେତ୍ର। ଏଇ ମସ୍ତିଷ୍କ ଯଦି ଖଣ୍ଡ ବିଖଣ୍ଡିତ ନ ହୋଇ ସମ୍ପୂର୍ଣ୍ଣ ଦଗ୍ଧ ନ ହୁଏ, ତେବେ ତା'ର ଲୋଭମୋହ ଆସକ୍ତି ତୁଟିବ କେମିତି ? ଅତୃପ୍ତ ଆତ୍ମା ହୋଇ ସେ ତା'ର ପ୍ରିୟମଣିଷମାନଙ୍କୁ ଅତିଷ୍ଠ କରିବ। ଏସବୁ ଗୁଢ଼ ରହସ୍ୟ କଥା ତାକୁ ଜଣେ ଅଭିଜ୍ଞ ମଶାଣିଚଣ୍ଡିଆ କହିଥିଲେ। ତାକୁ ଏକଥା ବି କହିଥିଲେ ତାନ୍ତ୍ରିକମାନଙ୍କ ହାତରେ ଯଦି ଏଇ ଖପୁରୀ ପଡ଼ିଯାଏ, ସେମାନେ ଏହାକୁ ଉଠେଇନେଇ ଏଥିରେ ତନ୍ତ୍ରସାଧନା କରନ୍ତି। ଯାହା ପ୍ରେତଟିଏ ପାଇଁ ଅତ୍ୟନ୍ତ ପୀଡ଼ାଦାୟକ ହୋଇଥାଏ।

ଶବ ସତ୍କାର କର୍ମରେ ମଧ୍ୟ କଳା କୁଶଳତା ରହିଛି। ଏ କାମ ସମସ୍ତଙ୍କ ହାତରେ ହୁଏନାହିଁ। ଏହାକୁ ଅପବିତ୍ର କାମ ଅଶୁଭ କାମ କହି ହୀନ କାମ କହି ଯେଉଁମାନେ ନାକଟେକନ୍ତି ସେମାନେ ଭୁଲ୍ କରନ୍ତି। ଏହାଠାରୁ ବଳି ପୁଣ୍ୟ କାମ ନାହିଁ ବୋଲି ଜଣେ ସର୍ବୋଦୟ କର୍ମୀ ତାକୁ କହିଥିଲେ। ଜଣେ ସମାଜସେବୀଙ୍କ ଶବସତ୍କାରବେଳେ ପୁରୁଖା ମଶାଣିଚଣ୍ଡିଆଜଣକ ଅନୁପସ୍ଥିତ ଥିବାରୁ ସେଦିନ ସେ ଏହି କାର୍ଯ୍ୟ ତୁଲାଉଥିଲା। ଏତେକମ୍ ବୟସରୁ ଏ କାର୍ଯ୍ୟରେ ତା'ର ଦକ୍ଷତା ଓ ଆଗ୍ରହ ଦେଖି ସେ ତାକୁ ଉତ୍ସାହିତ କରି କହିଥିଲେ। ତା'ପରଠାରୁ କୁସୁନିଆର ଜୀବନଧାରା ବଦଳିଯାଇଥିଲା। କେବଳ ମଦ ମୋହରେ ସେ ଶବ ଶୋଭାଯାତ୍ରାରେ ଯାଉନଥିଲା କି ଶବସତ୍କାର ପରି ବିଭତ୍ସ କାର୍ଯ୍ୟ କରିବା ପାଇଁ ଆଗଭର ହେଉନଥିଲା। ସର୍ବୋଦୟ କର୍ମୀଙ୍କର କଥାଗୁଡ଼ାକ ଗାୟତ୍ରୀର ବୀଜମନ୍ତ୍ର ପରି ତାକୁ ପୂତ ପବିତ୍ର କରିଦେଲା। ଶବସତ୍କାର କାର୍ଯ୍ୟକୁ ନିଜ ଜୀବନର ବ୍ରତ ରୂପେ ଗ୍ରହଣ କରିନେଲା। ସହରରେ କାହାର ମୃତ୍ୟୁ

ସମ୍ବାଦ ତା' ଗୋଚରକୁ ଆସିବା ମାତ୍ରେ ସେ ସେଇଠି ପହଞ୍ଚି ଯାଉଥିଲା। କିଏ ଡାକିଲା, ନ ଡାକିଲା, କିଏ ସମ୍ମାନ ଦେଲା ଅସମ୍ମାନ କଲା ଏସବୁ ପ୍ରତି ସେ ଭ୍ରୂକ୍ଷେପ କରୁନଥିଲା। ଗୋଟାଏ ଶବସତ୍କାର ପରେ ସ୍ନାନ ଶୌଚ ସାରି ଘରେ ଗୋଡ଼ ଦେବା ମାତ୍ରେ ପୁଣି ଗୋଟାଏ ମୃତ୍ୟୁସମ୍ବାଦ ପାଇ ସେ ସେମିତି ଧାଇଁଯାଇଛି। ସାରାରାତି ବିତିଯାଇଛି ଶ୍ମଶାନରେ। ରାଜା ରଙ୍କ ରୋଗୀ ଭୋଗୀ ସାଧୁ ଅସାଧୁ ଧନୀ ନିର୍ଦ୍ଧନ ରାଣ୍ଡୀ ଖଣ୍ଡି ଅହ୍ୟ ସୁଲକ୍ଷଣୀ ବୃଦ୍ଧବାଳୁତ ନିର୍ବିଶେଷରେ ସମସ୍ତଙ୍କ ଶବ ସେ ସମଆଗ୍ରହରେ ସତ୍କାର କରିଥାଏ।

ସୁରାଟରୁ ରୋଗ ବ୍ୟାଧିର ବୋଝ ବୋହି ମଲାଗଲା ହୋଇ ଫେରିଥିଲା ସଦେଇ ଜେନା। ତାକୁ କୁଆଡ଼େ ଏଡ୍‌ସ ହୋଇଥିଲା। ସିଏ ଯେତେବେଳେ ଆଖି ବୁଜିଦେଲା ତା' ଶବକୁ ଛୁଇଁଲେ ନାହିଁ ମଡ଼ାସାଙ୍ଗିଆ ଭାଇ। ଜୀବନ୍ତରେ ତ ତା'ଦୁଆର ମାଡୁନଥିଲେ, ମଲା ପରେ ତା' ଶବ କେମିତି ଉଠେଇ ଥା'ନ୍ତେ? ଖବରପାଇ ସେ ପାଳଭୂତ ପରି ସେଇଠି ପହଞ୍ଚିଯାଇଥିଲା ଅନ୍ୟ ମାଲଭାଇଙ୍କର ବାରଣସତ୍ତ୍ୱେ। ସଦେଇ ଜେନାର ବିଧବା ସ୍ତ୍ରୀ, ତା' ଅଶିବର୍ଷର ମାଆ ବୁଢ଼ୀ ତା'ପାଖରେ ନେହୁରା ନିଉଛାଳୀ ହେଲେ। ସେ ସେମାନଙ୍କୁ ଅଭୟ ଦେଇ କହିଲା, କୁସୁନିଆ ଅଛି, ତମେମାନେ ଚିନ୍ତା କରନାହିଁ। କେହି ନ ଆସିଲେ ମୁଁ ଏକୁଟିଆ ସଦେଇଭାଇକୁ କାନ୍ଧରେ ବୋହିନେଇ ସତ୍କାର କରିଦେବି। ତା' କାନ୍ଧକୁ ସେତେବେଳେ କାନ୍ଧ ଦେଇଥିଲେ ନୂଆ ନୂଆ କଲେଜ ଯାଇଥିବା ଆଉ ରେଡକ୍ରସ ସଂସ୍ଥାରେ ଯୋଗଦେଇଥିବା ଭେଣ୍ଡିଆ ପିଲାମାନେ। ସେଇମାନଙ୍କୁ ନେଇ ସେ ସଦେଇ ଜେନାର ଶବସତ୍କାର କରିଥିଲା। ଖବରକାଗଜ, ଟିଭି, ରେଡ଼ିଓ ଆଦି ସବୁଥିରେ ଏ ଖବର ପ୍ରଚାର ପ୍ରସାର ହୋଇଥିଲା। ସରକାରଙ୍କ ତରଫରୁ ତାକୁ ସମ୍ମାନ ସମ୍ବର୍ଦ୍ଧନା ମିଳିଥିଲା। କାହିଁ କେତେଦୂରରୁ ଲୋକେ ତାକୁ ଦେଖିବାକୁ ଆସିଥିଲେ। ଘନଘନ ଫୋନ୍ କରିଥିଲେ। ସେ କୃତ୍ୟକୃତ୍ୟ ହୋଇଯାଇଥିଲା। ଏଇ ସାମାନ୍ୟ କାର୍ଯ୍ୟପାଇଁ ତାକୁ ଏତେ ସମ୍ମାନ ମିଳୁଛି ଭାବି ସେ ଆଶ୍ଚର୍ଯ୍ୟ ହୋଇଯାଉଥିଲା। ଆହୁରି ଆଗ୍ରହର ସହ ସେ ତା' କରିଚାଲିଥିଲା।

ସୁଲୀ ବୁଢ଼ୀ ମଲାବେଳକୁ କେହିନଥିଲେ ପାଖରେ। ଦୁଃଖ କଷ୍ଟ କରି ଚଳୁଥିବା ବୁଢ଼ୀ ଘରେ ଫଟା ପାହୁଲାଟାଏ ବି ନଥିଲା। ଚାନ୍ଦାକରି କାଠ ଓ ପ୍ରେତପୂଜା ସାମଗ୍ରୀ କିଣି ତା'ର ଅନ୍ତିମ କ୍ରିୟା କର୍ମ କରିଥିଲା। ଯୁବକମାନଙ୍କ ସହାୟତାରେ ସେ ସ୍ୱତଃପ୍ରବୃତ୍ତ ହୋଇ ଏ କାର୍ଯ୍ୟ ସମ୍ପନ୍ନ କରିଥିଲା। ଏଇମାନଙ୍କ

ସହ ମିଶି ସେ ଡାକ୍ତରଖାନାର ବେୱାରିସ୍ ଶବମାନ ଆଣି ସସମ୍ମାନେ ସେମାନଙ୍କ ସତ୍କାର କରୁଥିଲା। ଏଥିପାଇଁ ଖର୍ଚ୍ଚ ସବୁ ସେ ନିଜ ତରଫରୁ ତୁଲଉଥିଲା।

କୁସୁନିଆର ସ୍ମୃତିସବୁ ଆହୁରି ପ୍ରଖର ହୋଇଯାଉଥିଲା। ତା'ର ମନେପଡ଼ିଗଲା ଜଳଓଦରୀ ରୋଗ ଭୋଗୁଥିବା ବିଷ୍ଣୁ ସାମନ୍ତରାୟ କଥା। ତା'ର ପ୍ରାଣପକ୍ଷୀଟା ପିଣ୍ଡ ଛାଡ଼ି ଯେମିତି ଉଡ଼ିଯାଉଛି, ପିଣ୍ଡଟା ପାହାଡ଼ ପରି ଓଜନ ହୋଇଗଲା। ବହୁକଷ୍ଟରେ ଚିତାବେଦୀରେ ତ ଶୁଆଇ ଦିଆଗଲା କିନ୍ତୁ ନିଆଁ ଧରିଲା ନାହିଁ ଦେହ। ଜୀବନସାରା ଆଙ୍ଗୁଠି ଟିପରେ ଟିପେ ହାତଟେକି କାହାକୁ ଦେଇନଥିଲା ବୁଢ଼ାଟା। ରାଣ୍ଡୀଖଣ୍ଡିଙ୍କର ତଣ୍ଟିଚିପି ଧନ ବଢ଼େଇଥିଲା। ସିଏ କ'ଣ ଏତେ ସହଜରେ ଦଗ୍ଧ ହେବ? ସେଇ ପାପ ପାଇଁ ପରା ଶ୍ରୀକୃଷ୍ଣଙ୍କ ପିଣ୍ଡ ଅର୍ଦ୍ଧଦଗ୍ଧ ହୋଇ ରହିଯାଇଥିଲା। ଇଏ କୋଉ ମହାପୁରୁଷ କି? ପୁଅମାନେ ଘିଅ ଯୋଗାଡ଼ରେ ଲାଗିପଡ଼ିଲେ। ଏତେବଡ଼ ପାପୀଟା ପାଇଁ ଘିଅ ବି କୋଉଠି ସହଜରେ ମିଳୁଛି ଯେ! ଶବରୁ ଖାଲି ଚିଁ ଚାଁ ସିଁ ସାଁ ହେଇ ପାଣି ପିଚ୍‌କାରୀ ମାରିଲା। କେହିଜଣେ ବିଳିବିଳେଇଲା ପରି କହିଲା- ଆଣ କିରୋସିନି କି ପେଟ୍ରୋଲ। ନ ହେଲେ ଏ ସାଧ ହେବନି। ପୁଅମାନେ ମୁହଁ ଚାହାଁଚାହିଁ ହେଲେ। ବୋପାଟା ଶେଷରେ କିରୋସିନି ପେଟ୍ରୋଲରେ ପୋଡ଼ାହେବ? ଠିକ୍ ଏତିକିବେଳକୁ ଶବଟାର ପେଟକୁ ଲକ୍ଷ୍ୟକରି ଭୁଷାଏ ମାରିଲା କୁସୁନିଆ ମଡ଼ାଚଣ୍ଡିଆ। ବେଲୁନ୍ ଫାଟିବା ପରି ଠୋ କରି ପେଟଟା ଏମିତି ଫାଟିଗଲା ଯେ ସେଥିରୁ ବାହାରିଥିବା ପାଣିରେ ଗୋଟାସୁଦ୍ଧା ଗାଧୋଇ ପଡ଼ିଲା କୁସୁନିଆ। ତା'ସାଙ୍ଗକୁ ଅନ୍ତବୁଜୁଳାରୁ କିଛି ଛିଟିକି ଆସି ତା' ଦେହରେ ନେସି ହୋଇଗଲା। "ଶେଷରେ ମୋରି ଉପରେ ଦାଉସାଧିଲ ସାଆନ୍ତେ।" ତା'ନିଜ ଅଜାଣତରେ ତା' ପାଟିରୁ ଏତକ ବାହାରିପଡ଼ିଲା। ନଦୀପାଣିରେ ସ୍ନାନ ଶୌଚ ହୋଇ ସେ ପୁଣି ଫେରିଆସିଲା ଅର୍ଦ୍ଧଦଗ୍ଧ ଶବପାଖକୁ। ଏଥର ଶବଟା ମୁଠାଏ ପାଉଁଶରେ ପରିଣତ ହେବାକୁ ଆଉ ବେଶିସମୟ ନେଇନଥିଲା।

ଶବସତ୍କାର ବେଳେ ସର୍ବଦା ନିର୍ବିକାର ରହୁଥିବା କୁସୁନିଆ ମଡ଼ାଚଣ୍ଡିଆର ମନଟା ଥରେ ଦୁର୍ବଳ ହୋଇପଡ଼ିଥିଲା। ନ' ମାସର ଗର୍ଭିଣୀ ସ୍ତ୍ରୀ ସୁଲୋଚନା ଗର୍ଭବେଦନା ସହି ନ ପାରି ମରଣ ମୁହଁରେ ଗଲା। ତା' ପେଟକୁ ଧୋବା କୁରାଢ଼ୀରେ ଚିରି ଛୁଆ ବାହାର କରି ଗୋଟାଏ କୁଇରେ ମାଆ ଛୁଆଙ୍କୁ ଶୁଆଇ ଦିଆଗଲା। ତା'ସ୍ୱାମୀ ମୁଖାଗ୍ନି ଦେବା ପରେ ବସିପଡ଼ିଲା ମୁଣ୍ଡରେ ହାତଦେଇ। ଜୀବନରେ

ମାଆକୁ କେବେ ଦେଖିନଥିବା କୁସୁନିଆକୁ ମନେହେଲା ଇୟେ ତାରି ମାଆର ଶବ। ସିଏ ନିଜେ ତା' କୋଳରେ ଶୋଇଚି ଆଉ ତା' ବୋପା ଅଗ୍ନି ସଂଯୋଗ କରୁଚି। ସେଇ ନିଆଁ ବରିଆଟିରୁ ନିଆଁ ଲେଲିହାନ କରି ଶିଖା ତୋଳି ମାଡ଼ିଆସୁଛି ତା'ଆଡ଼କୁ। ଏବେ ଜାଳିପୋଡ଼ି ଧ୍ୱଂସ କରିଦେବ। ତା'ମୁଣ୍ଡଟା ଘୂରିଗଲା, ସେ ଚିତ୍କାର କରିଉଠିଲା ଯନ୍ତ୍ରଣାରେ। ମାଲଭାଇମାନେ ତାଙ୍କୁ ସାଷ୍ଟାମ କଲେ। ସେ ଫେରିଆସିଲା ବାସ୍ତବ ଦୁନିଆକୁ। ଏମିତି ଅନେକ ଅନୁଭୂତିରେ ପରିପୂର୍ଣ୍ଣ ତା'ଜୀବନ।

ନିଃସର୍ତ୍ତ ହରିଶ୍ଚନ୍ଦ୍ର ପରି ଶ୍ମଶାନରେ ସେ ତା' ଜୀବନର ଅର୍ଦ୍ଧାଧିକ ସମୟ ବିତାଇଛି। ଜୁଇ ନିଆଁରୁ ନିର୍ଗତ ଧୂଆଁ, ଶବମାନଙ୍କର ଫୁର୍କୁଟିଆ ଗନ୍ଧ ମଶାଣୀର ପ୍ରେତ କର୍ମକର୍ମାଣୀରେ ବର୍ଷବର୍ଷ ଧରି ଜଡ଼ିତ ହୋଇ ତା'ଶରୀର ଶ୍ରୀହୀନ ହୋଇଗଲା। ଶ୍ୟାମଳ ବର୍ଣ୍ଣର ପଞ୍ଝୁହତା ମଣିଷଟା। କଳା ଖପରାପରି ହୋଇଗଲା। ତା'ର ଷାଠିଏ ବର୍ଷ ଜୀବନକାଳ ଭିତରେ ସେ ପୋଡ଼ିଛି ଛଅହଜାର ଶବ। ସିଏ ମଡ଼ାଚଣ୍ଡିଆ ହେବା ଦିନଠାରୁ ଏ ସହରର ଏମିତି କୋଉ ଶବ ନାହିଁ ଯିଏ କୁସୁନିଆର ଗୋଜିଣା କେଞ୍ଚା ବିନା ପାଉଁଶରେ ପରିଣତ ହୋଇଛି। ସେ ଜନମକାଳରୁ ମୃତ୍ୟୁ ଦେବତାକୁ ସାଙ୍ଗରେ ଧରି ଆସିବାରୁ ତା'ବାପା ତାକୁ ଅପମଙ୍ଗୁଳିଆ ବୋଲି କହୁଥିଲା। ତା' କର୍ମ ବି ତାକୁ ସେମିତି ସେଇ ଶବମାନଙ୍କ ଗହଣରେ ଜୀବନ ବିତେଇବା ପାଇଁ ଛାଡ଼ିଦେଲା। ଏଥିପ୍ରତି କିନ୍ତୁ ତା'ର ଆଦୌ ଆପତ୍ତି ଅଭିଯୋଗ କି ଅବସୋସ ନଥିଲା। ସେ ତା କାମରୁ ଅଜସ୍ର ଆନନ୍ଦ ପାଉଥିଲା। ସେ ବୁଝିଥିଲା, ମୃତ୍ୟୁ ହେଉଛି ମୁକ୍ତି। ମୃତ୍ୟୁ ପରେ ଶବର ଉପଯୁକ୍ତ ସଂସ୍କାର ନ ହେବା ପର୍ଯ୍ୟନ୍ତ ଆତ୍ମା ସେ ମୁକ୍ତିର ସ୍ୱାଦ ଅନୁଭବ କରିପାରେ ନାହିଁ। ଆମକୁ ମୃତ୍ୟୁର ମଙ୍ଗଳମୟ ରାଜ୍ୟରେ ପହଞ୍ଚାଇବାର କର୍ମ ସେ କରୁଥିଲା। ମୃତ୍ୟୁ ପରର ରାସ୍ତାକୁ ସେ ପ୍ରଶସ୍ତ କରୁଥିଲା। ରକ୍ତମାଂସର ନଶ୍ୱର ଶରୀରକୁ ମାଟିରେ ମିଶାଇ ଆତ୍ମାର ମୁକ୍ତିପଥ ପିଚ୍ଛିଳ କରୁଥିଲା। ଲୋକେ ତା' କର୍ମକୁ ଘୃଣ୍ୟ ନୀଚ କହିଲେ ମଧ୍ୟ ସେ ଭ୍ରୂକ୍ଷେପ କରୁନଥିଲା। ଚଣ୍ଡାଳ ଘରେ ତା'ର ଜନ୍ମ ନୁହେଁ। କିନ୍ତୁ ଏ ପ୍ରକାର ଚଣ୍ଡାଳ କର୍ମ କରିବାରୁ ତା' ଜୀବନ ଭିନ୍ନ ଦିଗରେ ଗଲା। ତାକୁ କେହି ଝିଅ ଦେଲେନାହିଁ। ତା' ମନର ରକ୍ଷ ମରୁଭୂମିରେ ଯିଏ ବିନ୍ଦୁଏ କାକର ହୋଇ ଝଲସୁଥିଲା, କଳ୍ପନାରେ ହେଉପଛେ ଯାହାକୁ ନେଇ ସେ ତା'ର ନିଃସଙ୍ଗ ମୁହୂର୍ତ୍ତଗୁଡ଼ିକୁ ଚଳଚଞ୍ଚଳ କରିପାରୁଥିଲା, ତା' ହୃଦୟ ସିଂହାସନକୁ ଗଙ୍ଗଶିଉଳି ଫୁଲରେ ସଜେଇ ରଖୁଥିଲା,

ସିଏ ତାକୁ ଫାଙ୍କିଦେଇ ଚାଲିଗଲା। ତା' ଶୈଶବର ମେଞ୍ଚାଏ ମଧୁର ସ୍ମୃତି, ଆଦ୍ୟ ଯୌବନର ହାହାକାର ଓ ମଧ୍ୟଯୌବନର ଆଶା ଓ ସ୍ୱପ୍ନ, ତା' ପିଲାଦିନର ଖେଳସାଥୀ କାଞ୍ଚନ। ବାହାହେବାର ବର୍ଷଗୋଟାଏ ନ ପୁରୁଣୁ ସେ ଧଳାଶାଢ଼ୀ ପିନ୍ଧି ଫେରିଆସିଲା ବାପଘର। ଅଟୋ ଚଳାଉଥିବା ତା' ସ୍ୱାମୀର ରାସ୍ତା ଦୁର୍ଘଟଣାରେ ମୃତ୍ୟୁ ହୋଇଥିଲା। କୁସୁନିଆ ହୃଦୟ ବିଦୀର୍ଣ୍ଣ ହୋଇଯାଇଥିଲା। ସେ ଅଭିସଂପାତ ଦେଇଥିଲା ବିଧାତାକୁ। କାଞ୍ଚନ ପରି ଝିଅର ଏ ଦୁର୍ଦ୍ଦଶା! ଭାଗ୍ୟ ଓ ଭଗବାନ ଉପରୁ ତା'ର ବିଶ୍ୱାସ ତୁଟିଯାଇଥିଲା। ଧଳାଶାଢ଼ୀରେ କାଞ୍ଚନର ଶୁଖିଲା ମୁହଁ, ଲଙ୍ଗଳା ହାତ ସେ ଆଦୌ ଦେଖିପାରୁ ନଥିଲା। ହଠାତ୍ ଦିନେ ତା' ସ୍ୱପ୍ନର ଥୁଣ୍ଟାଗଛରେ ପତ୍ରଟିଏ କଅଁଳିବାର ସେ ତା' କଳ୍ପନା ଚକ୍ଷୁରେ ଦେଖିଲା। ଖୁବ୍ କମ୍‌ଦିନ ଭିତରେ ସେଥିରେ ଫୁଲ କଷି ଧରିବାର ପରିକଳ୍ପନା କରିଦେଲା। ଶବପୋଡ଼ାର ଫୁର୍କୁଟିଆ ଗନ୍ଧ ଭିତରେ ଜୀବନ କାଟୁଥିଲେ ବି ସେଇ ଭିତରେ କେତକୀ ଫୁଲର ମହମହ ବାସ୍ନା ତା' କଳ୍ପନା ଜଗତକୁ ମହକେଇଦେଲା। ସେ ନିଷ୍ପତ୍ତି ନେଲା। କେତକୀକୁ ସେ ପୁଣି ରଙ୍ଗୀନ୍ ଶାଢ଼ୀ ପିନ୍ଧେଇବ। ତା'ମଥାରେ ସିନ୍ଦୂର ଦେବ। ରଙ୍ଗବେରଙ୍ଗର ଚୁଡ଼ିରେ ତା'ହାତ ଭରିଦେବ। ଏମିତି ସ୍ୱପ୍ନର ମହଲଟିଏ ଗଢୁ ଗଢୁ କାଚଘର ପରି ସେ ମହଲ ଭାଙ୍ଗି ରୁଜି ଚୁରମାର ହୋଇଗଲା। କାଞ୍ଚନ ଆତ୍ମହତ୍ୟା କରିଦେଲା। ତା' ଶବ ବି ତାରି ହାତରେ ଦଗ୍ଧ ହୋଇଥିଲା ମଶାଣିରେ। ଅନ୍ୟ ମଶାଣିଚଣ୍ଡିଆଙ୍କ ପାଖରେ ତ ସେ ସେତେବେଳେ ନିଜ ପୀଡ଼ାକୁ ଯେକୌଣସି ପ୍ରକାରେ ନିୟନ୍ତ୍ରଣରେ ରଖିଲା। କିନ୍ତୁ ତା'ପରେ ୩ଦିନ ପର୍ଯ୍ୟନ୍ତ ସେ ତା' ବିଛଣାରୁ ଉଠିପାରିନଥିଲା। ସେମିତି ଅଖିଆ ଅପିଆ ପଡ଼ିରହିଥିଲା। ତା'ପରେ ସେ ଏମିତି ଝାଡ଼ିଝୁଡ଼ି ହୋଇ ଉଠିଲା ଯେ, ଦୁନିଆର କୌଣସି ଆସକ୍ତି ତାକୁ ଆଉ ମୋହଗ୍ରସ୍ତ କଲାନାହିଁ। ସେ ନିଜକୁ କର୍ମକର୍ତ୍ତବ୍ୟ ଭିତରେ ସମ୍ପୂର୍ଣ୍ଣ ସମର୍ପିଦେଲା। ତା'ର କିଛି କାମନା ରହିଲା ନାହିଁ। ବାସନା ରହିଲା ନାହିଁ। ନିଃସର୍ତ୍ତରେ କର୍ମ ବନ୍ଧନରେ ବାନ୍ଧି ହୋଇଗଲା। କାହାଠାରୁ କିଛି ପ୍ରତ୍ୟାଶା ତ ତା'ର ନଥିଲା କିନ୍ତୁ କେହି ଯଦି ବଳପୂର୍ବକ ତାକୁ କିଛି ପାରିଶ୍ରମିକ ଦେଉଥିଲା ସେ ଅଗ୍ରାହ୍ୟ କରୁନଥିଲା। ତା'ର ଯୁବସହଯୋଗୀଙ୍କ ସହ ମିଶି ସେଥିରେ ସେ ଶ୍ମଶାନଘାଟର ସଂସ୍କାର କରୁଥିଲା। ବସିବା ପାଇଁ ସିମେଣ୍ଟ ବେଞ୍ଚ, ବିଶ୍ରାମକକ୍ଷ, ଟ୍ୟୁବୱେଲ, ବିଭିନ୍ନ ପ୍ରକାର ଗଛ, ଫୁଲବଗିଚା ଆଦି କରୁଥିଲା। ତାରି ପ୍ରଚେଷ୍ଟାରେ ଶ୍ମଶାନଘାଟ ଆଉ ପ୍ରେତମାନଙ୍କର ନିବାସସ୍ଥଳୀ ପରି ଲାଗୁନଥିଲା। ବାଇଜି ହାଣ୍ଡି,

ଭଙ୍ଗାକୁଲା, ଭଙ୍ଗାଟୋକେଇ କୁଣ୍ଢେଇ ପାଉଁଶ କୁଢ଼, ଦରପୋଡ଼ା କାଠ ଆଉ ସେଠି ପଡୁନଥିଲା। ସାମୂହିକ ଭାବେ ସେମାନେ ଶ୍ମଶାନକୁ ପରିଷ୍କାର ପରିଚ୍ଛନ୍ନ ରଖୁଥିଲେ। ବୋରୱେଲ୍‌ରୁ ପାଣି ନେଇ ପ୍ରତିଦିନ ସକାଳ ସଞ୍ଜରେ ସେ ଗଛମାନଙ୍କରେ ଦେଉଥିଲା। ଏଥିରେ ସେ ଯେଉଁ ଆନନ୍ଦ ଅନୁଭବ କରୁଥିଲା ତା'ସହ ସଂସାରର ଆଉ କେଉଁ ଦୁର୍ଲଭ ଦୁର୍ମୁଲ୍ୟ ବସ୍ତୁ ସମକକ୍ଷ ହେବ ବୋଲି ସେ ଭାବୁନଥିଲା।

ସେ ଆନନ୍ଦର ଅବସାନ ଘଟିବାକୁ ଯାଉଛି। ତା'କର୍ତ୍ତବ୍ୟ ସରିଆସୁଛି। ସେ ଏବେ ଅଖୋଜା ଅଲୋଡ଼ା ହୋଇଯିବ। ତା'ପାଖରେ ଆଉ କାହାର ଆବଶ୍ୟକତା ରହିବନି। ସହରର ଚାହିଦା ଅନୁସାରେ ଶ୍ମଶାନ ପାଇଁ ବୈଦ୍ୟୁତିକ ଚୁଲ୍ଲୀଟିଏ ଯୋଗାଇ ଦିଆଯାଉଛି। ସେଥିରେ ଶବସତ୍କାର ହେବ। ଏପଟରେ ଶବକୁ ଭର୍ତ୍ତି କରିଦେଲେ ସେପଟେ ମୁଠାଏ ପାଉଁଶ ହୋଇ ବାହାରିପଡ଼ିବ। ଶବସତ୍କାର ବାସିଦିନ ରଇ ଶୀତଳାଇ ଅସ୍ଥିଖଣ୍ଡ ଖୋଜି ବାହାର କରି ଆଣିବାର ଆବଶ୍ୟକତା ପଡ଼ିବ ନାହିଁ। ଆଧୁନିକ ବିଜ୍ଞାନସମ୍ମତ ଉପାୟରେ ହେବ ଶବସତ୍କାର। ସହରବାସୀ ବେଶ୍ ଉତ୍ସାହିତ ଦିଶୁଥିଲେ। ମନ୍ତ୍ରୀ ଆସିବେ, ବୈଦ୍ୟୁତିକ ଚୁଲ୍ଲୀ ଉଦ୍‌ଘାଟନ କରିବେ। ସେହି ଉଦ୍ଦେଶ୍ୟରେ ଗୋଟାଏ ସାଧାରଣ ସଭାର ଆୟୋଜନ କରିଥିଲେ ସହରବାସୀ। ସେଇ ସଭାରେ ନିଃସର୍ତ୍ତ ହରିଶ୍ଚନ୍ଦ୍ର ପରି ଦୀର୍ଘଦିନ ହେଲା ସହରବାସୀଙ୍କର ସେବା କରିଆସିଥିବା କୁସୁନିଆ ମଡ଼ାଚଣ୍ଡିଆକୁ ଶ୍ମଶାନଶ୍ରୀ ଉପାଧି ଦେବାର କାର୍ଯ୍ୟକ୍ରମ ଥିଲା। ତା'ସହ ଦଶହଜାର ଟଙ୍କାର ଗୋଟାଏ ଚେକ୍ ଓ ମାନପତ୍ର ପ୍ରସ୍ତୁତ ହୋଇ ରହିଥିଲା। ଏସବୁ ପାଇଁ ସହରବାସୀ ଆନନ୍ଦ ଉଲ୍ଲାସରେ ଉତ୍‌ଫୁଲ୍ଲିତ ଥିବାବେଳେ ମଡ଼ାଚଣ୍ଡିଆ କୁସୁନିଆ ତା'ଟୁଙ୍ଗୀ ଘରଟାରେ ଏକୁଟିଆ ପଡ଼ିଥିଲା ମୁହଁମାଡ଼ି। ତା'ଭିତରେ କୌଣସି ଆବେଗ ଉଚ୍ଛ୍ୱାସ କି ଉତ୍ତେଜନା ନଥିଲା। ତାକୁ ମନେହେଉଥିଲା ତା'ର ଅଧିକାର ତା'ର ଦାବି ତା' ଆନନ୍ଦ ତା'ର ସୁଖ ଛଡ଼େଇ ନେବା ପାଇଁ ଏହା ଗୋଟାଏ ରୀତିମତ ଷଡ଼ଯନ୍ତ୍ର। ଲୋକଙ୍କ ଉଲ୍ଲାସରେ ସେ ସାମିଲ ହୋଇପାରୁ ନଥିଲା। ଏପରିକି ସଭାସ୍ଥଳକୁ ଆସିବାର ଆବଶ୍ୟକତା ସେ ମଣିଲାନାହିଁ।

ବାହାରେ କୋଳାହଳ, ମନ୍ତ୍ରୀ ଆସିଗଲେଣି। ସଭାକାର୍ଯ୍ୟ ଆରମ୍ଭ ହୋଇଗଲାଣି। ମନ୍ତ୍ରୀଙ୍କର ଭାଷଣ ଶୁଭୁଛି ମାଇକରେ। ହଠାତ୍ ଖୋଜାପଡ଼ିଲା କୁସୁନିଆକୁ। କୁସୁନିଆ କାହିଁ? କୁସୁନିଆ କାହିଁ? ସେ ସମ୍ବର୍ଦ୍ଧିତ ହେବ। ପୁରସ୍କୃତ

ହେବ। ମାନପତ୍ର ପାଇବ। ଜଣେ ଉତ୍ସାହୀଯୁବକ ଧାଇଁଗଲା କୁସୁନିଆ ଘରଆଡ଼େ। କୁସୁନିଆର ଘର ଭିତରପଟୁ ବନ୍ଦ ଥିଲା। କବାଟଟାକୁ ଖୁବ୍ ଜୋରରେ ପିଟିଲା। ଅଧୈର୍ଯ୍ୟ ହୋଇ ଡାକଛାଡ଼ିଲା- କୁସୁନିଆ ଦା' ! କୁସୁନିଆ ଦା' ! କବାଟ ଖୋଲ, କବାଟ ଖୋଲ। ଆ-ଆ- ବାହାରକୁ ଆ। ବାହାରକୁ ଆ...। ଅତିକଷ୍ଟରେ ଖୋଲିଲା କବାଟ। କୁସୁନିଆ ସେଇ ଅଧାମେଲା କବାଟ ପାଖରୁ କହିଲା- ମୋ ପାଖରେ ତମର ଆଉ କି କାମ, ତମକୁ ତ ମନ୍ତ୍ରୀ ଲାଇନ୍‌ଚୁଲ୍ଲୀ ଦେଲେ। ସେଇଥିରେ ମଡ଼ା ପୋଡ଼ିବ। ମଡ଼ାଚଣ୍ଡିଆକୁ ଆଉ କାହିଁକି ଖୋଜୁଛ ? ଶେଷଆଡ଼କୁ ତା' କଣ୍ଠସ୍ୱର ଓଜନିଆ ହୋଇଆସୁଥିଲା।

ଯୁବକଜଣକ ତା'ର କୌଣସି କଥା କାନକୁ ନ ନେଇ ତାକୁ ଉଭା ଟେକିନେଲା ପରି ନେଇ ସଭାମଣ୍ଡପରେ ଠିଆ କରେଇଦେଲା। ଉଦ୍ୟୋକ୍ତାମାନେ ମନ୍ତ୍ରୀଙ୍କ ହାତକୁ ବଢ଼େଇଦେଲେ ଉତ୍ତରୀୟ, ମାନପତ୍ର ଆଉ ଚେକ୍। ଗୋଟିକ ପରେ ଗୋଟିଏ ମନ୍ତ୍ରୀ କୁସୁନିଆକୁ ପ୍ରଦାନ କରିଚାଲିଥିଲେ। ସେ କିଛି ଚିନ୍ତାକରିବା ଆଗରୁ ଏସବୁ ଏମିତି ଘଟିଯାଉଥିଲା ଯେ ସେ ହତବାକ୍ ହୋଇଯାଉଥିଲା। ମନ୍ତ୍ରୀ ତା' ସଂପର୍କରେ ଆଗରୁ ଅବଗତ ଥିଲେ। ସମସ୍ତଙ୍କୁ ଚମକୃତ କରିଦେଇ ମନ୍ତ୍ରୀ ଗୋଟାଏ ଘୋଷଣା କରିଦେଲେ- ଆଜିର ଏହି ବୈଦ୍ୟୁତିକ ଚୁଲ୍ଲୀକୁ ଉଦ୍‌ଘାଟନ କରିବାର ଯୋଗ୍ୟ ବ୍ୟକ୍ତି ହେଉଛନ୍ତି କୁସୁନିଆ ଓରଫ୍ କୃଷ୍ଣଚନ୍ଦ୍ର ବେହେରା। ମୁଁ ତାଙ୍କୁ ଅନୁରୋଧ କରିବି ସେ ଯେଉଁ ହସ୍ତରେ ପାଞ୍ଚହଜାର ଶବ ସତ୍କାର କରିବାର ଗୌରବ ଅର୍ଜନ କରିଛନ୍ତି ଆଜି ସେହି ହସ୍ତରେ ବଟମ୍ ଟିପି ବୈଦ୍ୟୁତିକ ଚୁଲ୍ଲୀକୁ ଉଦ୍‌ଘାଟନ କରିବେ। ଆଜି ଏହି ଯେଉଁ ଚୁଲ୍ଲୀଟି ଉଦ୍‌ଘାଟନ ହେବ ସେ ତା'ର ପରିଚାଳନା ଦାୟିତ୍ୱରେ ରହିବେ। ଏଥିପାଇଁ ସରକାରଙ୍କ ତରଫରୁ ତାଙ୍କୁ କିଛି ପାରିଶ୍ରମିକ ଦିଆଯିବାର ବ୍ୟବସ୍ଥା ରହିବ।

ଯନ୍ତ୍ରଚାଳିତ ପରି କୁସୁନିଆ ମନ୍ତ୍ରୀ ଓ ଉଦ୍ୟୋକ୍ତାଙ୍କ ଗହଣରେ ଚାଲିଲା ଉଦ୍‌ଘାଟନ ସ୍ଥଳକୁ। ଗେଣ୍ଡୁ ଓ ମନ୍ଦାରମାଳାରେ ସଜାଯାଇଥିଲା ଚୁଲ୍ଲୀ। ନାଲି ରିବନ ଖଣ୍ଡେ ବନ୍ଧାଯାଇଥିଲା। ରିବନ କାଟି ସୁଇଚ୍ ଅନ୍ କରିବ କୁସୁନିଆ। ମଖମଲି କପଡ଼ା ଉପରେ କଇଁଚିଟିଏ ଥିବା ଟ୍ରେ ଟାଏ ଧରି ଜଣେ ସ୍ୱେଚ୍ଛାସେବୀ ଠିଆ ହୋଇଥିଲେ। କୁସୁନିଆ ଓରଫ କୃଷ୍ଣଚନ୍ଦ୍ର ବେହେରାଙ୍କର ଜୟ ଜୟ ଧ୍ୱନିରେ ଶ୍ମଶାନସ୍ଥଳ ପ୍ରକମ୍ପିତ ହୋଇଉଠୁଥିଲା।

କୁସୁନିଆ ମଖମଲି କପଡ଼ା ଉପରୁ କଇଁଚିଟା ଉଠେଇବା ପାଇଁ ହାତ

ବଢ଼େଇଲା। ଠିକ୍ ଭାବେ ପହଞ୍ଚିପାରିଲା ନାହିଁ ସେଠି। ତା' ହାତ ଥରିଉଠିଲା। କେହି ଜଣେ ତା' ପାପୁଲିରେ ଧରେଇଦେଲା କଇଁଚି। କଇଁଚିଟା ଯେମିତି ତାକୁ ଲାଗୁଥିଲା ଷାଠିଏମହଣ ବୋଝ। ତା' ଦେହରୁ ଶ୍ରମଝାଳଟାଏ ବୋହିଗଲା। ତା' ପାଦତଳୁ ମାଟିଗୁଡ଼ାକ ଖସି ପାତାଳଗାମୀ ହୋଇଯିବା ପରି ସେ ଅନୁଭବ କରୁଥିଲା। ଅତିକଷ୍ଟରେ କଇଁଚିଟାକୁ ଧରି ନାଲିରିବନ ଟିକୁ ମଝିରୁ କାଟି ଦୁଇଖଣ୍ଡ କରିଦେଲା। ହଠାତ୍ ତା'ମୁଣ୍ଡଟା ବୁଲେଇଦେଲା। ସେ ଠିଆହେବା ପାଇଁ ଶକ୍ତି ସଂଚୟ କରିପାରିଲା ନାହିଁ। ସେ କିଛି କହିବା ପାଇଁ ଚାହୁଁଥିଲା। କିନ୍ତୁ କିଛି କହିପାରିଲା ନାହିଁ। ତା'ର ପାଟି ଆଫାଆଫା ହୋଇଗଲା। ତା'ର ଆଖିଦୁଇଟା ଖୋସି ହୋଇଗଲା ତାଳୁକୁ। ସେ ଚେତା ହରେଇ ତଳେ ପଡ଼ିଗଲା। ସ୍ୱେଚ୍ଛାସେବୀମାନେ ତାକୁ ଯୋର୍‌କାନ୍ଧିଆ କରି ମନ୍ତ୍ରୀଙ୍କ ଗାଡ଼ିପାଖକୁ ନେଇଗଲେ। ତା'ପରେ ଡାକ୍ତରଖାନା। ସମସ୍ତଙ୍କୁ ସ୍ତବ୍ଧ କରିଦେଇ ଡାକ୍ତର ତାକୁ ମୃତ ଘୋଷଣା କଲେ। ହୃତ୍‌ସ୍ପନ୍ଦନ ବନ୍ଦ ଯୋଗୁ କୁସୁନିଆର ମୃତ୍ୟୁ ହୋଇଛି ବୋଲି କହିଲେ ଡାକ୍ତରବାବୁ।

ଏ ହୃତ୍‌ସ୍ପନ୍ଦନ ବନ୍ଦହେବା ହେତୁ ଅତିଶୟ ଆନନ୍ଦ ଉଲ୍ଲାସ ଅଥବା ଅବରୁଦ୍ଧ ବେଦନା ତାହା ଜଣାପଡ଼ିଲା ନାହିଁ।

କହିବା ବାହୁଲ୍ୟ ସେହି ବୈଦ୍ୟୁତିକ ଚୁଲ୍ଲୀରେ ପ୍ରଥମ ଶବସତ୍କାର ହେଲା କୁସୁନିଆ ମଡ଼ାଚଣ୍ଡିଆର। ଜନତାଙ୍କ ଅନୁରୋଧରେ ମନ୍ତ୍ରୀ ବଟମ୍‌ଟିପି ତା'ର ଶବସତ୍କାର କରିଥିଲେ।

# ବାଲିଫୁଲ

ପୋଷ୍ଟମ୍ୟାନ୍ ଠାରୁ ଚିଠି ଖଣ୍ଡକ ପାଇ ଖୋଲି ପଢ଼ି ବସିଲା ଦମୟନ୍ତୀ। ଚିଠି ଉପରେ ଲେଖାଥିବା ଠିକଣାରୁ ହିଁ ସେ ତାହା ବାଲିଫୁଲର ଚିଠି ବୋଲି ଜାଣି ସାରିଥିଲା। ବାଲିଫୁଲ ଲେଖିଥିଲା -

ବାଲିଫୁଲ;

ମୋର ସ୍ନେହ ନେବୁ। ଜଗନ୍ନାଥଙ୍କ ଦୟାରୁ ଭଲରେ ଥିବୁ ବୋଲି ଆଶା। ଅନେକ ଦିନ ହେଲା ମୁଁ ତୋ ଖବର ପାଇନି। ତୁ ଏଠୁ ହଠାତ୍ ଚାଲିଗଲୁ କାହାକୁ କିଛି ନ କହି। ମୁଁ ଜାଣିଛି ତୁ ରାଗିଛୁ ମୋ ଉପରେ। ଏତେ ରାଗିଛୁ ଯେ ମୁଁ ଦେଇଥିବା ମୋବାଇଲଟା ବି ଏଠି ଛାଡି ଦେଇ ଚାଲିଯାଇଛୁ। ହଁ - ତୁ ରାଗ୍। ମନଇଛା ମୋ ଉପରେ ତୋ'ର ସବୁତକ ରାଗ ରୋଷ ଅଜାଡି ଦେ। ଯଦି ତୁ ମୋ ଉପରେ ନ ରାଗିବୁ, ଅଭିମାନ ନ କରିବୁ, ମୁଁ କେମିତି ଜାଣିବ ଯେ ତୋର ଭଲପାଇବା ମୋ ପାଖରେ ସେମିତି ଅଛି, ଯେମିତି ଥିଲା ବଣରୁ ଆମ୍ବ ତୋଳିଲା ବେଳେ, ମହୁଲ ଗୋଟାଇବା ବେଳେ, ନଦୀରୁ ମାଛ ଧରିବା ବେଳେ, ସରଗି ଫୁଲ ଗୋଟାଇବା ବେଳେ, ସ୍କୁଲ ପାଠ ପଢ଼ିବା ବେଳେ କି ପୁଷ୍ ପୁନେଇରେ

ବେଶ ପଡି ଛେର୍ ଛେରା ଗାଇବାବେଳେ। ମୋର ସବୁ ମନେ ଅଛି ବାଲିଫୁଲ। ତତେ କେମିତି ବୁଝେଇବି ବାଲିଫୁଲ, ଏ ସବୁ ମନେ ପଡିଲେ ମୋ ଭିତରେ କେମିତି ଉଦ୍‌ବେଳନ ସୃଷ୍ଟି ହୁଏ। ଏଇ ସବୁ ସୁଖ ସ୍ମୃତି ମତେ କେତେ ବିଚଳିତ କରେ। କିନ୍ତୁ ଏସବୁ ପାଖରେ ଅଟକି ଗଲେ ଆଗକୁ ବଢ଼ି ହେବ ନାଇଁ ବାଲିଫୁଲ। ବଣ ଜଙ୍ଗଲର ମଣିଷ ବୋଲି ଏଇ ସଭ୍ୟ ବୋଲାଇ ହେଉଥିବା ମଣିଷ ଗୁଡାକ ଆମକୁ ନେଇ କେତେ ନା କେତେ କଳ୍ପନା ଜଳ୍ପନା କରିବେ। ଟାହି ଟାପରା କରିବେ। ଆମକୁ ହୀନ କରି ଦେଖିବେ। ହଉ ଛାଡ ସେ କଥା। ପଛ କଥା ସବୁ ଭୁଲି ତୁ ମତେ କ୍ଷମା କରିଦେବୁ। ଚିଠି ପାଇ ଉତ୍ତର ନିଶ୍ଚୟ ଦେବୁ। ଚିଠିଟିଏ ତୋ ପାଖରୁ ନ ପାଇଲେ ମୁଁ ଭାବିବି ଯେ ତୁ ମୋତେ କ୍ଷମା କରିନୁ। ମୋତେ ଆପଣାର ବୋଲି ଭାବିନୁ।

ହଁ ଆପଣାର ବୋଲି ଆଉ କାହିଁକି ଭାବିବୁ ଯେ! ମୁଁ ତ କେବେ ଠୁଁ ତମମାନଙ୍କ ଠାରୁ ଦୂରକୁ ଆସିଲିଣି। ଏତେ ଦୂର ଏତେ ଅପହଞ୍ଚ ଯେ ମୁଁ ଚାହିଁଲେ ବି ତମମାନଙ୍କ ଦୁଃଖ ସୁଖରେ ସାମିଲ୍ ହୋଇପାରୁନି। ଆଗକୁ ଆଉ ପାରିବି କି ନା କହି ପାରୁନି। ଯେଉଁଦିନ ମୁଁ କନ୍ୟାଶ୍ରମ ସ୍କୁଲରୁ ଦଶମ ପରୀକ୍ଷାରେ ପ୍ରଥମ ଶ୍ରେଣୀ ପାଇଛି ବୋଲି ଖବର ଆସିଲା, ତୋ'ର ମନେଥିବ ବାଲିଫୁଲ, ସେଦିନ ଗାଁରେ କେତେ ଉଲ୍ଲାସ, ଉଦ୍ଦୀପନା। ଗାଁଟା ସାରା ଲୋକ ଚାହିଁଲେ ମୁଁ ଭୁବନେଶ୍ୱର, ରାଜଧାନୀକୁ ଆସି ପାଠ ପଢ଼େ। ପାଞ୍ଚଟଙ୍କା ଦଶଟଙ୍କା କରି ଯିଏ ଯାହାର ସାମର୍ଥ୍ୟ ଅନୁସାରେ ମୋ ପାପୁଲିରେ ଭରିଦେଇ ଗଲେ ଟଙ୍କା। ଆଶୀର୍ବାଦ ନେଇ ମୁଁ ଯେତେବେଳେ ଆଗକୁ ପଦ ବଢ଼େଇଲି, ତୋ'ର ମନେ ଥିବ ବାଲିଫୁଲ, ତୁ ମୋ ସହ ଶଗଡରେ ବସି ଆସିଥିଲୁ ଷ୍ଟେସନ୍ ପର୍ଯ୍ୟନ୍ତ। ଟ୍ରେନ୍ ଆସିବାକୁ ଆଉ ପାଞ୍ଚମିନିଟ୍ ଥିବ, ତୁ ଅଧିର ହୋଇ ମୋତେ କହିଥିଲୁ, "ପାଠପଢ଼ି ବଡ ଚାକିରି କରି ମୋତେ ଭୁଲ ଯିବୁନି ତ"। ତୋ କଣ୍ଠ ରୁଦ୍ଧ ହୋଇଯାଇଥିଲା, ତୋ ଆଖିରୁ ନିଗିଡ଼ି ଆସୁଥିବା ଦୁଇବୁନ୍ଦା ଲୁହକୁ ମୁଁ ଆଜି ପର୍ଯ୍ୟନ୍ତ ଭୁଲି ପାରିନି। ଭୁଲି ପାରିନି ବୋଲି ତ ଟିକେ ସୁଯୋଗ ପାଇଲେ ମୋ ମନ ତୋତେ ଖୋଜେ। ଦୁଃଖସୁଖରେ ତୋ ସାହାର ନିଏ। ତୋ ସାଙ୍ଗରେ ମନ ଖୋଲି କଥା ହୋଇଗଲେ ଓଜନିଆ ମନଟା ଏକଦମ୍ ହାଲ୍‌କା ଲାଗେ। ମୁଁ ତ ଚାହୁଁଥିଲି, ସାରା ଜୀବନ ଏମିତି ତୁ ମୋ ପାଖରେ ରହିଯିବୁ। ଅଥଚ ତୁ ଚାଲିଗଲୁ। ତୁ କାହିଁକି ଏମିତି କଲୁ? ମୋ ଫେରିବା ପର୍ଯ୍ୟନ୍ତ ତୁ ଅପେକ୍ଷା କଲୁ ନାହିଁ, କି ମୋତେ ପଦେ ପଚାରିବା ଆବଶ୍ୟକ ମଣିଲୁ

ନାହିଁ। ଆଉ ଦୁଇଦିନ ପରେ ତୋ'ର ଇଣ୍ଟରଭ୍ୟୁଥିଲା। ଚାକିରିଟା ତୋ ହାତରେ ଥିଲା। ମୁଁ ଆମ କମ୍ପାନୀର ଏମ୍.ଡିଙ୍କୁ କହିଥିଲି ତୋ କଥା। ତୁ ଚାଲି ଗଲୁ, ତଥାପି ମୁଁ ତତେ ଅପେକ୍ଷା କରିଛି ବାଲିଫୁଲ। ତୁ ନିଶ୍ଚୟ ଆସିବୁ। ତତେ ତୋ ବାଲିଫୁଲ ରାଣ।

॥ ଇତି ॥

ତୋର ବାଲିଫୁଲ

ଦମୟନ୍ତୀ ତା ବାଲିଫୁଲ ରୁକ୍‌ମତୀର ଚିଠିକୁ ଏକା ନିଶ୍ୱାସରେ ପଢ଼ି ଦେଇଥିଲା। ବାଲିଫୁଲର ଏଇ ରୁକ୍‌ମତୀ ନାଁଟି, ତା ନାଁ ଧରାନି ବେଳେ ଶିରା ଚାଉଳ ବାଛି ବାଛି ତାକୁ ଦେଇଥିଲା। ତା ସ୍କୁଲ ସାର୍ଟିଫିକେଟ୍‌ରେ ଯାହା ରହିଛି ସିନା, କିନ୍ତୁ ପ୍ରକୃତରେ ରୁକ୍‌ମତିଟା ରୂପଶ୍ରୀ ହୋଇଗଲାଣି କୋଉ କାଳୁ। ସହରରେ ସାଙ୍ଗମାନେ ତାକୁ ଡାକନ୍ତି ରୂପଶ୍ରୀ, ଅଥବା ରୂପ୍‌ସା ରୂପବତୀ। କେହି କେହି ଡାକନ୍ତି ରୂପ୍। ଦମୟନ୍ତୀ ହସେ। ରୂପ୍ ନା ରୁପୁ। ନାଲି ନାଲି ଓଠ। ଶାଗୁଆ ଶାଢ଼ୀର ବେହରଣ। ସବୁବେଳେ ବକର୍ ବକର୍। କେହି ରୁକ୍‌ମତୀ ଡାକିଲେ ସେ ଅସହିଷ୍ଣୁ ହୋଇଯାଏ। ଦମୟନ୍ତୀ କିନ୍ତୁ ତାକୁ ଡାକେ ବାଲିଫୁଲ। ବାଲିଯାତ୍ରାରେ ଦୁହେଁ ବାଲି ଦିଆ ନିଆ ହୋଇ ବସିଥିଲେ ବାଲିଫୁଲ। ସାଙ୍ଗସାଥୀଙ୍କ ମେଳରେ ଥିବାବେଳେ ତାକୁ ବାଲିଫୁଲ ବୋଲି ଡାକିଦେଲେ ତା'ର ମୁହଁର ରଙ୍ଗ ବଦଳିଯିବା ପରି ଅନୁଭବ କରେ ଦମୟନ୍ତୀ। ସେଥିପାଇଁ ସେ ଅତି ସତର୍କ ଥାଏ।

ଦମୟନ୍ତୀ ଓ ରୁକ୍‌ମତୀ ମଧ୍ୟରେ ନିବିଡ଼ ବନ୍ଧୁତା। ପରସ୍ପର ମଧ୍ୟରେ ଖୁବ୍ ଭଲପାଇବା। କିନ୍ତୁ ଦମୟନ୍ତୀ ବୁଝିପାରେ ନାହିଁ, ବାଲିଫୁଲ ବେଳେବେଳେ କାହିଁକି ଏମିତି ଅସହିଷ୍ଣୁ ହୋଇଯାଏ। ବ୍ୟସ୍ତ ହୋଇ ପଡେ ଦମୟନ୍ତୀ। ସେକ୍ରେଟାରୀଏଟ୍‌ରେ ଚାକିରିଟିଏ କରିଛି ରୁକ୍‌ମତୀ ଓରଫ୍ ରୂପଶ୍ରୀ। ବଡ ବଡ ଲୋକଙ୍କ ସହ ମିଶେ, ପିକ୍‌ନିକ୍ ପାର୍ଟିକୁ ଯାଏ। କ୍ଲବ୍‌କୁ ଯାଏ। ବଡବଡ ରେଷ୍ଟୁରାଣ୍ଟକୁ ଯାଏ। ମଲ୍‌ଯାଏ, ଅଫିସ୍‌ରୁ ସନ୍ଧ୍ୟା ପୂର୍ବରୁ କେବେ କେବେ ଫେରିଆସେ ତ ପୁଣି କେବେ ରାତି ବାରଟା କିମ୍ବା ଗୋଟାଏ। ନଖାଇ ନପିଇ ତାକୁ ଅପେକ୍ଷା କରିଥାଏ ଦମୟନ୍ତୀ। ସେ ନଖାଇ ତାକୁ କାହିଁକି ଅପେକ୍ଷା କରିଛି କହି ବିରକ୍ତ ହୁଏ, ଗାଁ କଲେଜରୁ +୨ ଫେଲ୍ ହୋଇଥିବା ଦମୟନ୍ତୀକୁ ସହରକୁ ଆସି ଚାକିରି କରିବାପାଇଁ ପରାମର୍ଶ ଦେଇଥିଲା ରୁକ୍‌ମତୀ। ଅନ୍ତରଙ୍ଗ ବାନ୍ଧବୀର ପରାମର୍ଶକୁ ଏଡି ପାରିନଥିଲା ଦମୟନ୍ତୀ। ନିଜର ଆନୁଷ୍ଠାନିକ ଶିକ୍ଷାଗତ ଯୋଗ୍ୟତା ଉପରେ ଭରସା ନଥିଲା ଦମୟନ୍ତୀର।

ତଥାପି ବାଲିଫୁଲ ସହ ମିଶି ରହିବାର ମୋହରେ ସେ ଆସି ରହୁଥିଲା ଭୁବନେଶ୍ୱରରେ। ବାଲିଫୁଲ ବସା ଘରେ। ଘରୋଇ ଅନୁଷ୍ଠାନରେ ଛୋଟ କାଟିଆ ଚାକିରି ଖଣ୍ଡେ ବି ଯୋଗାଡ କରିଦେଇଥିଲା ବାଲିଫୁଲ। ବଡ ଚାକିରିର ମୋହରେ ସେ ପଢ଼ା ପଢ଼ି କରୁଥିଲା। ଦରଖାସ୍ତ କରୁଥିଲା, ଏବେ ସେ ମୋହ ଭଗ୍ନ ହୋଇଛି ଦମୟନ୍ତୀର। ସେ ଗାଁକୁ ଫେରି ଆସିଛି। ତାହା ପୁଣି ବାଲିଫୁଲର ଅନୁପସ୍ଥିତି ବେଳେ। ସେ ଜାଣିଥିଲା ବାଲିଫୁଲ ପାଖରୁ ନିଶ୍ଚୟ ଏମିତି ଚିଠିଟିଏ ଆସିବ।

ଦମୟନ୍ତୀ ଅନୁଭବ କରୁଥିଲା ବାଲିଫୁଲକୁ ନ ଜଣେଇ ତା'ର ଏମିତି ଫେରି ଆସିବାର ନଥିଲା। କିନ୍ତୁ ତାକୁ ଆସିବାକୁ ହେଲା। ତା'ର ସ୍ୱାଭିମାନ, ତା'ର ଆତ୍ମାର ଆହ୍ୱାନ, ତା'ର ସମ୍ମାନବୋଧ ଆଉ ମୁହୂର୍ତ୍ତେ ତାକୁ ରହିବାକୁ ଦେଲା ନାହିଁ। ତା ଛାତି ତଳର ଅକୁହା ବେଦନାକୁ ଚାପି ରଖି ସେ ନିଷ୍ପତ୍ତି ନେଇଥିଲା, ସେ ଫେରିଯିବ ଗାଁକୁ। ଗାଁ ଭୂଇଁରେ ତା'ର ଅନେକ କାମ। ଯେଉଁଦିନ ଅଫିସର ମହାପାତ୍ର ବାବୁ ତା ବାପା ବୟସର ମଣିଷଟା ତାକୁ ଅସଦ୍ ବ୍ୟବହାର କଲା, ତା ଇଜ୍ଜତ୍ ଲୁଣ୍ଠିବାକୁ ଚେଷ୍ଟା କଲା, ସେଇଦିନଠୁଁ ଏ ସହରୀ ଜୀବନ ପ୍ରତି ତା'ର ବିତୃଷ୍ଣା ଆସିଥିଲା। ଏ ମଣିଷ ଗୁଡାକ ପ୍ରତି ତା'ର ଘୃଣା ଆସିଥିଲା। ସେ ବାଲିଫୁଲ ଆଗରେ ଫେରାଦ ହୋଇଥିଲା। ହସି ହସି ଗଡି ଯାଇଥିଲା ବାଲିଫୁଲ। ସେମିତି ହସୁ ହସୁ ସେ କହିଥିଲା – ଏସବୁ ଆମମାନଙ୍କ ଜୀବନର ସାଧାରଣ କଥା। You have to compromise। ରାସ୍ତାରେ ପୁଅ ଜନ୍ମ କରି ଡାହାଣୀକୁ ଡରିଲେ ଚଳେ ନାହିଁ ବାଲିଫୁଲ। ମତେ ଦେଖ୍, ଏ ଗାଡି, ଏ ବଙ୍ଗଳା, ଚାକିରିର ପ୍ରମୋଶନ, ଏ ଚାକଚକ୍ୟର ଦୁନିଆ, ଏମିତି ଜୀବନ ବଞ୍ଚିବାକୁ ହେଲେ ତ କିଛି Sacrifice କରିବାକୁ ହିଁ ପଡିବ। ମୁଁ ଯୁଗ ସହ ସାମିଲ୍ ହୋଇପାରୁଛି। ଯୁଗ ମତେ ଯାହା ଦେଇଛି ମୁଁ ଆନ୍ତରିକତାର ସହ ଗ୍ରହଣ କରିଛି। ବଦଳରେ ଯୁଗ ମୋ ଠୁଁ ଯାହା ଚାହିଁଛି, ଦେବାପାଇଁ କାର୍ପଣ୍ୟ କରିନାହିଁ କେବେ। ତୁ ଭୁଲିଯା ଏସବୁ। ଲକ୍ଷ୍ୟ ସ୍ଥଳରେ ପହଞ୍ଚିବାକୁ ହେଲେ କିଛି ଅବାଞ୍ଛିତ ଲୋକଙ୍କ ସହ ସାଲିସ୍ କରିବାକୁ ପଡେ। ଦୁଇ ଦିନ ପରେ ତୋ'ର ଇଣ୍ଟରଭ୍ୟୁ ଅଛି। ମହାପାତ୍ର ବାବୁ ଇଣ୍ଟରଭ୍ୟୁ ବୋର୍ଡର ଚେୟାରମ୍ୟାନ୍।

ଦମୟନ୍ତୀ ଅନୁଭବ କଲା, ବାଲିଫୁଲ ଯାହାକୁ ତା ଲକ୍ଷ୍ୟସ୍ଥଳ ବୋଲି ଭାବୁଛି, ଦମୟନ୍ତୀର ଲକ୍ଷ୍ୟସ୍ଥଳ ସେୟା ନୁହେଁ। ଆପଣାର ମଣିଷମାନଙ୍କ ଦୁଃଖ, ଯନ୍ତ୍ରଣା ଓ ପୀଡ଼ାକୁ ଏଡେଇ ସେ ସହରୀ ସଭ୍ୟତାର ନୀତିହୀନ କୃତ୍ରିମ ଯାନ୍ତ୍ରିକ

ଜୀବନ ବଞ୍ଚିପାରିବ ନାହିଁ। ବାଲିଫୁଲ ପଥ ହୁଡୁଛି, ତାକୁ ଫେରାଇ ଆଣିବାକୁ ହେବ। ତା ଗାଁର ସବୁଠୁ ବେଶି ପାଠ ପଢ଼ିଥିବା ଝିଅଟା ଯଦି ଏମିତି ଆମ ସମସ୍ୟାମାନଙ୍କରୁ ଦୂରେଇ ସ୍ୱାର୍ଥପର ଜୀବନ ବଞ୍ଚିବ, ଆମ ପାଖରେ ଅପହଞ୍ଚ ହୋଇଯିବ, ତେବେ ଯେଉଁ ଶିକ୍ଷା ଆମକୁ ଆଲୋକର ବାର୍ତ୍ତା ଦେବା କଥା, ମୁକ୍ତିର ବାର୍ତ୍ତା ଦେବା କଥା ତାହା ପୁଣି ଗୋଟାଏ ଭୟଙ୍କର ଅନ୍ଧାର ଓ ପରିବର୍ତ୍ତିତ ଦାସତ୍ୱର ବେଡ଼ି ପିନ୍ଧେଇ ଦେବ। ଆମ ବଣ ଜଙ୍ଗଲର ମଣିଷମାନଙ୍କ ପାଇଁ ବିପର୍ଯ୍ୟୟର କାରଣ ହେବ। ବାଲିଫୁଲକୁ ଘର ମୁହାଁ କରିବାକୁ ହେବ। ନିଜ ମାଟି ପ୍ରତି ତା' ଅନ୍ତରତମ ପ୍ରଦେଶରେ ଲୁଚି ରହିଥିବା ମୋହକୁ ଜାଗରୁକ କରିବାକୁ ହେବ। ନିଜ ମଣିଷମାନଙ୍କ ପୀଡ଼ା ପୀଡ଼ନ ସହ ଜଡ଼ିତ ନହେଲେ ସେମାନଙ୍କ ସମସ୍ୟା ସହ ଏକାତ୍ମ ନହେଲେ ସେ ଦୂରେଇ ଯିବ, ଦୂରତ୍ୱ ବଢ଼ିଯିବ। ଶେଷକୁ ସେ ଆମପାଇଁ ଅପହଞ୍ଚ ହୋଇଯିବ। ସ୍କୁଲ ଯାଉଥିବା ନୂଆ ପିଲାମାନେ ବି ତା'ରି ପଥ ଅନୁସରଣ କରିବେ। ନିଜ ଚେରକୁ ଅସ୍ୱୀକାର କରି, ମୂଳକୁ ଭୁଲି କେବଳ ଆକାଶରେ ଘୁରି ବୁଲିବେ। ବ୍ୟସ୍ତ ହୋଇପଡୁଥିଲା ଦମୟନ୍ତୀ। ଗାଁକୁ ଆସିବା ପରଠୁଁ ସେ ଅଭିମାନରେ ନୀରବ ରହୁଥିଲା, କିଛି ସଂପର୍କ ରଖୁନଥିଲା ରୁକ୍‌ମତୀ ସହ। କିନ୍ତୁ ଚିଠି ଖଣ୍ଡକ ପଢ଼ିବା ପରେ ହୃଦ୍‌ବୋଧ ହୋଇଛି ଦମୟନ୍ତୀର ଯେ ବାଲିଫୁଲକୁ ଫେରାଇ ଆଣିହେବ। ସେଥିପାଇଁ ଚେଷ୍ଟା ଦରକାର। କାଗଜ କଲମ ଆଣି ଲେଖି ବସିଲା ଦମୟନ୍ତୀ।

ବାଲିଫୁଲ,

ସ୍ନେହ ନେବୁ, ମା ଭଣ୍ଡାର ଘରିଆଣୀଙ୍କ ଦୟାରୁ ତୁ ଭଲରେ ଥିବୁ ବୋଲି ଆଶା କରୁଛି। ମୁଁ ତତେ କିଛି ନକହି ଚାଲି ଆସିଲି ବୋଲି ଦୁଃଖ କରି ଲେଖିଛୁ। ମୁଁ ଜାଣିଛି, ତତେ କହିଥିଲେ ତୁ ଆଦୌ ମୋତେ ଛାଡ଼ିନଥାନ୍ତୁ। ରାଣ ନିୟମ ପକେଇ ମତେ ଅଟକେଇଥା'ନ୍ତୁ। ଆଖିରୁ ଲୁହ ଗଡ଼େଇଥା'ନ୍ତୁ। ତୋ ଆଖିର ଲୁହ ଦେଖିଥିଲେ ମୁଁ ଦୁର୍ବଳ ହୋଇ ପଡ଼ିଥାନ୍ତି। ମୋ କର୍ତ୍ତବ୍ୟ ହୁଡ଼ିଥା'ନ୍ତି। ମୋ ଆତ୍ମାର ଆହ୍ୱାନକୁ ଅବମାନନା କରିଥା'ନ୍ତି। ତୁ ବେଶି ପାଠ ପଢ଼ିଛୁ, ବଡ ଚାକିରି କରିଛୁ। ପରିବେଶ ପରିସ୍ଥିତି ସହ ବେଶ୍ ଖାପ ଖୁଆଇ ଚଳିପାରୁଛୁ। ମୁଁ ପାରିଲି ନାହିଁ ଲୋ ବାଲିଫୁଲ। ମୁଁ ଅଧା ପାଠୋଇ। ଗାଁଉଁଲୀ ଦେଶୀୟା ଝିଅ। ଆମ ପାଇଁ ମାନ ସମ୍ମାନ ଇଜ୍ଜତ ମହତ ବଡ କଥା। ଆମେ ପର ଘରେ ଗତର ଖଟେଇ ଖାଇପାରିବୁ, ସେଥିରେ ଆମର ଲାଜ କି ସରମ ନଥାଏ। କିନ୍ତୁ ପରପାଖରେ ଦେହକୁ ନିଲାମ

କରି, ଇଜ୍ଜତ୍ ବିକି ବଞ୍ଚିପାରିବୁ ନାହିଁ। ଯାହା ସାଙ୍ଗରେ ମନ ପଟିଲା, ଆମେ ତା ସାଙ୍ଗରେ ଘର ସଂସାର କରୁ। ଏମିତି ବ୍ୟଭିଚାର ଆମ ସମାଜରେ ଚଳେ ନାହିଁ। ଦେଖ୍ ତ ବାଲିଫୁଲ, ତୁ ତ ଆମରି ସମାଜର ଲୋକ। ତତେ କ'ଣ ଏସବୁ ଅଜଣା ଅଛି ଯେ ମୁଁ ତତେ ପୁଣି ଏସବୁ ବୁଝେଉଛି। ମୁଁ ତାକୁ ମନରୁ ପୋଛି ଦେଇଛି ଲୋ। ତୋ କଥା ମାନି, ଆଉ ସେ ବିଷୟ ଦିନେ ବି ମନରେ ପୁରେଇବି ନାହିଁ କି ଅବସୋସ୍ କରିବି ନାହିଁ। ଧୂଙ୍ଗିଆ ଛେପ ଫିଙ୍ଗିଲା ପରି ମୁଁ ସେଇଠି ଫିଙ୍ଗି ଦେଇ ଆସିଛି।

ଏଠି ମୋର କେତେ କାମ। ସେଥିପାଇଁ ତ ଏ ମାଟିର ମୋହ କାଟି ପାରିଲି ନାହିଁ। ସେ ମତେ ହାତଠାରି ଡାକିଲା, ଏଠି ଆସିଯାହା ଦେଖିଲି ସେଥିରେ ମୋ ଛାତି ଫାଟି ଯାଉଚି ଲୋ ବାଲିଫୁଲ। ଗାଁ ଗୁଡାକ ସବୁ ଧୀରେ ଧୀରେ ମଣିଷ ଶୂନ୍ୟ ହୋଇ ପଡୁଛନ୍ତି। ଆମ ପିଲାଦିନେ ଯେଉଁ ବେଡ଼ା ଡଙ୍ଗରରେ କାନ୍ଦୁଲ,ମାଣ୍ଡିଆ, ଧାନ, ଜନା, ବିରି, ମୁଗ, କୋଳଥ, ଅଳସୀ ହେଉଥିଲା ସେ ସବୁ ଜାଗାରେ ମକାଚାଷ ହେବା ତ ତୁ ଦେଖିଥିଲୁ। ସେତେବେଳେ ଆମେ ଦୁହେଁ କଥା ହେଉଥିଲେ ତୋ'ର ମନେଥିବ। ମକା ଚାଷରୁ କଞ୍ଚା ପଇସା ବାହାରିବ, ଆମ ଲୋକମାନଙ୍କର ଭାଗ୍ୟ ବଦଳେଇଦବ। ସତକୁ ସତ ଆମ ଭାଗ୍ୟ ବଦଳେଇ ଦେଲା। କିନ୍ତୁ ପ୍ରଗତି ଆଡକୁ ନୁହେଁ, ଦୁର୍ଗତି ଆଡକୁ। ରାସାୟନିକ ସାର, କୀଟ ନାଶକ ଦେଇ ଦୁଇ ଚାରିବର୍ଷ ଭଲ ଫସଲ ହେଲା, ଲୋକେ ଭଲ ଦି' ପଇସା ରୋଜଗାର କଲେ। ବେପାରୀମାନେ ବି ଠିକ୍ ଠିକ୍ ପଇସା ଦେଲେ। ଘରେ ଘରେ ଟିଭି, ମଟରସାଇକେଲ, ମୋବାଇଲ୍, ତା ସାଙ୍ଗକୁ ମଦପାଣିରେ ବି ଗାଁ ଭାସିଲା। କିନ୍ତୁ ଏ ସୁଖ ବେଶୀଦିନ ତିଷ୍ଠିଲା ନାହିଁ। କଞ୍ଚ ପଇସା ବାହାର କରୁଥିବା ମାଟି ଏବେ ବନ୍ଧ୍ୟା। ସେଠି ଦୁବଟିଏ ବି କଅଁଳୁନି। ମକା ଚାଷ ପାଇଁ ସବୁ ଅର୍ଥବଳ ଲଗେଇ ଏବେ ଏ ମଣିଷ ସର୍ବସ୍ୱାନ୍ତ। ସେମାନଙ୍କ ଦୁଃଖ ଦେଖି ହେଉନାହିଁ। ଲୋକମାନେ ଚାଷରୁ ମୁହଁ ଫେରେଇଲେଣି। ଋଣ କରଜରେ ବୁଡିକି ଅଛନ୍ତି ସେମାନେ। କୁଲି ଭୂତିକୁ ଆଶ୍ରୟ କରି ବଞ୍ଚୁଛନ୍ତି। ଏଇ କୁଲି ଭୂତି ଯଦି ଆମର ଏଇଠି କରନ୍ତେ ତ କିଛି ଅସୁବିଧା ନଥିଲା, କିନ୍ତୁ ଅସାଧୁ ଲୋକମାନଙ୍କ ପାଲରେ ପଡି ଏବେ ସେମାନେ ବିଦେଶ ଭୂଇଁରେ ଯେମିତି ହନ୍ତସନ୍ତ ହେଉଛନ୍ତି, ଦେଖିଲେ ତୋ ଛାତି ଫାଟିଯିବ।

ବାଲିଫୁଲ, ତୋର ମନେଥିବ, ଡାଳିମ୍ବ କଥା। ଗୁଜରାଟରେ କାମ ଦବ

ବୋଲି ଗୋଟାଏ ଦଲାଲ ତାକୁ ନେଇଯାଇଥିଲା ଅନ୍ୟମାନଙ୍କ ସହ। ଅନ୍ୟମାନେ ହାଡକଙ୍କାଳ ସାର ହୋଇ ଫେରିଆସିଲେ। କିନ୍ତୁ ଡାଳିମ୍ବ ଆଉ ଫେରିଲାନି। ତା ଖବର କେହି ଦେଇପାରୁ ନାହାଁନ୍ତି। ତା' ଦାଦୀବୁଢ଼ା ଆଖିରୁ ଲୁହ ଶୁଖୁନି। ଜନମ କାଳରୁ ସେ ତା ମାଆକୁ ହରେଇଥିଲା। ତା ଆଈ ତାକୁ ବଢ଼େଇଥିଲା। ତା ବାପ ଯାଇଥିଲା ଆନ୍ଧ୍ର ଇଟା ଗଡ଼ି। ସିଏ ତେଲଙ୍ଗା ମାଇପୀଟାଏ ରଖି ସେଇଠି ରହିଗଲା। ଆଉ ଫେରିଲାନି, ଝିଅ ଡାଳିମ୍ବ କି ବୁଢ଼ା ବାପମାଆଙ୍କ କଥା ଭୁଲିଗଲା। ବୁଢ଼ା ବୁଢ଼ୀଙ୍କ ବାର୍ଦ୍ଧକ୍ୟ ଭତ୍ତାରେ ଚଳିଯାଉଥିଲା। ବଞ୍ଚିଯାଉଥିଲେ ତିନୋଟି ପ୍ରାଣୀ। କୁଲିଭୂତି ଯାହା ମିଳୁଥିଲା, ବୁଢ଼ାବୁଢ଼ୀଙ୍କ ମଦପାଣି ଖର୍ଚ୍ଚକୁ ଯଥେଷ୍ଟ ହେଉଥିଲା। କିଛି ଅସୁବିଧା ହେଉନଥିଲା। ଗତବର୍ଷ ବୁଢ଼ା କାଇଲା ପଡିଲା, ଡାଳିମ୍ବ ଘରଡିହ ବନ୍ଧା ପକେଇ ବୁଢ଼ାର ଔଷଧ ଖର୍ଚ୍ଚ ତୁଲେଇଥିଲା। ସାଉକାରର ସୁଧ ବଢ଼ିଯାଉଛି, ସେ ପଇସା ମାଗୁଛି, ନହେଲେ ଘରୁ ଉଠିଯିବା ପାଇଁ ଧମକ ଦେଉଛି, ବୁଢ଼ାବୁଢ଼ୀ ସଂପୂର୍ଣ୍ଣ ନିଃସହାୟ। ବୁଢ଼ାବୁଢ଼ୀଙ୍କ ପେନ୍‌ସନ୍ ପଇସା ସୁଧ ବାବଦକୁ ଗଣି ନେଇଯାଉଛି, ଦୁଇବେଳା ଦୁଇମୁଠା ଭଲକରି ଖାଇବାକୁ ମିଳୁନାହିଁ ସେମାନଙ୍କୁ। ଡାଳିମ୍ବ ସେମାନଙ୍କ ଆଖିର ତାରା ଥିଲା। ଝିଅଟାକୁ ଘରଜୋଇଁ ରଖିବେ ବୋଲି ମନସ୍ଥ କରିଥିଲେ ବୁଢ଼ାବୁଢ଼ୀ। ସେଥିପାଇଁ ବାପାମାଆ ଛେଉଣ୍ଡ ଡମ୍ବରୁକୁ କଥା ବି ଦେଇସାରିଥିଲେ। ଏବେ କିନ୍ତୁ ଡାଳିମ୍ବ ଫେରିଲାନି। ମାଆ ବାପା ଛେଉଣ୍ଡ ଡମ୍ବରୁଟା ବି ଏବେ କେମିତି ଅଲଗା ମଣିଷ ହୋଇଗଲାଣି। ଏତେ ଖୁସି ମିଜାଜର ପିଲା। ସବୁବେଳେ ହସ ଗମାତ୍‌ରେ ଥାଏ। ଏବେ ପୁରା ଗୁମ୍‌ସୁମ୍। ଅଧିକାଂଶ ସମୟ ମଦପିଇ ନିଶାଗ୍ରସ୍ତ ହୋଇ ରହୁଛି। କିଏ ବଝିବ ତା ଦୁଃଖ ?

ବାଲିଫୁଲ ! ତୁ ତ ଆମମାନଙ୍କଠୁଁ ଅଧିକ ପାଠ ପଢ଼ିଛୁ, ଭୁବନେଶ୍ୱରରେ ମନ୍ତ୍ରୀ, ନେତା, ବଡବଡ ଅଫିସରମାନଙ୍କ ସହ ଚାହିଁଲେ ସହଜରେ ସାକ୍ଷାତ କରିପାରିବୁ। ଆମ ଗାଁର ଦୁଃଖ କଥା ଟିକେ କହୁନୁ ସେମାନଙ୍କ ଆଗରେ ! ଡାଳିମ୍ବର ଅଜାଆଈଙ୍କ ଅସହାୟତା, ଡମ୍ବରୁର ପ୍ରତୀକ୍ଷା ସେମିତି ପ୍ରତୀକ୍ଷାରେ ରହିଯିବ କି ବାଲିଫୁଲ ! ମତେ ଭାରି ଡରମାଡୁଛି, ଡାଳିମ୍ବ ଏବେ ଜୀବନରେ ଅଛି ନା ନାହିଁ। ତା ପ୍ରତି କିଛି ଅଘଟଣ ହୋଇନାହିଁ ତ ! ଟିଭି ଖବର କାଗଜରେ ନିତି ବାହୁରୁଛି ଯୁବତୀ ଚାଲାଣ କଥା। ଝିଅମାନଙ୍କୁ ଚାକିରି, ବିବାହ ଆଦି ଆଳ ଦେଖାଇ ବିକାକିଣା କରି ଦେଉଛନ୍ତି। ବିଦେଶକୁ ପଠେଇ ଦେଉଛନ୍ତି। ମା ଭଣ୍ଡାର ଘରିଆଣୀ ନ କରନ୍ତୁ, ଡାଳିମ୍ବ କପାଳରେ ଏମିତି କିଛି ଦୁର୍ଯୋଗ ନ ହେଇଥାଉ। ହେଲେ ସେ ଗଲା

କୁଆଡେ ? ତା ସାଙ୍ଗରେ ସୁରାଟ ଯାଇଥିବା ସମସ୍ତେ ଫେରିଲେ ହାଡମାଳ ନେଇ, ସେମାନେ କେହି ଦେଇପାରୁ ନାହାଁନ୍ତି ତାର ଖବର। ତୁ ତ ଜାଣିଛୁ ସେ ପାଠଶାଠ ପଢ଼ି ନାହିଁ। ହେଲେ ସବୁଠୁ ସୁନ୍ଦରୀ ଝିଅ ଥିଲା ଆମ ଗାଁର। ମୁଁ ତ ଭାବୁଛି ସେଇ ରୂପ ତା'ର କାଳ ହୋଇଛି। ସେ କୋଉ ଦେହ ଦଲାଲ ହାତରେ ପଡିଯାଇଛି।

ଆମେ ତିନିଜଣ ସାଙ୍ଗ ହୋଇ ସ୍କୁଲ ଯିବା ଆରମ୍ଭ କରିଥିଲୁ। ଡାଳିମ୍ବର ପାଠ ହୁଏ ନାହିଁ ଜମା, ପ୍ରଥମ କ୍ଲାସରୁ, ଅକ୍ଷର ଶିଖୁ ଶିଖୁ ଥରେ ଗୁରୁମା ତାକୁ ଦି' ପାହାର ପକେଇଲେ ଯେ ସେ ଆଉ ସ୍କୁଲ ଯିବା ନାଁ ଧରିଲାନି। ତା ଅଜା ଆଈଙ୍କ ବୋଲ ହାକ୍ କଲା। ରାନ୍ଧିବାଢ଼ି ଦେଲା। ଟିକେ ବଡ ହେଲାରୁ କୁଲିଭୂତି କରି ସେମାନଙ୍କ ମୁହଁରେ ଦାନା ଦେଲା। ମୁଁ ବି କୋଉ ଭଲଛାତ୍ରୀ ଥିଲି ଯେ! କଷ୍ଟେ ମଷ୍ଟେ ଦଶମ ଶ୍ରେଣୀଟା ଉଠିଗଲି, ତାହା ପୁଣି ତୋର ମୋର ପାଖାପାଖି ପରୀକ୍ଷା ହଲରେ ବସିଥିଲେ ବୋଲି। କିନ୍ତୁ +୨ଟା ଉଠିପାରିଲିନି। ମୁଁ ଏବେ ଭାବୁଛି, ସେଇଟା ବୋଧ ହୁଏ ଭଲ ହୋଇଛି। ଯଦି ପାଠ ଦି'ଅକ୍ଷର ପଢ଼ି ନଥା'ନ୍ତି, ଡାଳିମ୍ବ ପରି ମୁଁ କୋଉଠି ହଜିଯାଇଥା'ନ୍ତି ଯେ ମୋତେ ଖୋଜି ପାଇବା କଷ୍ଟ ହୋଇଥାନ୍ତା। ଆଉ ତୋ ପରି ଯଦି ଅଧିକ ପାଠ ପଢ଼ିଥା'ନ୍ତି ଆପଣାର ମଣିଷମାନଙ୍କ ଦୁଃଖ ସୁଖରେ ସାମିଲ ହୋଇ ପାରିନଥାନ୍ତି। ସେମାନଙ୍କ କଥା ଭାବିବା ପାଇଁ ମୋତେ ସମୟ ମିଳିନଥାନ୍ତା। ଡାଳିମ୍ବ ପରି ତ ମୁଁ ହତଭାଗିନୀ ନୁହେଁ, ତୋ ପରି ବି ସୋହାଗିନୀ ନୁହେଁ, କିନ୍ତୁ ମୁଁ ଆଦୌ ଅଭାଗିନୀ ନୁହେଁ। କାରଣ ମୋ ମାଟିର ସେବା କରିବା ପାଇଁ ମୋତେ ଯେଉଁ ଅବସର ମିଳୁଛି, ତାହା କେତେ ଜଣକ ଭାଗ୍ୟରେ ଜୁଟେ ?

ତୁ ମୋତେ ଭୁବନେଶ୍ୱର ଫେରିଯିବା ପାଇଁ ଲେଖିଛୁ। ମୋତେ କ୍ଷମା କରିଦେବୁ ବାଲିଫୁଲ। ମୁଁ ମୋର ଲକ୍ଷ୍ୟସ୍ଥଳର ସନ୍ଧାନ ପାଇଯାଇଛି। ସେଠାରେ ପହଞ୍ଚିବାକୁ ମୋତେ ଆଉ କୌଣସି ଅପ୍ରୀତିକର ପରିସ୍ଥିତି ସହ ସାଲିସ୍ କରିବାକୁ ପଡିବ ନାହିଁ। ମୋତେ ଭୁଲ୍ ବୁଝିବୁନି ବାଲିଫୁଲ। ତୋତେ ଆଘାତ ଦେବାପାଇଁ ମୁଁ ଏସବୁ କହୁ ନାହିଁ। ମୋ ଜୀବନ, ମୋ ଅଭିଜ୍ଞତା ମୋତେ ଯାହା ଶିକ୍ଷା ଦେଇଛି, ସେଇଥିରୁ ମୁଁ କହୁଛି। ସେଥିପାଇଁ ମୁଁ ତୋ'ର ସାହାଯ୍ୟ ପ୍ରାର୍ଥିନୀ। ମୋତେ ନିରାଶ କରିବୁନି ବାଲିଫୁଲ। ଡାଳିମ୍ବ ତୋର ସାଙ୍ଗ, ମୋର ସାଙ୍ଗ, ଆମ ଦୁହିଁଙ୍କର ସାଙ୍ଗ। ଆମ ଦୁହିଁଙ୍କର ଗାଁ ଝିଅ। ସାରା ଗାଁଟିର ସେ ଆଦରଣୀୟା ଥିଲା, ତାକୁ ଉଦ୍ଧାର କରିବା ଦାୟିତ୍ୱ ଆମ ସମସ୍ତଙ୍କର। ତୋ ଉପରେ ଆମ ସମସ୍ତଙ୍କର

ଭରସା ଅଛି । ତୁ ଯେତେବେଳେ ଆମ ଗାଁର ବିଲ, ବଣ, ପର୍ବତ ଡେଇଁ ବାହରକୁ ପାଠ ପଢ଼ିବାକୁ ଗଲୁ, ସମସ୍ତଙ୍କ ଆଶୀର୍ବାଦ ତୋ ସାଙ୍ଗରେ ଥିଲା, ସମସ୍ତେ କହୁଥିଲେ ତୁ ଗାଁର ନା ରଖିବୁ । ଗାଁ ଲୋକଙ୍କ ଦୁଃଖ ଦୂର କରିବୁ । ଏବେ ବି ସେ ଭରସା ଅତୁଟ ଅଛି, ତୁ ଥରେ ଆସିବୁ ଗାଁକୁ । ଗାଁ ଭୂଇଁରୁ ଲିଭି ଯାଇଥିବା ହସ, ଲୁଚି ଯାଇଥିବା ସ୍ୱପ୍ନ, ହଜି ଯାଇଥିବା ଖୁସିକୁ ଆମେ ସମସ୍ତେ ମିଳିମିଶି ଫେରେଇ ଆଣିବା ।

ଆଜି ଏତିକିରେ ରହୁଛି । ତୁ ଚିଠି ପାଇଁ ନିଶ୍ଚୟ ଆସିବୁ । ଆମେ ମିଳିମିଶି ସମସ୍ୟା ମାନଙ୍କର ସାମ୍ନା କରିବା ।

॥ ଇତି ॥

ତୋ'ର ବାଲିଫୁଲ

ପୋଷ୍ଟ ଅଫିସ୍‌ରେ ଚିଠିଟିକୁ ପକେଇ ଦେଇ ଆଶ୍ୱସ୍ତ ହେଲା ଦମୟନ୍ତୀ । ଅନୁଭବ କଲା, ସେ ଏବେ ଏକାକୀ ନୁହେଁ, ବାଲିଫୁଲ ନିଶ୍ଚୟ ଆସିବ । ତା ଚିଠିଟିରେ ଆପଣାର ମଣିଷ ପାଇଁ ଯେଉଁ ଅବଦମିତ ଆବେଗର ବାସ୍ପ ବାରି ହେଉଥିଲା, ତାହା ବ୍ୟର୍ଥ ଯିବନାହିଁ ବୋଲି ହୃଦ୍‌ବୋଧ ହେଲା ଦମୟନ୍ତୀର ।

ବାଲିଫୁଲ ଆସିବ, ଗାଁ ମୁଣ୍ଡରେ କୋଉକାଳୁ ଗଦା ହୋଇଥିବା ମଇଳା ଗଦାଟା ଦେଖି ଦମୟନ୍ତୀ ଭାବିଲା, ଛି, ଏତେଦିନ ପରେ ଆସିବ ବାଲିଫୁଲ ଗାଁ ମୁଣ୍ଡରେ ଏଇ ମଇଳା ଗଦା ଦେଖି କ'ଣ ଭାବିବ ? ଏଗୁଡା ସବୁ ସଫା କରିବାର ଅଛି, ଗାଁ ପୋଖରୀଟା ବି ଦଳପୂର୍ଣ୍ଣ ହୋଇଯାଇଛି ବାଲିଫୁଲ କ'ଣ ଏଇ ଦଳ ପୋଖରୀରେ ଗାଧୋଇବ ? ପିଲାମାନଙ୍କୁ ଏକାଠି କରି ଏସବୁ ସଫାକରିବାକୁ ହେବ । ସେ ଉଚ୍ଚାଟିତ ହୋଇ ପଡିଲା, ତାକୁ ସ୍ୱାଗତ କରିବା ପାଇଁ ବି ବ୍ୟବସ୍ଥା କରିବାକୁ ହେବ । ଆଉ ସମୟ ନାହିଁ ।

କେଜାଣି କେତେବେଳେ ଆସି ପହଞ୍ଚିବ ବାଲିଫୁଲ ?

# ଅଭିନବ ନୀଳାଦ୍ରି ବିଜେ

"ପ୍ରମେଶ୍ୱର ପାତାଳୀ ହୋଇଗଲେ। ପୁଣି ଓଡ଼ିଶାକୁ ବିଧାତା ବାମ ହେଲା।" ରାତି ପାହିଲା ବେଳକୁ ଦୁଃସମ୍ବାଦଟା ବିଜୁଳି ବେଗରେ ଶ୍ରୀକ୍ଷେତ୍ରର କୋଣେ ଅନୁକୋଣେ ପହଞ୍ଚି ଯାଇଥିଲା। ବାହୁଡ଼ା ଦଶମୀ ପରେ ଅଧର ପଣା ଏକାଦଶୀ। ବାହୁଡ଼ା ଦଶମୀ ଦିନ ରଥ ଉପରେ ଅମୀନ ଉନ୍ଦର ଛେରାପହଁରା ଆଦି ନୀତିକାନ୍ତିରେ ଶ୍ରଦ୍ଧାଳୁଙ୍କ ମନରୁ ମରିଯାଇଥିବା ସରାଗ ଅଧରପଣା ବେଳକୁ ପୁଣି ଉଛୁଳି ପଡିଥିଲା। ତା ପରଦିନକୁ ଦ୍ୱାଦଶୀ। ମହାପ୍ରଭୁଙ୍କର ନୀଳାଦ୍ରି ବିଜେ। ପଞ୍ଚୁକୋଶୀ ଯାତ୍ରୀ ଓ ପଶ୍ଚିମା ଯାତ୍ରୀଙ୍କର ଗହଳ ଚହଳ ଆଉ ବେଶି ଜଣା ପଡୁନଥିଲା। ସହଜେ ମୋଗଲ ଗୋଳ ଲାଗିଛି। ଦିନ ଥାଉ ଥାଉ ଯାତ୍ରୀମାନେ ଯେ ଯାହାର ରାସ୍ତା ଧରିଲେଣି। ଦ୍ୱାଦଶୀ ଦିନର ସବୁ ନୀତିକାନ୍ତି ନିଶାର୍ଦ୍ଧରେ। ଲକ୍ଷ୍ମୀଙ୍କର ମାନଭଞ୍ଜନ ଲକ୍ଷ୍ମୀ ନାରାୟଣ କଳି। ବଚନିକା ଛଟାଗାଳି। ମାହାରୀ ସେବା। କିନ୍ତୁ ସେଇ ନିଶାର୍ଦ୍ଧରେ ଘଟିଲା ଅଘଟଣ ନୀଳାଦ୍ରି ବିଜୟ ଆଉ ସମ୍ଭବ ହେଲାନାହିଁ।

କେମିତି ସମ୍ଭବ ହେବ ହେ! ମୋଗଲ ଅଇଁଠା ପତରଚଟା ରଥ ଉପରେ ଚଢ଼ି ଠାକୁର ରାଜାଙ୍କ ଅଧିକାର ଛଡେଇନେବ। ବଳୀୟାର ଭୁଜ ସହିବେଟିକି!

ଠାକୁରରାଜାଙ୍କ ଅପମାନ ବଡଠାକୁରଙ୍କ ଅପମାନ । ତାଙ୍କର ମାନ ରଖିବାକୁ ପରା ସିଏ କାଳିଆ ରାଉତ ସାଜି କାଞ୍ଚି କଟକାଇ କରିଥିଲେ ।

ମାଳିକାର କଥା ସତ ହେଲା । ଓଡ଼ିଶା କଉଡି ମୋଗଲ ଖାଇବେ । ଶ୍ରୀମନ୍ଦିର ଶୂନ୍ୟ ହେବ । ବାଇଶି ପାହାଚରେ ମୀନ ଖେଳିବ । ବଡ ଦେଉଳରୁ ପଥର ଖସିବ । ସବୁ ଅକ୍ଷରେ ଅକ୍ଷରେ ଘଟିବ । ଚର୍ମଚକ୍ଷୁ ଥିଲେ କେତେ କ'ଣ ନ ଦେଖିବ ଏ ମଣିଷ ।

କଳିକାଳ, କଳିକାଳ । ଘୋର କଳିକାଳ । ରାଜ ତ କଲମା ପଢ଼ି ଯବନ ରାଣୀ ରଖିଲେ । ଜାତି ହାରି ବିଧର୍ମୀ ହେଲେ । ମ୍ଲେଛମାନଙ୍କ ସାଙ୍ଗରେ ଗୋଟାଏ ପଙ୍ଗତରେ ବସିଲେ । ଆଉ ଶ୍ରୀକ୍ଷେତ୍ରରେ ଧର୍ମ ରହିଲା କୋଉଠି ଯେ ଶ୍ରୀବନ୍ଦ ଖଣ୍ଡା ଶାଳରେ ବିରାଜମାନ କରିବେ ଚତୁର୍ଦ୍ଧାମୂର୍ତ୍ତି !

ସବୁ ଭାଗ୍ୟର ବିପାକ । ଓଡ଼ିଶା କପାଳରେ ଆଉ ସୁଖ ନାହିଁ । ଏଥର ବିପଦ ମାଡି ଆସିଲା ବୋଲି ଜାଣ । ଖୋର୍ଦ୍ଧା ସିଂହାସନ ଏବେ ଶୂନ୍ୟ । ରାଜା ଦେଶାନ୍ତରୀ ହୋଇ ବୁଲୁଛନ୍ତି । ଅଭିମାନରେ ଅନ୍ତର୍ଦ୍ଧାନ ହୋଇଗଲେ ମହାପ୍ରଭୁ ।

ଶ୍ରୀ ଜୀଉମାନଙ୍କ ପାତାଳୀ ହେବା ସାଙ୍ଗକୁ ଭୟାର୍ତ୍ତ ଭକ୍ତଙ୍କର ଏ ଅଛିଣ୍ଡା ଉକ୍ତି ପ୍ରତ୍ୟୁକ୍ତି ପୁରୁଷୋତ୍ତମ କ୍ଷେତ୍ରର ଗଗନ ପବନକୁ ଭାରାକ୍ରାନ୍ତ କରିଦେଉଥିଲା । ଏ ଅଭାବିତ ଘଟଣା ପାଇଁ ସମ୍ଭାବ୍ୟ କାରଣ ଖୋଜି ସାମୟିକ ଆତ୍ମସାନ୍ତ୍ୱନାର ନିଷ୍ଫଳ ପ୍ରଚେଷ୍ଟା କରୁଥିଲେ ପ୍ରଜାପାଟକ । ତଥାପି ବୃଶ୍ଚିକର ଦଂଶନ ପରି ଠାକୁରମାନଙ୍କର ଗୋପ୍ୟ ହେବା ସମ୍ବାଦ ସେମାନଙ୍କୁ ଅତିଷ୍ଠ କରୁଥିଲା ।

ସମ୍ବାଦଟା ପ୍ରଘଟ ହେବା ପରଠୁଁ ବଡ ଦାଣ୍ଡରେ ସ୍ତବ୍ଧ ନିରବତା । ଅନ୍ନପୂର୍ଣ୍ଣା ମହାଲକ୍ଷ୍ମୀଙ୍କ ରୋଷଘରେ ଆଉ ଷାଠିଏ ପଉଟି ଅନ୍ନ ଫୁଟୁନି । ଆନନ୍ଦବଜାର ଖାଁଖାଁ । ପୁଷ୍ପାଳକ ସିଂହାରୀ, ଗରାବଡୁ ପାଣିଛଡା ପଣ୍ଡା, ଶ୍ରୀଅଙ୍ଗ ସେବକ ଘଟୁଆରୀ ଖୁଣ୍ଟିଆ ଆଦି ଛତିଶା ନିଯୋଗ ନିକମା ହୋଇ ବସିଛନ୍ତି । ଭାଙ୍ଗ ଆଉ ମରିଚିପାଣିରେ କଟୁଚି ଦିନରାତି । ପଇସେ ଅଧଲେ ରୋଜଗାର ନାହିଁ । ତା ବୋଲି କ'ଣ ଶ୍ରୀମନ୍ଦିର ଛାଡ଼ି ଚାଲିଯିବେ ! ଚକଡା ଜଗି ପଡିରହିଛନ୍ତି । ମଦନମୋହନଙ୍କ ପାଖରେ ଯେଉଁ ପ୍ରତୀକ ସେବା ଚାଲିଛି, ସେ ଖାଲି ନାମକୁ ମାତ୍ର । ବସ୍ତ୍ରଭାବେ ସୁତ୍ର ଦାନ ପରି ଆଗ୍ରହ ନାହିଁ, ଉଚ୍ଚାଟ ନାହିଁ । ଉଦ୍ଦୀପନା ନାହିଁ ।

ତେଲଙ୍ଗା ମୁକୁନ୍ଦ ଦେବଙ୍କ ସମୟରେ କୁଆଡେ ଏମିତି ଥରେ ମୋଗଲ ଗୋଳ ହୋଇଥିଲା । ହୁଲସ୍ଥୁଲ ହୋଇଥିଲା ପୃଥି । କଳାପାହାଡ ଚମଦଉଡିରେ ଶ୍ରୀ

ବିଗ୍ରହମାନଙ୍କୁ ବାନ୍ଧି ଘୋଷାଡି ଘୋଷାଡି ନେଇଥିଲା ଗଙ୍ଗାକୂଳ ପର୍ଯ୍ୟନ୍ତ। ସେଇଠି ତାଙ୍କୁ ଦଗ୍ଧ କରିଥିଲା। ଅଧାପୋଡା ଦାରୁକୁ ଭସେଇ ଦେଇଥିଲା ଗଙ୍ଗା ଗର୍ଭରେ। ସେତେବେଳେ ବି ମନ୍ଦିର ଏମିତି ଶୂନ୍ୟ ପଡିଥିଲା। ନବକଳେବର ହେବା ପର୍ଯ୍ୟନ୍ତ। ସବୁ ସେଇ ଇଚ୍ଛାମୟଙ୍କ ଇଚ୍ଛା। ନିଜ ଇଚ୍ଛାରେ ସେ ଚତୁର୍ଦ୍ଧା ମୂର୍ତ୍ତି। ସ୍ୱଇଚ୍ଛାରେ ଅନ୍ତର୍ଦ୍ଧାନ, ଶୂନ୍ୟ ରୂପ, କାହାର ସାଧ ଅଛି ଯେ ତାଙ୍କୁ ନିଜ ଅକ୍ତିଆରକୁ ଆଣିବ ? ସେ ବଳେବଳେ ଧରା ଦିଅନ୍ତି, ପୁଣି କେତେବେଳେ ଏମିତି ଦୂରେଇ ଯାଆନ୍ତି ଯେ ଶତଶତ ଆକୁତି ଅନୁନୟ ପୂଜା ଉପାସନା ବ୍ୟର୍ଥଯାଏ। ତାଙ୍କ ଛାୟାଟିକକର ସନ୍ଧାନ ବି ମିଳେ ନାହିଁ। ସେ ଭାବର ଦେବତା, ଅଭାବକୁ ଦୂର।

ଆଶ୍ୱାସନା ପାଇଁ ଯେତେ ତର୍କର ପ୍ରଲେପ ଦେଲେ ବି ମନବୁଝୁନଥିଲା। ଶ୍ରୀ ବିଗ୍ରହ ବିହୀନ ଶ୍ରୀକ୍ଷେତ୍ର ଓଡ଼ିଆ ଜାତିର ଆତ୍ମବଳକୁ ଭାଙ୍ଗି ଦେଉଥିଲା। ଘରିଆଡେ ହା ହୁତାଶ। ଶୂନ୍ୟତାର ରୁଦ୍ଧ ବିଳାପ। ମୁଖେ ମୁଖେ ନାନା ଗୁଜବ, କପୋଳ କଳ୍ପିତ କାହାଣୀ ଶ୍ରୀକ୍ଷେତ୍ରକୁ ଉଦ୍‌ବେଗ କ୍ଷେତ୍ର କରି ରଖିଥିଲା।

ଶ୍ରୀ ଠାକୁରମାନଙ୍କ ସହ ରାଜା ରାମଚନ୍ଦ୍ର ଦେବଙ୍କ ଅନ୍ତର୍ଦ୍ଧାନ ପ୍ରଜାପାଟକଙ୍କୁ ଆହୁରି ବିଭ୍ରାନ୍ତ କରଦେଇଥିଲା। ତର୍କୀ ଖାଁ ମୋଗଲର ଭଉଣୀଙ୍କୁ ବିବାହ କଲେ ତ କ'ଣ ହେଲା, ରାଜଗୁରୁ ଲକ୍ଷ୍ମୀ ପରମଗୁରୁ ତ ତାଙ୍କୁ ପ୍ରାୟଶ୍ଚିତ କରି ସ୍ୱଧର୍ମକୁ ଫେରି ଆସିବାକୁ ଅନୁମତି ଦେଲେ। ସେଥିପାଇଁ ରାଜା ରାମଚନ୍ଦ୍ରପୁର ଶାସନ ବି ବସେଇଲେ। ରତ୍ନବେଦୀ ଉପରେ ନହେଉ ପଛେ ଜଗମୋହନ ମଣ୍ଡପରେ ପତିତପାବନ ସ୍ଥାପନ ହେଲେ କେବଳ ତାଙ୍କରି ଦର୍ଶନ ପାଇଁ ମୁକ୍ତି ମଣ୍ଡପ ବି ଏଥିରେ ସମ୍ମତ ହେଲେ। ବଳୀୟାରଭୂଜ ତ ସର୍ବଦା ଅଗତିର ଗତି। ସେ ସ୍ୱଧର୍ମୀର ଯେତିକି ବିଧର୍ମୀର ବି ସେତିକି। ପତିତମାନଙ୍କ ପାଇଁ ତ ତାଙ୍କର ବାରହାତ ପତିତପାବନ ବାନା ଫର ଫର ହେଇ ଉଡୁଛି। ଶ୍ରୀମନ୍ଦିର ଶୂନ୍ୟ ପଡିଥିବାବେଳେ ଖୋର୍ଦ୍ଧା ସିଂହାସନ ଶୂନ୍ୟ କରି ଏମିତି ଅନ୍ତର୍ଦ୍ଧାନ ହୋଇଯିବାଟା କ'ଣ ଉଚିତ୍ ହେଲା ରାଜାଙ୍କର ? ତେହିଁକି ପୁଣି ମହରାଣୀ ଲଳିତା ପାଟ ମହାଦେଈଙ୍କର ଖୋର୍ଦ୍ଧା ସିଂହାସନ ପାଇଁ ମୋଗଲ ନାଏବ ଅମୀନଚାନ୍ଦ ସହ ଗୋପନ ସଉଦା। କୁମାର ଭାଗିରଥି ଦେବଙ୍କୁ ଖୋର୍ଦ୍ଧା ସିଂହାସନରେ ବସାଇବା ସର୍ତ୍ତରେ ସେ ପଛିମା ଅମୀନଚାନ୍ଦକୁ ରଥ ଉପରେ ଠାକୁର ରାଜାଙ୍କ ଅଧିକାର ଦେଇଛନ୍ତି। ଏ ହୀନ ଚକ୍ରାନ୍ତରେ ମୁଖ୍ୟ ପୁରୋଧା ବଡ ପରିଛା ଗୌରୀ ରାଜଗୁରୁ, ପ୍ରଚୁର ଉତ୍କୋଚ ପ୍ରଲୋଭନରେ। ଅମୀନଚାନ୍ଦର ଇଚ୍ଛା ପୂର୍ଣ୍ଣ ହେଲା ସିନା ଠାକୁର ରୁଷ୍ଟ ହୋଇ ଅନ୍ତର୍ଦ୍ଧାନ ହୋଇଗଲେ।

ରାଜ୍ୟକୁ ଯେତେବେଳେ ବିପର୍ଯ୍ୟୟ ଆସେ ଦାୟିତ୍ୱବାନ ଲୋକମାନଙ୍କର ଏମିତି ବୁଦ୍ଧିଭ୍ରଷ୍ଟ ହୋଇଯାଏ। ମୋହଗ୍ରସ୍ତ ହୁଅନ୍ତି ସେମାନେ। ସେମାନଙ୍କ ଲାଳସାର ବିଷରେ ଅତିଷ୍ଠ ହୁଅନ୍ତି ଜନସାଧାରଣ। ହୀନପ୍ରଭ ହୋଇପଡନ୍ତି। ଓଡ଼ିଶାର ଜନଜୀବନ ହୀନ ଚକ୍ରାନ୍ତ ଈର୍ଷା ଅସୂୟା ଅବିଶ୍ୱାସ ସନ୍ଦେହର ବଳୟରେ କବଳିତ। ସେମାନଙ୍କ ନିପୀଡିତ ଆଶାର ଆଶ୍ୱାସ ପାଇଁ ଶ୍ରୀ ମନ୍ଦିରରେ ଦେବତା ନାହାଁନ୍ତି। ଓଡ଼ିଆର ପ୍ରାଣ ସ୍ପନ୍ଦନ ହୀନ। ଶୂନ୍ୟ ମନ୍ଦିରରେ କେବଳ ହା' ହତୋସ୍ମି।

ଓଡ଼ିଶାର ଏହି ଦାରୁଣ ସଂକଟ କାଳରେ ରାଜ ପ୍ରାସାଦର ରାଜଐଶ୍ୱର୍ଯ୍ୟ ତ୍ୟାଗକରି ପାଗଳ ଦରବେଶଙ୍କ ପରି ଘୁରି ବୁଲୁଥିଲେ ଉତ୍କଳର ଗଜପତି ବୀରଧିବୀରବର ଶ୍ରୀ ରାମଚନ୍ଦ୍ର ଦେବ। ଛୁଆପରି କାହିଁ ଚିଲିକାର ଦୁର୍ଗମ ଗୁରୁବାଇ ଦୀପ ସେଠାରୁ ପୁଣି ଟିକାଲୀ ରଘୁନାଥ ପୁରର ମହାକାନ୍ତାରରେ ଶ୍ରୀବିଗ୍ରହମାନଙ୍କ ନିରାପତ୍ତା ଖୋଜି ବୁଲୁଥିଲେ। ଶ୍ରୀମନ୍ଦିରରେ ମହାପ୍ରଭୁଙ୍କ ଅବର୍ତ୍ତମାନ ଓଡ଼ିଆମାନଙ୍କୁ ଅସହାୟତାକୁ କିପରି ଶତଗୁଣିତ କରିଦେଇଥିବ, ସେମାନଙ୍କ ବିଶ୍ୱାସ କିପରି ବିପନ୍ନ ହେଇ ପଡିଥିବ ଏହି ମହାକାନ୍ତରରେ ରହି ସୁଦ୍ଧା ସ୍ପଷ୍ଟ ଉପଲବ୍ଧ କରୁଥିଲେ ରାଜା ରାମଚନ୍ଦ୍ର ଦେବ। ଟିକାଲୀ ମହାକାନ୍ତରର ଗୋଟାଏ ପଥର ଚଟାଣଟାରେ ବସି ସେ ଅନୁଚ୍ଚାରିତ ସ୍ୱରରେ କହୁଥିଲେ- "ମୋର ସିଂହାସନ ପ୍ରତି ଆସକ୍ତି ନାହିଁ। କୁମାର ଭାଗୀରଥି ଦେବ ରାଜା ହୁଅନ୍ତୁ। ଖୋର୍ଦ୍ଧା ମୁଲକ ସ୍ୱାଧୀନ ହେଉ ମୁଁ ପଛେ ମ୍ଳେଚ୍ଛ ଯବନ ହୁଏ, ପତିତ ହୁଏ। ତାଙ୍କ ସେବା ପୂଜାରୁ ବଞ୍ଚିତ ହୁଏ। ମୋର କ୍ଷୋଭ ନାହିଁ। କିନ୍ତୁ ଓଡ଼ିଆ ଜାତିର ବିଶ୍ୱାସର ଆଧାର ପ୍ରାଣ ସ୍ପନ୍ଦନ ଶ୍ରୀ ଜଗନ୍ନାଥ ସୁରକ୍ଷିତ ହୁଅନ୍ତୁ। ମହାକାନ୍ତାର ଛାଡି ସେ ମହାବେଦୀ ଉପରେ ବିଜେ ହୁଅନ୍ତୁ। ଓଡ଼ିଶାବାସୀଙ୍କୁ ବଳିଆର ଭୂଜ ଟେକି ଅଭୟ ପ୍ରଦାନ କରୁଥାଆନ୍ତୁ। ଏଥର ନିଷ୍ପତ୍ତି ନେବା ପାଇଁ ହେବ। ଯେତେ ଆପଦ ବିପଦ ଆସୁ ପଛେ, ଯେତେ ଝଡଝଞ୍ଜା ଆସୁ ସେ ଆଉ ପଛକୁ ଫେରିବେ ନାହିଁ। ସଂଗ୍ରାମ ଅନାହତ ରଖିବେ। ଶ୍ରୀ ବଳିୟାର ଭୂଜଙ୍କ କରୁଣାରୁ ସବୁ ସଙ୍କଟ ହୀନପ୍ରଭ ହୋଇପଡିବ। ଏବେ ନୀଳାଦ୍ରି ଅଭିଯାତ୍ରା ହିଁ ଏକମାତ୍ର ଲକ୍ଷ୍ୟ। ଏକ ଅନିର୍ବଚନୀୟ ଆତ୍ମବିଶ୍ୱାସରେ ତେଜୋଦ୍ଦୀପ୍ତ ହୋଇପଡିଲେ ରାମଚନ୍ଦ୍ର ଦେବ।

ପୂର୍ବ ଆକାଶରେ ତାଳପତ୍ର ଉହାଡରୁ ପୂର୍ଣ୍ଣମୀ ଜହ୍ନଟା ହସି ହସି ଆକାଶ ଛାତିକୁ ଲମ୍ଫ ପ୍ରଦାନ କରୁଥିଲା। କ୍ରମାନ୍ୱୟରେ ଟଟିଭ ଦମ୍ପତିଟିର ଅଶାନ୍ତ ରବ ବନଭୂମିକୁ ମୁହୂର୍ତ୍ତକ ପାଇଁ ଅଶାନ୍ତ କରିଦେଲା। ଅସ୍ଥିର ଆବେଗରେ ରାମଚନ୍ଦ୍ର

ଦେବ ପଥର ମୁଣ୍ଡିଆ ଉପରୁ ଉଠି ଠିଆ ହୋଇପଡିଲେ। ଦୁଇ ବାହୁକୁ ବକ୍ଷରେ ଛନ୍ଦି ସେ ଅସ୍ଥିର ପଦ ଚାରଣ କରିବାକୁ ଲାଗିଲେ।

କେତେ ସମୟ ସେ ଏମିତି ପଦଚାରଣା କରିଥାନ୍ତେ କେଜାଣି, କିନ୍ତୁ ଆକସ୍ମିକ ଭାବରେ ଲକ୍ଷ୍ମୀ ପରମଗୁରୁଙ୍କ ଆବିର୍ଭାବ ତାଙ୍କ ଗତିକୁ ମନ୍ଥର କରିଦେଲା। ଲକ୍ଷ୍ମୀପରମ ଗୁରୁ ତାଙ୍କର ପରମ ହିତୈଷୀ। ଖୋର୍ଦ୍ଧା ମୁଲକର ଏ ଦୁର୍ଦ୍ଦିନରେ ରାମଚନ୍ଦ୍ରଦେବଙ୍କ ସଂଘର୍ଷ ସଂଘାତମୟ ନିଃସଙ୍ଗ ଜୀବନରେ ଏକମାତ୍ର ସଖା, ସହାୟ। ମାର୍ଗଦର୍ଶକ, ପରାମର୍ଶଦାତା। ପରମ ଉଲ୍ଲାସରେ ଲକ୍ଷ୍ମୀ ପରମଗୁରୁଙ୍କ ସହ କୁଶଳ ସମ୍ଭାଷଣ ଅନ୍ତେ ପରମଗୁରୁଙ୍କ କୁଞ୍ଚିତ କପାଳରେ ଚିନ୍ତିତ ଭାବରେଖା ସନ୍ଦର୍ଶନ କରି ମହାରାଜ ବ୍ୟତିବ୍ୟସ୍ତ ହୋଇପଡିଲେ । ଶଙ୍କା ବିଜଡିତ କଣ୍ଠରେ କହିଲେ -

କିଛି ଦୁଃସମ୍ବାଦ ରାଜଗୁରୁ!

କୌଣସି ଗୌର ଚନ୍ଦ୍ରିକା ନ କରି ରାଜଗୁରୁ କହିଲେ - ବାର୍ଷିକ ଚଉଦ ଲକ୍ଷଟଙ୍କା ଓ ଜଗନ୍ନାଥଙ୍କୁ ଶ୍ରୀମନ୍ଦିରରେ ପୁନଃ ସଂସ୍ଥାପନ ସର୍ତ୍ତରେ ଭାଗିରଥୀ ଦେବଙ୍କୁ ସିଂହାସନ ଅର୍ପଣ ପାଇଁ ରାଜି ହୋଇଛନ୍ତି ସୁଜାଖାଁ। ସେହି ସର୍ତ୍ତକୁ ଚୁଡାନ୍ତ ରୂପ ଦେବାପାଇଁ ପ୍ରାଣାନ୍ତକ ଉଦ୍ୟମ ଜାରି ରଖିଛନ୍ତି ଅମୀନଚାନ୍ଦ ଓ ମହାରାଣୀ ଲଳିତା ପାଟ ମହାଦେଈ। ଭାବାଳୁ ପ୍ରଜାକୁଳ ଯେପରି ଏଥିପାଇଁ କୌଣସି ବିଘ୍ନ ନ ଘଟାନ୍ତି, ସେଥିପାଇଁ ଗାଁ ଗାଁରେ କପୋଳ କଳ୍ପିତ କାହାଣୀ ସବୁର ଚର୍ଚ୍ଚା ଚାଲିଛି। ବିସ୍ମୟାବିମୁଢ଼ ହୋଇଗଲେ ରାମଚନ୍ଦ୍ର ଦେବ। ଅହେତୁକ ଆଶଙ୍କାର ବାଦଲ ଖଣ୍ଡେ ଢ଼ାଙ୍କି ହୋଇଗଲା ରାମଚନ୍ଦ୍ର ଦେବଙ୍କ ସ୍ୱଚ୍ଛ ନିର୍ମଳ ମନ ଆକାଶରେ। ଲଳିତା ମହାଦେଈ ଇନ୍ଦ୍ରଦ୍ୟୁମ୍ନ ପାଲଟିଗଲେ ନା କ'ଣ? ବିଶ୍ୱକର୍ମାଙ୍କୁ ହକାରି ଜଗନ୍ନାଥଙ୍କ ନବକଳେବର ନିର୍ମା କରିଦେବେ! ଏଣେ  ମହାକାନ୍ତାରରେ ମହାପ୍ରଭୁ ନିର୍ବାସିତ ଥାଉଥାଉ ସେ କିପରି ଶ୍ରୀମନ୍ଦିର ପୂର୍ଣ୍ଣ କରିବାର ପ୍ରତିଶ୍ରୁତି ଦେଇପାରୁଛନ୍ତି? ମହାରାଣୀଙ୍କର ସମ୍ପତ୍ତି ଓ କ୍ଷମତା ଲାଳସା ସଂପର୍କରେ ସଂପୂର୍ଣ୍ଣ ଅବଗତ ଥିଲେ ମହାରାଜ। ତା ସଙ୍ଗେ ମହାରାଜଙ୍କ ସହ ତାଙ୍କର ବୈରତା। ପୁଣି ରିଜିଆର ପାଣି ଗ୍ରହଣ କରିବା ଦିନଠୁଁ ସେ ବୈରତା ଆହୁରି ଉଗ୍ରହୋଇ ପଡିଛି। ଆହତ ସର୍ପିଣୀ ପରି ସେ ଉତ୍‌ଫଣ ହୋଇରହିଛନ୍ତି। ଭାଗିରଥି କୁମାରଙ୍କୁ ସିଂହାସନାରୁଢ଼ କରିବା ଅପେକ୍ଷା ରାମଚନ୍ଦ୍ର ଦେବଙ୍କୁ ସିଂହାସନଠାରୁ ଦୂରେଇ ରଖିବାର ପ୍ରବୃତ୍ତି ତାଙ୍କର ସକଳ ମାନବିକ ମୂଲ୍ୟବୋଧକୁ ଭୂଲୁଣ୍ଠିତ କରିଦେଇଛି। ପ୍ରତିହିଂସା ପରାୟଣରେ ସେ ଏବେ ଗୋଟାଏ ଜ୍ୱଳନ୍ତ ଅଗ୍ନିପିଣ୍ଡ। ସ୍ୱାର୍ଥସାଧନ ପାଇଁ ସେ ଜଗନ୍ନାଥଙ୍କର

କାଷ୍ଠ ପୁତ୍ତଳିକା ଗଢ଼ି ଉତ୍କଳୀୟ ଜନତାଙ୍କୁ ପ୍ରତାରିତ କରିବାକୁ ପଶ୍ଚାତପଦ ହେବେ ନାହିଁ।

ଆଶଙ୍କା ଅମୂଳକ ନଥିଲା ରାମଚନ୍ଦ୍ର ଦେବଙ୍କର। ପ୍ରଚୁର ଉତ୍କୋଚ ଓ ଜମି ଦାୟଜର ପ୍ରଲୋଭନ ଦେଇ ସେ ବେଶ୍ କିଛି ସେବକମାନଙ୍କୁ ନିଜ ପକ୍ଷଭୁକ୍ତ କରିପାରିଥିଲେ। ପ୍ରଜାପାଟକଙ୍କୁ ବିଭ୍ରାନ୍ତ କରିବାପାଇଁ ମହାରାଜଙ୍କ ଧର୍ମାନ୍ତର ଓ ମ୍ଳେଚ୍ଛ ରାଣୀ ଗ୍ରହଣ ପ୍ରସଙ୍ଗକୁ ମୁଖ୍ୟ ଆଧାର କରି ସେ ନିଜ ସ୍ଥିତି ସୁଦୃଢ଼ କରିବାପାଇଁ ପ୍ରାଣପ୍ରଣେ ଲାଗିପଡିଥିଲେ।

ଯୋଡା ଆଷାଢ଼ ନାହିଁ, ମଳମାସ ନାହିଁ, ଦେଉଳରେ ଦିଅ ନାହାଁନ୍ତି। ତଥାପି ଚାଲିଥିଲା ନବକଳେବରର ପ୍ରହସନ। ରତ୍ନ ସିଂହାସନରେ ଦିଅଙ୍କ ଅବର୍ତ୍ତମାନରେ ବି ଚତୁର୍ଦ୍ଧାମୂର୍ତ୍ତିଙ୍କର ନବକଳେବର ସମ୍ଭବ। କଳା ପାହାଡ ଦାରୁଦେବତାଙ୍କୁ ଗଙ୍ଗାକୂଳରେ ଭସ୍ମକରିଦେବା ପରେ ତ ପୁଣି ନବକଳେବର ସମ୍ଭବ ହୋଇଥିଲା। ସେତେବେଳେ ପୁରୁଣା ବିଗ୍ରହଙ୍କ ପ୍ରଶ୍ନ ଉଠି ନଥିଲା।

ଏ ଯୁକ୍ତିକୁ ଖଣ୍ଡନ କରିବାପାଇଁ ତଥ୍ୟର ଅଭାବ ନଥିଲା। କିନ୍ତୁ ବିଶର ମହାନ୍ତି ଯେ ବ୍ରହ୍ମପିଣ୍ଡ ଆଣି ସମର୍ପିଥିଲା ଗଜପତିଙ୍କୁ। ଏକଥା ମୁକ୍ତିମଣ୍ଡପର ମହାତ୍ମାମାନେ ବିସ୍ମୃତ ହୋଇଗଲେ କେମିତି ? ପଣ୍ଡାପଡ଼ିହାରୀ, ଛତିଶା ନିଯୋଗ, ଶ୍ରଦ୍ଧାଳୁ ଭକ୍ତ ଓ ପ୍ରଜାପାଟକଙ୍କ ଏ ଉତ୍ପୀଡକ ଜିଜ୍ଞାସାରେ ଅସିହିଷ୍ଣୁ ହୋଇ ବିସ୍ଫୋରଣ କରିଥିଲେ ମହାରାଣୀ।

ଆଃ- ଅକାଳେ ନିୟମ ନାସ୍ତି। ବର୍ଷେ ହେଲା ଶ୍ରୀବତ୍ସ ଖଣ୍ଡାଶାଳ ଶୂନ୍ୟପଡିଛି। କଲମା ପଢ଼ି ରାଜା ମ୍ଳେଚ୍ଛ ରାଣୀ ଗ୍ରହଣ କଲେ। ଧର୍ମଚ୍ୟୁତ ହେଲେ। କର୍ତ୍ତବ୍ୟ ହୁଡିଲେ। କେତେକାଳ ଖୋର୍ଦ୍ଧା ମୁଲକରେ ଏମିତି ଅରାଜକତା ଚାଲିଥିବ। ରତ୍ନସିଂହାସନ ପୂର୍ଣ୍ଣ ନହେବା ପର୍ଯ୍ୟନ୍ତ ପ୍ରଜାଙ୍କ ମନୋବଳକୁ ଫେରେଇ ଆଣିହେବ ନାହିଁ। ଦେଶର ସ୍ୱାର୍ଥ ଦୃଷ୍ଟିରୁ ବ୍ରହ୍ମପିଣ୍ଡ ସ୍ଥାନରେ ବ୍ରହ୍ମଶିଳା ଶାଳଗ୍ରାମକୁ ବିକଳ୍ପ ରୂପେ ଗ୍ରହଣ କଲେ ବେଦ ଅଶୁଦ୍ଧ ହୋଇଯିବ ନାହିଁ। ମହାରାଣୀଙ୍କର ଏ ପ୍ରକାର ଦେଶ ପ୍ରେମ ମୂଳକ ଉଦ୍‌ବୋଧନ ଥିଲା କୁମ୍ଭୀର କାନ୍ଦଣା ମାତ୍ର। ରାଜା ରାମଚନ୍ଦ୍ରଙ୍କୁ ଖୋର୍ଦ୍ଧା ସିଂହାସନରୁ ବଞ୍ଚିତ କରିବା ଥିଲା ତାଙ୍କର ଅସଲ ଅଭିସନ୍ଧି। ଦିଅମାନେ ଗୋପ୍ୟ ହେବା ପରଠାରୁ ଜିଜିୟା ବାବଦକୁ ଅଜସ୍ର କ୍ଷତି ସହୁଛନ୍ତି ମୋଗଲ ନବାବ। ନବାବଙ୍କୁ ସନ୍ତୁଷ୍ଟ ନକଲେ ଭାଗିରଥି ଦେବଙ୍କ ରାଜ୍ୟ ଅଭିଷେକ ଆଶା ବୃଥା ଆସ୍ଫାଳନ।

ସେଥିପାଇଁ ଯେତେ ଛଳନା ଓ କପଟତାର ଆଶ୍ରୟ ନିଆ ଯାଇପାରେ ପ୍ରସ୍ତୁତ ଅଛନ୍ତି ମହାଦେଈ। ଯବନରାଣୀର ମୋହରେ ଅନ୍ଧ ରାମଚନ୍ଦ୍ର ଦେବଙ୍କ ପ୍ରତି ପ୍ରତିହିଂସାରେ ଅହରହ ଦଗ୍ଧ ହେଉଥିବା ମହାରାଣୀ ପ୍ରତିଶୋଧ ନନେବା ପର୍ଯ୍ୟନ୍ତ ଶାନ୍ତିରେ ନିଶ୍ୱାସ ଟିକେ ନେଇପାରୁ ନାହାଁନ୍ତି। ତାଙ୍କ ଶରୀରରେ ପ୍ରବାହିତ ବ୍ରାହ୍ମଣୀର ରକ୍ତ ଏବେ ବ୍ରହ୍ମ ଅଗ୍ନି ବର୍ଷଣ କରୁଛି। ତପଜପ ମନ୍ତତନ୍ତର ପ୍ରଭାବରେ ମହାରାଜାଙ୍କ ମସ୍ତିଷ୍କ ବିକୃତ କରିବାପାଇଁ ସେ ଅପ୍ରତିହତ ଉଦ୍ୟମ ଜାରି ରଖିଛନ୍ତି। ଦୈନିକ ୧୦୮ ବଗଳାମୁଖୀ ଶ୍ଳୋକ ଆବୃତ୍ତି କରି ତପସ୍ୱିନୀ ପରି ଦିନ କାଟୁଛନ୍ତି।

ମୁଦିରସ୍ତ ଗୌରୀ ରାଜଗୁରୁ ଓ ପଟିଆର ରାଜା ପଦ୍ମନାଭ ଦେବ ଏଥିପାଇଁ ତାଙ୍କର ଦକ୍ଷିଣ ହସ୍ତ ସାଜିଛନ୍ତି। ଖୋର୍ଦ୍ଧା ସିଂହାସନରେ ଭାଗିରଥୀ ଦେବଙ୍କୁ କାଷ୍ଠ ପୁତ୍ତଳିକା କରି ସେ ତାଙ୍କ ଲକ୍ଷ୍ୟସ୍ଥଳରେ ପହଞ୍ଚିବାରେ ସମର୍ଥ ହେବେ। ଏଥିପାଇଁ ରତ୍ନ ସିଂହାସନ ପୂର୍ଣ୍ଣ ହେବା ନିହାତି ଜରୁରୀ।

ମୁକ୍ତିମଣ୍ଡପର ସାଗ୍ନିକ, ବେଦବିତ୍ ପଣ୍ଡିତ ବ୍ରହ୍ମଚାରୀଙ୍କ ବିରୋଧକୁ ମହାରାଣୀଙ୍କ ଦ୍ୱାରା ପରିତୁଷ୍ଟ ହୋଇଥିବା ସ୍ୱାର୍ଥାନ୍ୱେଷୀମାନେ ଖଣ୍ଡନ କରିବାପାଇଁ ଯେପରି ପ୍ରାଣାନ୍ତକ ଲାଗିପଡିଥିଲେ। ସତ୍ୟର ଆଧାରରେ ନୁହେଁ ବରଂ ତର୍କର ଯଥାର୍ଥତାରେ ନବକଳେବର ପାଇଁ ପ୍ରସ୍ତୁତି ପର୍ବ ଆରମ୍ଭ ହୋଇଗଲା। ମୋଗଲ ପୀଡନରେ ନିପୀଡିତ ନିର୍ବେଦଗ୍ରସ୍ତ ଜଡପ୍ରାୟ ପରାଧୀନ ପ୍ରଜାପାଟକଙ୍କର ନବକଳେବର ପରିକଳ୍ପନା ଚେଇଁ ଉଠିବାପାଇଁ ଗୋଟାଏ ଉତ୍ତେଜନା ଥିଲା। ସେମାନେ ଚଳଚଞ୍ଚଳ ହୋଇ ଉଠିଲେ।

ଚୈତ୍ରଶୁକ୍ଳ ଦଶମୀ ଠାରୁ ଆରମ୍ଭ ହୋଇଥିଲା ବିଧିବିଧାନ। ଦଇତାପତି, ପତିମହାପାତ୍ର ଓ ଲେଙ୍କା ସେବକମାନଙ୍କ ମୁଣ୍ଡରେ ବିଧି ଅନୁସାରେ ପାଟଶାଢ଼ୀ ଖଣ୍ଡୁଆ ଓ ସୂତାଶାଢ଼ୀ ବନ୍ଧା ଗଲା। ଏଥର ବନଯୋଗ ବିଧି। ଦାରୁ ଅନ୍ୱେଷଣରେ ଯିବେ ତାଙ୍କର ଅନ୍ତରଙ୍ଗ ସେବକ କୁଟୁମ୍ବର ଲୋକ। ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କୁ ସେମାନେ ବଡଭାଇ ବୋଲି କହନ୍ତି। ବଡଭାଇଙ୍କ ଠୁଁ ଆଜ୍ଞାମାଳ ନେଇ ସେମାନେ ଯିବେ କାକଟପୁର ମା' ମଙ୍ଗଳାଙ୍କ ସ୍ୱପ୍ନାଦେଶ ପାଇଁ। କିନ୍ତୁ ମନ୍ଦିର ତ ଶୂନ୍ୟ। ମହାପ୍ରଭୁ ନାହାଁନ୍ତି, ଆଜ୍ଞାମାଳ ଦେବି କିଏ ?

ଆରେ! କିଏ କହିଲା ମହାପ୍ରଭୁ ନାହାନ୍ତି ? ରତ୍ନସିଂହାସନ ଶୂନ୍ୟ! ସିଏ ତ ଶୂନ୍ୟରେ ପୂର୍ଣ୍ଣ ପୁଣି ମହାପୂର୍ଣ୍ଣରେ ମହାଶୂନ୍ୟ। ସେ ସର୍ବବ୍ୟାପୀ, ସିଏ ସାକାର ପୁଣି ନିରାକାର। ସିଏ ଲେଖ ପୁଣି ଅଲେଖ ନିରଞ୍ଜନ। ସିଏ ସଗୁଣ ପୂର୍ଣ୍ଣ ନିର୍ଗୁଣ

ସିଏ ଅସ୍ତି ନାସ୍ତିର ଦେବତା। ତାଙ୍କର ବର୍ତ୍ତମାନ ଅବର୍ତ୍ତମାନ ସବୁ ଏକକାର। ସବୁ ତର୍କ ବିତର୍କର ଊର୍ଦ୍ଧ୍ୱରେ ସେ। ସେଇ ଶୂନ୍ୟସତ୍ତାଙ୍କଠୁଁ ଆଜ୍ଞାମାଳ ନେଇ ବନଯୋଗ ଯାତ୍ରୀ ଦାରୁ ଅନ୍ୱେଷଣରେ ବାହାରି ଗଲେ। ଦେଉଳ ମଠରେ ଚତୁର୍ଦ୍ଧା ମୂର୍ତ୍ତିଙ୍କର ଚାରି ବାଡଗ୍ରାହୀମାନେ ମାଆଙ୍କ ଆଦେଶକୁ ପ୍ରତୀକ୍ଷା କରି ପଡି ରହିବେ। ମାଆଙ୍କୁ ମାଜଣା ପାଇଁ  ଶ୍ରୀମନ୍ଦିରରୁ ପାଟଶାଢ଼ୀ ଚୁଡି ନୈବେଦ୍ୟ ନେବା ବିଧି। ମାଆଙ୍କୁ ସନ୍ତୁଷ୍ଟ ନକଲେ କୌଣସି କାର୍ଯ୍ୟ ସିଦ୍ଧି ନାହିଁ।

ନାରୀ ଶକ୍ତିକୁ ଅବମାନନା କରି କୌଣସି ସମାଜ କଲ୍ୟାଣ କାର୍ଯ୍ୟ ସଂପାଦନ ସମ୍ଭବ ନୁହେଁ। କୋଉ ଆଦି ଅନାଦି କାଳରୁ ଏହାହିଁ ତ ପ୍ରତିପାଦିତ ହୋଇଆସୁଛି। ମାନବ ସଂସ୍କୃତି ଓ ସଭ୍ୟତାର ଚକ୍ରରେ। ଦାରୁ ଦେବତାଙ୍କର ନବକଳେବର ବିଧିରେ ମା' ମଙ୍ଗଳାଙ୍କ ଭୂମିକା ସେହି ସତ୍ୟର ପୁନଃ ପ୍ରକରଣ ମାତ୍ର।

ଦେଉଳି ମଠର ଗମ୍ଭୀରା ଭିତରେ ଅଧିଆ ପଡିଛନ୍ତି ଦଇତା ଓ ପତି ମହାପାତ୍ରମାନେ। ସ୍ୱପ୍ନାଦେଶ ତ ଦୂରର କଥା ବିବେକର ଦଂଶନରେ ଅତିଷ୍ଠ ହେଉଥିବା ପତିମହାପାତ୍ରଙ୍କ ଚକ୍ଷୁକୁ ନିଦ୍ରାବି ହୋଇଯାଇଥିଲା ସ୍ୱପ୍ନ। ସକଳ ଅବିଧିରେ ସ୍ୱାର୍ଥକୁ ଏକମାତ୍ର ବିଧି କରି ଆୟୋଜିତ ହେଉଥିବା ଏ କଣ୍ଢେଇ ଖେଳରେ ନୀତି ନିଷ୍ଠା କାହିଁ? ସମର୍ପିତ ଭାବନା କାହିଁ? ଖାଲି ଉପଚାରରେ ତ ଆଉ ମାଆ ପ୍ରସନ୍ନ ହେଇ ବରାଭୟ ଦେବେ ନାହିଁ। ଥଟ୍ଟା ପରିହାସ ସତ ମିଛରେ କାଳିଆ ସାଆନ୍ତଙ୍କୁ ସିନା ଭଣ୍ଡେଇ ହେବ କିନ୍ତୁ ଜଗତ୍‌ଜନନୀ ମାଆ ମଙ୍ଗଳାଙ୍କୁ ତ ନୁହେଁ। ଅମୀନ୍ ଚାନ୍ଦଙ୍କ ଠାରୁ ପାଇଥିବା ଇନାମ ଉତ୍କୋଚ ଓ ମହାରାଣୀଙ୍କ ଠାରୁ ଜାୟଗିରିର ପ୍ରଲୋଭନକୁ ଯଦି ସେ ଏଡି ପାରିଥା'ନ୍ତେ ଆଜି ଏଠି ଏଇ ନିରନ୍ଧ୍ର ଅନ୍ଧକାର କୋଠରୀ ଭିତରେ ନିଦ୍ରାହୀନତା ତାଙ୍କୁ ବ୍ୟତିବ୍ୟସ୍ତ କରୁନଥାନ୍ତା। ଆଉ ପଛକୁ ଫେରିବାର ସ୍ଥିତି ନାହିଁ। ଯାହା ହେଉ ପଛେ ନବକଳେବର ପ୍ରକ୍ରିୟା ସଂପାଦନା କରିବାକୁ ତ ହେବ। ସେ ଆଉ ଶୋଇ ପାରିଲେ ନାହିଁ। ସେ ଉଠି ବସିଲେ। ଝାପ୍‌ସା ଅନ୍ଧାରରେ ଗଡଘାଲି କାଠଗଣ୍ଡିଟେ ପରି ପଡିରହିଥିବା ସ୍ୱାଇଁ ମହାପାତ୍ରଙ୍କ ଆଡେ ଚାହିଁ ବିଳିବିଳେଇଲା ପରି କହିଲେ ପତି ମହାପାତ୍ର।

ଚେତା ଅଛଟି କି ସ୍ୱାଇଁ ମହାପାତ୍ରେ! କିଛି ସୂଚକ ଜଣାପଡୁଛି? ଖଣ୍ଡିକାଶଟିଏ ମାରି ସ୍ୱାଇଁ ମହାପାତ୍ରେ ବିଚଳିତ ସ୍ୱରରେ କହିଲେ - କି ସୂଚକ ଆଉ ଆସିବ। ଉପାସ ବ୍ରତ କାଷ୍ଠା ନିଷ୍ଠା ସତ୍ତ୍ୱେ ନା ଲୟ ଆସୁଛି ନା ଧ୍ୟାନ। ନିଦ୍ରା

ଆସିବ କୁଆଡୁ ? ନିଦ୍ରାହୀନ ଚକ୍ଷୁରେ କି ସ୍ୱପ୍ନାଦେଶ ! କି ସୂଚକ ? ଖାଲି ଅନ୍ତର୍ଦାହ ଯାହା ସାର ।

ଏ ଅନ୍ତର୍ଦାହର ଅନ୍ତକର ମହାପାତ୍ରେ । ଉଠ, ଶ୍ରୀ ଜୀଉମାନଙ୍କ ଦାରୁର ସନ୍ଧାନ ମିଳିଯାଇଛି । ସକାଳୁ ସକାଳୁ ମାଆଙ୍କର ସେବାପୂଜା ସାରି ବାହାରି ପଡିବା ଦାରୁ ଚିହ୍ନଟ ପାଇଁ ।

ଧନ୍ୟ ଧନ୍ୟ ତମେ ପତି ମହାପାତ୍ରେ । କାଳିଆସାନ୍ତଙ୍କର ଅପୂର୍ବ କୃପା ତମ ଉପରେ । ମାଆ ମଙ୍ଗଳା ତମକୁ ସ୍ୱପ୍ନାଦେଶ କଲେ । ମୁଁ ପାପୀ, ଅଧମ, ପାଷାଣ୍ଡ । ମୁଁ ଦୈବୀ କୃପାର ଭାଜନ ନୁହେଁ ।

ନିଷ୍କମ୍ପ କଣ୍ଠରେ କହିଲେ ପତି ମହାପାତ୍ରେ । କି ଦୈବୀକୃପା କଥା ତମେ କହୁଚ ? ତମ ପାଖରେ ଏ ସତ୍ୟଟା ପ୍ରକାଶ କରିବାରେ ମୋର କୁଣ୍ଠା ନାହିଁ । ମୂଳରୁ ହିଁ ଏ ମହାବିଗ୍ରହଙ୍କର ଏ ନବକଳେବର ପ୍ରହସନର ନବକଳେବର । ସ୍ୱାର୍ଥାନ୍ଧ ମଣିଷର କପଟତାରେ ଶ୍ରୀଜଗନ୍ନାଥ ନିଜେ ତ ଦାରୁଭୂତ ମୁରାରି । ଶିରୋନାସ୍ତି ଶିରୋପୀଡା । ବ୍ରହ୍ମ ବିହୀନ ବିଗ୍ରହ । ସ୍ୱାର୍ଥର କଉଡି ଖେଳ, ତା ସହ ଆଉ ଗୋଟାଏ ଖେଳ ଯୋଡି ହେଇଗଲା ତ କ୍ଷତି କ'ଣ ?

ପତି ମହାପାତ୍ରଙ୍କର ଏ ପହେଳି ଦୁର୍ବୋଧ ହେଉଥିଲା ସ୍ୱାଇଁ ମହାପାତ୍ରଙ୍କୁ ।

ନିଷ୍କମ୍ପ କଣ୍ଠରେ କହିଲେ ପତି ମହାପାତ୍ର । ମାଆ ମଙ୍ଗଳାଙ୍କ ସ୍ୱପ୍ନାଦେଶ ହେବନାହିଁ । ଏ ଅନ୍ୟାୟ ଅବିଧିକୁ ମାଆ ସମର୍ଥନ ଦେବେ ନାହିଁ । ଆଉ କେତେଦିନ ଆମେ ଏମିତି ଭୋକ ଉପାସରେ ପଡିରହିବା ?

ଏ ମୁଢ଼ ଜନତା ଆମ ସ୍ୱପ୍ନ ସଂପର୍କରେ ବିନ୍ଦୁଏ ବି ସନ୍ଦେହ କରିବେ ନାହିଁ ! ଆମ ମୁଖର କଥା ସେମାନଙ୍କ ପାଇଁ ମାଆ ମଙ୍ଗଳାଙ୍କ ମୁଖର ଭାଷା, ଶ୍ରୀ ଜଗନ୍ନାଥ ଶ୍ରୀଅଙ୍ଗ ସେବାୟତ । ଜଗନ୍ନାଥଙ୍କ ପରି ଆମେ ସେମାନଙ୍କ ଆସ୍ଥା ଓ ବିଶ୍ୱାସର ପ୍ରାଣ ପିଣ୍ଡ । ତେଣୁ ଉଠ ଡେରି କର ନାହିଁ । ଭୟ ବିଜଡିତ କଣ୍ଠରେ କହିଲେ ସ୍ୱାଇଁ ମହାପାତ୍ରେ ।

ହଁ ହେ - ଏଠୁ ସିନା ବାହାରିଯିବା, ହେଲେ ଲକ୍ଷଣାବନ୍ତ ଦାରୁର ସନ୍ଧାନ ଯଦି ନମିଳିଲା ! କି ଜବାବ ତମେ ଦେବ ଜନତାଙ୍କୁ ? ସ୍ୱାଇଁ ମହାପାତ୍ରଙ୍କର ଏ ନିରୀହ ପ୍ରଶ୍ନରେ ଅସହିଷ୍ଣୁ ହୋଇ କହିଲେ ପତିମହାପାତ୍ର । ତୁନୀ ପଡ ହେ କୋଉ ଗାଁରେ ମଶାଣି ନାହିଁ । ନଈ ନାହିଁ । ବରୁଣ ଗଛଟାଏ କି ସାହାଡା ଗଛଟିଏ ନାହିଁ ? ଉଇ ହୁଙ୍କା ନାହିଁ ସାପ ନାହାଁନ୍ତି ? ଖାଲି ପୁରୁଣା ନିମଗଛଟିଏ ମିଳିଲେ ହେଲା ।

ଚର୍ମଚକ୍ଷୁ ନୁହେଁ ମହାପାତ୍ରେ ଚର୍ମଚକ୍ଷୁ ନୁହେଁ। ଭକ୍ତି ଚକ୍ଷୁରେ ମିଳିଯିବ ସେଇ ଦାରୁରେ ଶଙ୍ଖଚକ୍ର ଗଦା ପଦ୍ମର ସନ୍ଧାନ। ସହଜେ ତ ପତିତ ଓ ପାପୀମାନଙ୍କ ଚକ୍ଷୁ ପରଳ ବିଜଡିତ। ମନ ତ ଆବିଳ, ପଙ୍କ ଗାଡିଆ ସେମାନେ କ'ଣ ଜଗନ୍ନାଥଙ୍କ ଲୀଳା ଦର୍ଶନ କରିପାରିବେ ? କୋଉ ମଣିଷଟା ନିଜକୁ ପାପୀ ଆଉ ପତିତ ସାବ୍ୟସ୍ତ କରିବ କୁହ ତ ଦେଖି।

ସ୍ୱାଇଁ ମହାପାତ୍ରଙ୍କୁ ଆଉ କିଛି ବୁଝିବାକୁ ବାକି ନଥିଲା। କିନ୍ତୁ ଦାରୁ ଦେବତାଙ୍କୁ ନେଇ ପତିମହାପାତ୍ରଙ୍କର ଏ ନିର୍ଜଳା ଡହରାମିକୁ ତାଙ୍କ ଅନ୍ତରାତ୍ମା ଆଦୌ ଅନୁମୋଦିତ କରୁନଥିଲା। ଠାକୁରଙ୍କର ଅନ୍ତରଙ୍ଗ ସେବକ ବୋଲି ଆତ୍ମାଭିମାନ କରୁଥିବା ସ୍ୱାଇଁ ମହାପାତ୍ରଙ୍କ ପ୍ରତିବାଦ ଯେ ପତିମହାପାତ୍ରଙ୍କ ଯୁକ୍ତିର ଶିଳ ଶିଳୁପୁଆ ନିକଟରେ ଶିମିଳି ତୁଳା ତୁଲ୍ୟ ତାହା ବୁଝିବାକୁ ବାକି ନଥିଲା। ପତି ମହାପାତ୍ରମାନେ କାଳେ କାଳେ ସୁଆର ସେବକ ଦଇତା ନିଯୋଗକୁ ପ୍ରଜ୍ଞାର ପାଣ୍ଡିତ୍ୟରେ ଆସ୍ଫାଳନରେ ଏମିତି ଚୁପ୍ କରାଇ ଆସିଛନ୍ତି। ତା ସାଙ୍ଗକୁ ଅମୀନ ଋନ୍ଦଙ୍କ ଠୁଁ ଗ୍ରହଣ କରିଥିବା ଦଶଗୋଟି ଦାହାଙ୍ଗିର ସ୍ୱର୍ଣ୍ଣମୁଦ୍ରା ଓ ଭୂମି ଖଣ୍ଡେ ଜାୟଗିରି ପାଇବାର ପ୍ରତିଶ୍ରୁତି ତାଙ୍କୁ ସଂପୂର୍ଣ୍ଣ ନିଶ୍ଚୁପ୍ କରିଦେଲା।

ଶ୍ରୀ ଜୀଉମାନଙ୍କର ନବକଳେବର ପାଇଁ ଦାରୁର ସନ୍ଧାନ ମିଳିଗଲା। ମାଆ ମଙ୍ଗଳାଙ୍କ ସ୍ୱପ୍ନାଦେଶ ହୋଇଛି ଗତ ରାତ୍ରିର ନିଶାର୍ଦ୍ଧରେ। ଘଣ୍ଟ ଘଣ୍ଟା କାହାଳୀ ସଂକୀର୍ତ୍ତନ ଆଳତି ହରିବୋଲ ହୁଳହୁଳି ଧ୍ୱନିରେ ମଙ୍ଗଳାପୀଠ ଉଚ୍ଛୁଳି ପଡିଲା। ଋରିବାଡଗ୍ରାହୀ ସଦଳେବଳେ ଚତୁର୍ଦ୍ଦିଗରେ ଖେଦିଗଲେ, ଋରି ଭାଗରେ ବିଭକ୍ତ ହୋଇ। ଋରିଦିଗରେ ଋରି ଦାରୁର ସନ୍ଧାନ ମିଳିବ। ଖାଲି ଚିହ୍ନଟ କରିବା କଥା।

ପ୍ରଥମେ ସୁନା କୁରାଢ଼ୀ, ତା'ପରେ ରୂପା କୁରାଢ଼ୀରେ ସ୍ପର୍ଶ ଦେଇ ପରେ ଲୁହା କୁରାଢ଼ୀରେ ଦାରୁମହାତ୍ମା ଛେଦନ ହେବେ ଯାଗ ଯଜ୍ଞ ପୂଜା ବିଧି ପରେ।

ବନଯୋଗ ଯାତ୍ରୀଙ୍କ ମଧ୍ୟରେ ଅସମ୍ଭବ ଉତ୍ତେଜନା। ଆଉ ବିଳମ୍ବରେ ପ୍ରୟୋଜନ ନାହିଁ। ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ପାଇଁ ଆଉ କେଇ ପାହାଚ ମାତ୍ର ବାକି। ଅପାର କରୁଣା ମହାପ୍ରଭୁଙ୍କର। ସେ ଭାବଗ୍ରାହୀ ଭାବର ଦେବତା। ସେ ନିଜେ ସନ୍ଧାନ ଦିଅନ୍ତି। ଶ୍ରୀ ଚକ୍ର ନାରାୟଣ କଢ଼େଇ ନିଅନ୍ତି ପଥ। ବଡ ଦେଉଳ ଭିତରେ ଆପଣାର ଭାଗୁଆଳ ଦାୟିତ୍ୱଟି ସାରି, ପୃଥୁଳ ଉଦରଟିମାନଙ୍କୁ ଧରି ଭାଙ୍ଗ ନିଶାରେ ଟୁଳୁଟୁଳୁ ହେଉଥିବା ଓ ବିଳାସରେ ସମୟ କାଟୁଥିବା ସେବାୟତମାନେ ଖାଳିପାଦରେ ଷାଠିଏ କୋଶ ପଥ ଅବଲୀଳା କ୍ରମେ ଅତିକ୍ରମ କରିସାରିଲେଣି।

ଅଥଚ ସେମାନଙ୍କୁ କ୍ଲାନ୍ତ ଆସୁନାହିଁ। ପଥଶ୍ରମ ବାଧୁ ନାହିଁ। ଏ ଯାତ୍ରା ଯେପରି ଜୀବନର ଯାତ୍ରା। ବିଜୟର ଯାତ୍ରା। ବିଶ୍ୱାସର ଯାତ୍ରା। ସ୍ରଷ୍ଟା ପୁରୁଷର ଅପୂର୍ବ ଲୀଳାର ଯାତ୍ରା। ଅନନ୍ତ ଜଗତର ସ୍ରଷ୍ଟା ସ୍ୱଇଚ୍ଛାରେ ନିଜ ସୃଷ୍ଟି ହସ୍ତରେ ନବସୃଜନର ରୂପ ପରିଗ୍ରହଣ କରିବେ।

ଭକ୍ତ ଗଢ଼ିବେ ଭଗବାନକୁ। କି ବିଚିତ୍ର ଲୀଳା ! ଅଭିଭୂତ ହୋଇପଡୁଥିଲେ ବିଶ୍ୱାବସୁ ସେବାୟତ, ସୁଆର ସେବକ ଦଇତାପତିମାନେ। ସମସ୍ତଙ୍କ ମନରେ ବିପୁଳ ଉତ୍ସାହ ଉଦ୍ଦୀପନା। ଦଳପତି ସ୍ଥାନୀୟ ଜଣେ ସେବାୟତ ଭାବ ବିହ୍ୱଳ ହୋଇ ଉଚ୍ଚାରଣ କଲେ -

ଜୟଶ୍ରୀ ବଳିୟାର ଭୂଜ କି - ସହଯାତ୍ରୀ ସେବାୟତ ପହଳି ଭାଙ୍ଗିଲେ - ଜୟ।

ଜୟଶ୍ରୀ ବଳଦେବ ମହାପ୍ରଭୁ କି - ଜୟ

ଜୟଶ୍ରୀ ମା ସୁଭଦ୍ରା ଦେବୀ କି - ଜୟ

ଜୟଶ୍ରୀ ଚକ୍ର ନାରାୟଣ କି - ଜୟ

ଜୟଶ୍ରୀ ଗଜପତି ମହାରାଜ ରାମଚନ୍ଦ୍ର ଦେବ କି - ଜୟ

ଜୟଶ୍ରୀ ଯୁବରାଜ ଭାଗୀରଥି କୁମାର କି - ଜୟ

ଜନତାଙ୍କ ଏ ଜୟନାଦ ନୀରବି ଯିବା ପୂର୍ବରୁ ଆଉ ଗୋଟିଏ ଚିଁ ଚିଁ କଣ୍ଠର କ୍ଷୀଣ ଉଚ୍ଚାରଣ ଶୁଭିଲା -

ଜୟ ମହାରାଣୀ ଲଳିତା ପାଟ ମହାଦେଇ କି -

କ୍ଲାନ୍ତ କୁଣ୍ଠିତ କଣ୍ଠରେ ପହଳି ଫେରିଲା - ଜୟ।

ମହାରାଣୀ ଲଳିତା ମହାଦେଇ ହିଁ ଏଥର ନବକଳେବରର ଇନ୍ଦ୍ରଦ୍ୟୁମ୍ନ ଓ ଗୁଣ୍ଡିଚ୍ଛା। ଭାଗୀରଥି କୁମାର ତ ନାମକୁ ମାତ୍ର। ସଖୀ କଣ୍ଢେଇ। ଯାହାକୁ ସିଂହାସନାରୁଢ଼ କରିବାପାଇଁ ଲଳିତା ମହାଦେଇଙ୍କର ଏତେ କୃଚ୍ଛ ସାଧନା ଏତେ ଚକ୍ରାନ୍ତ, ଏତେ ଷଡଯନ୍ତ ଏତେ ମଥ୍ୟାଚ୍ଛର ସିଏ ଯାଇ ପଡିଥିବ କୋଉ ମାହାରୀ ଘରେ ଅଥବା ଜେଗା ଆଖଡାରେ। ସେଦିନ ତ ମହାରାଣୀଙ୍କୁ ସ୍ତବ୍ଧ ଚକିତ କରିଦେଇ ସେ କହିଥିଲେ- "ତମ ରାଜମାତା ହେବାର ସ୍ୱପ୍ନ ଭିତରେ ମୋତେ ସାମିଲ କର ନାହିଁ ରାଣୀ ମା। ଖୋର୍ଦ୍ଧା ସିଂହାସନ ପାଇଁ ମୋର ତିଳାର୍ଦ୍ଧେ ଅଭିଳାଷ ନାହିଁ। ହତ୍ୟା ରକ୍ତପାତ ବିଶ୍ୱାସ ଘାତକତାର ବିଷ ବଳୟ ଭିତରେ ଯେଉଁ ସିଂହାସନ ଅସ୍ଥିର ମୁଁ ତାଠାରୁ ଯଥେଷ୍ଟ ଦୂରରେ ରହିବାକୁ ଚହେଁ।

ଭାଗିରଥୀ ଦେବଙ୍କର ଏ ନିର୍ବୋଧତାରେ ଅଧର କାମୁଡି ଥିଲେ ମହାରାଣୀ। ବହୁ କଷ୍ଟରେ ନିଜର ପ୍ରଚଣ୍ଡ କ୍ରୋଧକୁ ସଂଗୋପନ କରି ଯଥାସମ୍ଭବ ନରମ କଣ୍ଠରେ କହିଲେ -

ଏବେ ଖୋର୍ଦ୍ଧା ମୁଲକ ପ୍ରଜାପାଟକଙ୍କ ଆଶା ଭରସା ତମେ କୁମାର। ଖୋର୍ଦ୍ଧା ସିଂହାସନର ଉତ୍ତରାଧିକାରୀ। ସେଥିପାଇଁ ନିଜକୁ ପ୍ରସ୍ତୁତ କରିନିଅ। ତୁଚ୍ଛ ଇନ୍ଦ୍ରିୟ ଲାଳସାରେ ଜୀବନର ଗୌରବମୟ ସମ୍ଭାବନାକୁ ପଣ୍ଡ କରିଦିଅନାହିଁ। ମୋ ସାଧନାକୁ ବ୍ୟର୍ଥ କରନାହିଁ।

ଅନ୍ତିମ ଆଡକୁ ଲଳିତା ମହାଦେଈଙ୍କୁ କଣ୍ଠସ୍ୱର ଅନୁଯୋଗ ଓ ଅନୁନୟରେ ଅତ୍ୟନ୍ତ କରୁଣ ଶୁଭୁଥିଲା।

କିନ୍ତୁ ଭାଗିରଥୀ ଦେବଙ୍କୁ ତାହା ତିଳାର୍ଦ୍ଧେ ସ୍ପର୍ଶ କଲାପରି ଅନୁଭୂତ ହେଉନଥିଲା। ମୁଖମଣ୍ଡଳକୁ ଝୁଲି ପଡିଥିବା କେରାଏ କେଶଗୁଚ୍ଛକୁ ପଛପଟକୁ ଛାଟିଦେଇ ସେ ବେପରୁଆ ପଦରେ କୋଠରୀ ଭିତରୁ ନିଷ୍କ୍ରାନ୍ତ ହୋଇଗଲେ।

ପରାହତ ସର୍ପିଣୀ ପରି ଲଳିତା ଦେଈ ନିଷ୍ପ୍ରଭ କଣ୍ଠରେ ସ୍ୱଗତୋକ୍ତି କଲେ - ହାୟ କପାଳ ! ଉପଯୁକ୍ତ ପିତାର ଉପଯୁକ୍ତ ଦାୟାଦ ହତଭାଗ୍ୟ। ମୋର କେଉଁ ଜନ୍ମର କି ଅପରାଧ ହେତୁ ବିହି ମୋ କପାଳରେ ଖଞ୍ଜି ଦେଲେ ଦୁହିଁଙ୍କୁ। ସାରାଜୀବନ ଅଶାନ୍ତ ଓ ଅତୃପ୍ତିର କାଳାନଳରେ ଦଗ୍ଧହେବା ବ୍ୟତୀତ ଆଉ ଉପାୟନ୍ତର ନାହିଁ।

ମୋହଭଙ୍ଗ ହୋଇଯାଏ ଲଳିତା ମହାଦେଈଙ୍କର। ମୁହୂର୍ତ୍ତକ ପାଇଁ ତାଙ୍କର ସବୁ ଗର୍ବ ଦମ୍ଭ ଅଭିମାନ ଅହମିକା ଭୂଲୁଣ୍ଠିତ ହୋଇଯିବା ପରି ମନେ ହୁଏ। ରାଜ ଐଶ୍ୱର୍ଯ୍ୟ, କ୍ଷମତା ରାଜଗାଦୀର ପ୍ରଲୋଭନ ତୁଚ୍ଛ ଲାଗେ। ପରାଜୟର ଗ୍ଲାନିରେ ଜୀବନ ଶେଷ କରିଦେବା ପାଇଁ ଇଚ୍ଛା ହୁଏ।

ଏଇ କୁମାର ପାଇଁ ତ ସେ ଜଗନ୍ନାଥ ଦ୍ରୋହୀ ହୋଇଛନ୍ତି। ତାଙ୍କୁ ଗାଦିନସୀନ କରିବାପାଇଁ ସେ ମିଥ୍ୟାପ୍ରଚାର କରିଛନ୍ତି ଯେ ମହାପ୍ରଭୁ ଶୂନ୍ୟ ମନ୍ଦିରକୁ ଫେରି ଆସିବା ପାଇଁ ତାଙ୍କୁ ସ୍ୱପ୍ନାଦେଶ ଦେଇଛନ୍ତି। ସ୍ୱଇଚ୍ଛାରେ ନବ କଳେବର ଧାରଣ କରିବାର ଇଚ୍ଛା ପ୍ରକଟ କରିଛନ୍ତି। ଖୋର୍ଦ୍ଧା ସିଂହାସନ ପାଇଁ ଚକ୍ରାନ୍ତର ଇତିହାସରେ ସେ ଆଉ ଗୋଟିଏ ବିଚିତ୍ର ଅଧ୍ୟାୟ ଯୋଡିଦେଇଛନ୍ତି। କଳେ ବଳେ କୌଶଳେ ମ୍ଳେଚ୍ଛ ରାମଚନ୍ଦ୍ର ଦେବଙ୍କୁ ସେ ସିଂହାସନରୁ ବଞ୍ଚିତ କରିବାପାଇଁ ପଣ କରିଛନ୍ତି। ସେଥିପାଇଁ ନ୍ୟାୟ ଅନ୍ୟାୟ ନୀତି ଅନୀତି ପାପ ପୂଣ୍ୟର ସକଳ ଭାବବିଚାରକୁ ବିସର୍ଜନ ଦେଇଛନ୍ତି। ଏଥିପାଇଁ ତିଳାର୍ଦ୍ଧେ ଅନୁତାପ କିମ୍ବା ଅନୁଶୋଚନା ତାଙ୍କୁ

ସ୍ପର୍ଶ କରିନାହିଁ। ବିବେକର ତୀବ୍ର ଦଂଶନକୁ ସେ ସହ୍ୟ କରିନେଇଛନ୍ତି। ଅଥଚ ଯୁବରାଜ ଭାଗିରଥୀ କୁମାରଙ୍କ ପାଖରେ ଏସବୁର କିଛି ଅର୍ଥ ନାହିଁ। ସେ ସଂପୂର୍ଣ୍ଣ ନିର୍ଲିପ୍ତ ନିରାସକ୍ତ। ହାୟ- କପାଳ।

ଲଳିତା ମହାଦେଇଙ୍କର ନବକଳେବର ପରିକଳ୍ପନା ଶ୍ରୁତି ଗୋଚର ହୋଇଥିଲା ରାମଚନ୍ଦ୍ର ଦେବଙ୍କର। ଏତେ ସହଜରେ ଯେ ଏଥିରେ ସମର୍ଥ ହେବେ ମହାରାଣୀ, ତାହା ତାଙ୍କ କଳ୍ପନାକୁ ସୁଦ୍ଧା ସ୍ପର୍ଶ କରିନଥିଲା। ସେହି କାରଣରୁ ଶ୍ରୀ ବିଗ୍ରହଙ୍କ ଦାରୁ ଚନ୍ଦନ ପୁରୁରେ ପହଞ୍ଚିବା ସମ୍ବାଦଟା ଶୁଣୁଶୁଣୁ ସେ ବିସ୍ଫୋରଣ କରି ଉଠିଲେ।

ଅସମ୍ଭବ। ଏହା କସ୍ମିନ୍‌କାଳେ ହୋଇପାରେନା। ଓଡ଼ିଶାର ଆତ୍ମା, ଉତ୍କଳୀୟ ଚେତନାର ପୀଠ, ବିଶ୍ୱାସର ଆଧାର ଭାବନାର ଭିତ୍ତି ବ୍ରହ୍ମଗର୍ଭିତ ଦାରୁ ଦେବତା ଟିକାଲୀ ରଘୁନାଥପୁରର ମହାକାନ୍ତାରରେ ପରିତ୍ୟକ୍ତ ହୋଇ ପଡିରହିବେ। ସ୍ୱାର୍ଥର ଶାଳଗ୍ରାମ ଆଧାରିତ ମିଛ ଦାରୁ ପୁତ୍ତଳିକା ଶୋଭାପାଇବ ରତ୍ନ ସିଂହାସନରେ। ଏ ପ୍ରବଞ୍ଚନା ପ୍ରପରଣାକୁ ପ୍ରତିରୋଧ କରିବାକୁ ହେବ। ପ୍ରଜାପାଟକଙ୍କ ଭାବନା ଓ ବିଶ୍ୱାସ ସହ ଖେଳ ଖେଳୁଥିବା ସ୍ୱାର୍ଥାନ୍ଧମାନଙ୍କ ଚକ୍ରାନ୍ତକୁ ପଣ୍ଡ କରିବାକୁ ହେବ। ମହାପ୍ରଭୁଙ୍କୁ ନେଇ ଏତେବଡ ଷଡଯନ୍ତ୍ର! ଏ ଧୃଷ୍ଟତାର କ୍ଷମା ନାହିଁ।

କିନ୍ତୁ ଉପାୟ ! ଉପାୟ କାହିଁ ?

ବଳୀୟାରଭୁଜ ତ ଶ୍ରୀବସ୍ତ ଖଣ୍ଡାଶାଳ ଛାଡି ଆତ୍ମରକ୍ଷା ପାଇଁ ଅରକ୍ଷଙ୍କ ପରି ଦୀପରୁ ଦୀପାନ୍ତର ମହାକାନ୍ତାରରୁ ଦୁର୍ଭେଦ୍ୟ ଦରି ଖୋଲ ଅଞ୍ଚଳ ଘୁରି ବୁଲୁଛନ୍ତି। ତାଙ୍କ ପଛରେ ହେଉଥିବା କୁଚକ୍ରାନ୍ତ ଷଡଯନ୍ତ୍ରର ସମ୍ବାଦ ନେବାପାଇଁ ତାଙ୍କୁ ବେଳକାହିଁ!

ପ୍ରଳାପ କଲାପରି କହୁଥିଲେ ରାଜା। ଆଉ ବେଳନାହିଁ। ମୁହୂର୍ତ୍ତେ ବିଳମ୍ବ ହେଲେ ପ୍ରଳୟ ହେଇଯିବ। କିଛି ଗୋଟାଏ କରିବାକୁ ହେବ। ମୋ ଶରୀରରେ ଶେଷ ବିନ୍ଦୁ ରକ୍ତ ଓ ଅନ୍ତିମ ଶ୍ୱାସ ଥିବା ପର୍ଯ୍ୟନ୍ତ ମୁଁ ରତ୍ନସିଂହାନକୁ ରଙ୍ଗମଞ୍ଚ କରିବାକୁ ଦେବିନାହିଁ। ଭାଗିରଥୀଦେବ ଖୋର୍ଦ୍ଧା ସିଂହାସନରେ ବସନ୍ତୁ ମୋର ଆପତ୍ତି ନାହିଁ। କିନ୍ତୁ ରତ୍ନସିଂହାସନରେ ବ୍ରହ୍ମପିଣ୍ଡ ଗର୍ଭିତ ଦାରୁ ଦେବତା ହିଁ ବସିବେ। ମହାରାଣୀଙ୍କ ଖିଆଲର ନକଲି ଦେବତା ନୁହଁନ୍ତି। ଶୀଘ୍ର ! ଅତିଶୀଘ୍ର ! ଏଇ ମୁହୂର୍ତ୍ତରୁ ମହାପ୍ରଭୁଙ୍କର ନିଳାଦ୍ରି ବିଜୟ ଅଭିଯାନ ଆରମ୍ଭ ହେଉ। ପ୍ରସ୍ତୁତ ହୁଅନ୍ତୁ ସମସ୍ତେ। ଆଉ ସମୟ ନାହିଁ। କାଲି ପ୍ରାତଃ କାଳରୁ ଆରମ୍ଭ ହେଉ ଅଭିଯାନ। ଏ ମୋର ଆଦେଶ। ଖୋର୍ଦ୍ଧା ରାଜା ରାମଚନ୍ଦ୍ର ଦେବଙ୍କର ଆଦେଶ।

ଲକ୍ଷ୍ମୀ ପରମ ଗୁରୁ ଓ ପଶ୍ଚିମ କବାଟ ସମେତ ଅନ୍ୟାନ୍ୟ ଶ୍ରୀଅଙ୍ଗ ସେବକ ସ୍ତବ୍ଧ ହୋଇ ଶୁଣୁଥିଲେ ରାଜାଙ୍କୁ।

କିଛି ସମୟ ନୀରବତା ପରେ ଲକ୍ଷ୍ମୀ ପରମ ଗୁରୁ କହିଲେ - ନିରନ୍ଧ୍ର ଅନ୍ଧକାର ଭିତରେ ବିଗ୍ରହମାନଙ୍କୁ ପାତାଳୀ କରିବା ଯେତିକି ସହଜ ଥିଲା ଦିବାଲୋକରେ ଟୀକାଲି ରଘୁନାଥପୁରରୁ ନେଇ ନିଳାଦ୍ରି ରତ୍ନସିଂହାସନରେ ଅଧିଷ୍ଠିତ କରାଇବା ତତୋଽଧିକ ବିପଜ୍ଜନକ। ମହାରାଣୀଙ୍କ ଗୁପ୍ତଚର ଅମୀନ ଚନ୍ଦର ଭେଦିଆ ଗାଁ ଗାଁରେ ବୁଲୁଛନ୍ତି। ଛକକୁ ଛକ ମୋଗଲ ଘାଟି ବସିଛି। ପଠାଣ ଲସ୍କର ରାଜ୍ୟ ସାରା ଖେଦି ବୁଲୁଛନ୍ତି। କିଏ କହିବ ଜଗନ୍ନାଥଙ୍କ କପାଳରେ ପୁଣି ଚମ ଦଉଡିରେ ଘୋଷରା ଯୋଗ ନାହି ? ଲକ୍ଷ୍ମୀ ପରମଗୁରୁଙ୍କ ପରି ଦୃଢ଼ମନା ମଣିଷଟା ଯେମିତି ଭାଙ୍ଗି ପଡୁଥିଲେ ଭିତରେ ଭିତରେ।

ଜଗନ୍ନାଥଙ୍କ କୃପା ଥିଲେ ପଙ୍ଗୁ ବି ଗିରି ଲଂଘନ କରିପାରେ ! ରାଜଗୁରୁ ଅବିଚଳିତ କଣ୍ଠରେ କହିଲେ ରାମଚନ୍ଦ୍ର ଦେବ। ଏଥର ଆଉ ଦସ୍ୟୁଙ୍କ ପରି ନିଶାର୍ଦ୍ଧରେ ନୁହେଁ। ରାଜରାସ୍ତାରେ ଚଉଦୋଳାରେ ଶ୍ରୀ ଜୀଉମାନେ ନୀଳାଦ୍ରି ଅଭିଯାନ କରିବେ। ସ୍ନେହ ଶ୍ରଦ୍ଧା ଭକ୍ତି ଓ ପ୍ରେମରେ ପ୍ରଲିପ୍ତ ହୋଇ ଓଡ଼ିଶାର ସ୍ୱାଭିମାନ ଓଡ଼ିଶାର ପ୍ରାଣ ସ୍ପନ୍ଦନ ଅଗଣିତ ଜନତାଙ୍କ ହୃଦୟରେ ଆସକ୍ତି ରଖିଦେବେ। କ୍ଷୀଣ ହୋଇ ଆସୁଥିବା ପ୍ରାଣ ଶକ୍ତି ପୁଣି ଶତସିଂହାର ବିକ୍ରମରେ ଜାଗି ଉଠିବ। ଟିକାଲୀ ରଘୁନାଥ ପୁରରୁ ମହୁରୀ ଖଲ୍ଲିକୋଟ ଦେଇ ଖୋର୍ଦ୍ଧା ଓ ଖୋର୍ଦ୍ଧାରୁ ପିପିଲି ଦେଇ ପୁରୀରେ ପହଞ୍ଚିବେ ଚତୁର୍ଦ୍ଧା ମୂର୍ତ୍ତି। ଗାଁ ଗାଁରେ ସେମାନଙ୍କୁ ସ୍ୱାଗତ ସଂବର୍ଦ୍ଧନା ସେବାପୂଜାର ଦାୟିତ୍ୱ ଗାଁ ମୁଖିଆମାନଙ୍କୁ ଦେବାକୁ ହେବ। ଖୋର୍ଦ୍ଧା ପର୍ଯ୍ୟନ୍ତ ତ ଆମର ଯାତ୍ରା ନିଷ୍କଣ୍ଟକ। ସେଇଠି ମହାରାଣୀଙ୍କ ସେନାବାହିନୀର ସମ୍ମୁଖୀନ ହୋଇପାରନ୍ତି। ପିପିଲିରେ ରହିଛି ମୋଗଲ ଘାଟି ସେଥିପାଇଁ ସତର୍କତାର ଆବଶ୍ୟକତା ଅଛି। ଅବଶ୍ୟ ମହୁରୀ ଖଲ୍ଲିକୋଟ ଆଠଗଡ଼ ଘୁମସର ରାଜ୍ୟର ରାଜସମର୍ଥନ ଓ ସେନାବାହିନୀ ଆମର ବଡ ସମ୍ବଳ। ତଥାପି ଜନତାର ସହଯୋଗ ବିନା ଏକାର୍ଯ୍ୟ ନିର୍ବିଘ୍ନରେ ନିର୍ବାହ ହେବା ଅସମ୍ଭବ।

ମହାରାଜାଙ୍କର ଏ ସଂକଳ୍ପ ତଡିତ୍ ବେଗରେ ଗାଁକୁ ଗାଁ, ସାହିକୁ ସାହିଏ ଘରକୁ ଘର ପ୍ରସରି ଗଲା। ଏ ବାର୍ତ୍ତା ସହ ପ୍ରକ୍ଷେପ ବିକ୍ଷେପ ହୋଇଗଲା କେତେ କଳ୍ପନା ସମ୍ଭୂତ କପୋଳ କଳ୍ପିତ କାହାଣୀ। ମହାରାଣୀଙ୍କ ସ୍ୱପ୍ନାଦେଶଠାରୁ ବଳି ପଡିଲା ରାଜାଙ୍କ ସ୍ୱପ୍ନାଦେଶ କାହାଣୀର ରୋମାଞ୍ଚ। ଠାକୁର ରାଜାଙ୍କୁ ବଡ ଠାକୁର

ସପନେଇଛନ୍ତି । ସେ ଆଉ ପାତାଳୀ ହେଇ ରହିବାକୁ ଚାହୁଁ ନାହାଁନ୍ତି । ଭକ୍ତମାନଙ୍କଠୁଁ ଦୂରରେ ରହି ସେ ବହୁତ ମନସ୍ତାପରେ ଅଛନ୍ତି । ରାଜା ଜାତି ହାରି ଧର୍ମଚ୍ୟୁତ ହେଲେ କ'ଣ ହେଲା ହୃଦୟଚ୍ୟୁତ ହୋଇ ନାହାଁନ୍ତି । ତାଙ୍କ ହୃଦୟ ସିଂହାସନରେ ସେ ଅହରହ ରହିଛନ୍ତି ବୋଲି ରାଜାଙ୍କୁ କହିଛନ୍ତି । ମହାରାଣୀଙ୍କ ନବକଳେବର ତାଙ୍କୁ ଜିଅନ୍ତା ସମାଧି ଦେବାପରି ହେବ । ତେଣୁ ଅତିଶୀଘ୍ର ନିଳାଦ୍ରି ପ୍ରତ୍ୟାବର୍ତ୍ତନର ବ୍ୟବସ୍ଥା ନ କଲେ ନାନା ଅଘଟଣ ଘଟିବ । ଦୁର୍ଭିକ୍ଷ, ମଡକ, ମରୁଡ଼ି, ମାଡିଆସିବ । କୂଳ ଲଂଘିବ ସମୁଦ୍ର । ଲକ୍ଷ୍ମୀଠାକୁରାଣୀଙ୍କ ଦୁଃଖ ବରୁଣ ଦେବତା ସହ୍ୟକରିପାରୁନାହାଁନ୍ତି ।

ଆହାଃ - କେତେ କଷ୍ଟ ନ ପାଇଲେ ଟି ସାଆନ୍ତମାନେ । ଷାଠିଏ ପଉଟି ଅନ୍ନ ଚଉଷଠି ପ୍ରକାର ବ୍ୟଞ୍ଜନରେ ମନତୋଷୁ ନଥିଲା । କୋଉ ମହାକାନ୍ତାରରେ କ'ଣ ଖାଇ ଦିନ କାଟିଲେ ଟି ମହାପ୍ରଭୁମାନେ । ପହଡ ଭାଙ୍ଗିବା ଠାରୁ ବଡ ସିଂହାର ବେଶ ପର୍ଯ୍ୟନ୍ତ ଛତିଶା ନିଯୋଗ ଖଟୁଥିଲେ । ତୁଳସୀ ଦୟଣା ପାଟପତନୀରେ ଶ୍ରୀଅଙ୍ଗ ଶୋଭା ପାଉଥିଲା । ବଣ ରାଇଜରେ ଫଳ ମୂଳ ଖାଇ ବଣ ଫୁଲ ଡାଳ ପତ୍ରକୁ ଅଙ୍ଗବାସ କରି ବଞ୍ଚିଲେ ମହାବାହୁ । ଏଇୟା ଲେଖାଥିଲା ତାଙ୍କ କପାଳରେ । ଠାକୁରମାନଙ୍କ ଦୁଃଖରେ ଶ୍ରଦ୍ଧାଳୁଙ୍କ ଚକ୍ଷୁକୋଣମାନଙ୍କରୁ ଝରି ପଡୁଥିବା ବୁନ୍ଦା ବୁନ୍ଦା ଅଶ୍ରୁରେ ସୃଷ୍ଟି ହୋଇଗଲା ଅଫୁରନ୍ତ ଉତ୍ସାହର ସାଗର । ଜାଗି ଉଠିଲା ସୁପ୍ତ ଓଡ଼ିଆ ଜାତି । ପରାଧୀନତାର ଜଡତା ନିର୍ବେଦତାର ଆଉ ଲେଶମାତ୍ର ଚିହ୍ନବର୍ଣ୍ଣ ରହିଲା ନାହିଁ । ଜଗନ୍ନାଥଙ୍କ ଜୈତ୍ରଯାତ୍ରାରେ ଓଡ଼ିଆ ଜାତି ଆପେ ଆପେ ସାମିଲ ହୋଇଗଲା । ସଶସ୍ତ୍ର ବାହିନୀ ସହ ଘଣ୍ଟ ଘଣ୍ଟା, ମୃଦଙ୍ଗ ବିଜୟ କାହାଳୀ ଭେରୀ ତୁରୀ ହରିବୋଲ ହୁଳହୁଳି ଧ୍ୱନିରେ ପ୍ରକମ୍ପିତ ହେଲା ରାଜରାସ୍ତା । ଅପରାଜେୟଙ୍କର ବିଜୟ ଯାତ୍ରା । ପୂର୍ଣ୍ଣ ହେବ ମହାପ୍ରଭୁଙ୍କର ନିର୍ବାସନ । ଓଡ଼ିଆ ଜାତି ପ୍ରାଣରେ ଅପୂର୍ବ ଉନ୍ମାଦନା । ପରାଧୀନତାର ସକଳ ଅବସାଦ, କ୍ଳାନ୍ତି, ନିପୀଡନର ତିକ୍ତ ସ୍ମୃତି ବିସ୍ମରିଯାଇଛି ଜନତା । ଦ୍ୱିଗୁଣ ଉତ୍ସାହରେ ଚାଲିଛି ଓଡ଼ିଆ ଜାତିର ଜୈତ୍ର ଯାତ୍ରା । ଓଡ଼ିଆର ସ୍ୱାଭିମାନ ଅଭିଯାନ । ନୀଳାଦ୍ରି ବିହାରୀଙ୍କ ନିଳାଦ୍ରି ବିଜୟ । ଅଭିଭୂତ ହୋଇ ପଡୁଥିଲେ ରାଜା ରାମାଚନ୍ଦ୍ର ଦେବ । ସେବକ ସେବାୟତ ଓ ଶ୍ରଦ୍ଧାଳୁଙ୍କ ପ୍ରମତ୍ତ ନର୍ତ୍ତନ କୀର୍ତ୍ତନର ମୂର୍ଚ୍ଛନାରେ ଗଗନପବନ ପ୍ରକମ୍ପିତ ହୋଇଉଠୁଥିଲା । ପ୍ରମାଦ ଗଣିଲେ ମହାରାଜ । ଏ ଆତ୍ମ ବିସ୍ମୃତି ଏ ଭାବ ମଗ୍ନତା ଯଦି ଏମିତି ଚାଲେ ଠିକ୍ ସମୟରେ ମହାପ୍ରଭୁ ପହଞ୍ଚି ପାରିବେ ତ ବଡ ଦେଉଳରେ ! ସ୍ନାନଯାତ୍ରା

ସରିଲାଣି। ଏବେ ଅଣସର ବିଧି। ତା'ପରେ ନବଯୌବନ ଦର୍ଶନ। ନବଯୌବନ ବେଳେ ଯଦି ଲଳିତା ମହାଦେଇଙ୍କ କାଷ୍ଠ ପୁତ୍ତଳିକା ସିଂହାସନାରୁଢ଼ ହୋଇଯାଆନ୍ତି ତେବେ ମହାରାଜାଙ୍କର ସକଳ ଉଦ୍ୟମ ବ୍ୟର୍ଥ ହୋଇଯିବ। ଶ୍ରଦ୍ଧାଳୁ ଭକ୍ତ ପ୍ରଜାପାଟକ ସତ୍ୟକୁ ଅବମାନନା କରି ମହାମିଥ୍ୟାର ଜୟଗାନ କରିବେ।

ନବଯୌବନ ଦର୍ଶନ ପୂର୍ବରୁ ଯେକୌଣସି ପ୍ରକାରେ ମହାପ୍ରଭୁଙ୍କର ଏ ଅଘୋଷିତ ଘୋଷଯାତ୍ରା, ଏ ମୁକ୍ତି ବାହିନୀକୁ ବଡଦାଣ୍ଡରେ ମଣ୍ଡନ କରିବାକୁ ହେବ। ଦୁଇହାତ ଉପରକୁ ଟେକି ଅସ୍ଫୁଟ କଣ୍ଠରେ ଉଚ୍ଚାରଣ କଲେ ଶ୍ରୀରାମାଚନ୍ଦ୍ର ଦେବ।

"ତୋ ସମ୍ମାନ ତୁ ରଖ ହେ ବଳୀୟାର ଭୁଜ।"

ମୋର ସବୁ ଗର୍ବଦମ୍ଭ ଅହଂକାର ଅହମିକା ମୁଁ ତୋର ପାଦତଳେ ସମର୍ପି ଦେଲି ମଣିମା। ମୁଁ ପଛେ ନର୍କଗାମୀ ହୁଏ ତୋ ସମ୍ମାନ ଅକ୍ଷୁଣ୍ଣ ରହୁ ହେ ଐଶ୍ୱର୍ଯ୍ୟମୟ। ଓଡ଼ିଆ ଜାତି ବଞ୍ଚି ରହୁ।

ଶ୍ରୀ ଜଗନ୍ନାଥଙ୍କର ଅପ୍ରତିହତ ଯାତ୍ରା ଓଡ଼ିଶାର ରାଜପଥକୁ ଆଚ୍ଛନ୍ନ କରି ମାଡି ଚାଲିଥିଲା ଆଗକୁ। ଗାଁକୁ ଗାଁ ଠାକୁ ଠା ଅକଳନ ଦର୍ଶନାର୍ଥୀ। ପଥସାରା ଶତଶତ ଆକୁତି ଅନୁନୟ ଅନୁଯୋଗ। କେହି ନିଉଛାଳି ହୋଇ ଭୂଇଁରେ ଗଡୁଛି ତ ପୁଣି କେହି ରାଜରାସ୍ତାରୁ ଧୂଳିନେଇ ସର୍ବାଙ୍ଗରେ ବୋଳି ହୋଇଯାଉଛି। ଦୁଇପଟରୁ ଜୀଉମାନଙ୍କ ଶ୍ରୀଅଙ୍ଗରେ ବର୍ଷିଯାଉଛି ପୁଷ୍ପ ଚନ୍ଦନ। ପୁଣି ଶ୍ରୀଅଙ୍ଗ ଚୁମ୍ବି ସେଇ ଭୂପତିତ ପୁଷ୍ପଗୁଡିକୁ ସାଉଁଟି ମୁଣ୍ଡରେ ମାରି କୋଟିନିଧି ପରି ସାଇତି ରଖୁଛନ୍ତି ଶ୍ରଦ୍ଧାଳୁ। ଏ ଯାତ୍ରା ବିଚିତ୍ର। ଏ ଲୀଳା ଅବର୍ଣ୍ଣନୀୟ।

ଖୋର୍ଦ୍ଧା ଗଡରେ ପାଇକସେନା ନେଇ ପଥରୋଧ କରିବାକୁ ଆସିଥିଲେ ଭାଗିରଥୀ କୁମାର। ସେନାମାନେ ଖଣ୍ଡା ଖର୍ପର ଫିଙ୍ଗିଦେଇ ଜୟ ଜଗନ୍ନାଥ ଧ୍ୱନିରେ ଜଗନ୍ନାଥଙ୍କ ଜୟଯାତ୍ରାରେ ସାମିଲ ହୋଇଗଲେ। ସେନାମାନଙ୍କର ଏ ବିପରୀତ ଆଚରଣ ଦେଖି ପଳାୟନ କଲେ ଭାଗିରଥି କୁମାର।

ମୋଗଲ ଘାଟି ପିପିଲିରେ ବି ସେଇ ଏକା କଥା। ପ୍ରମତ୍ତ ଓଡ଼ିଆ ପାଇକଙ୍କ ଉନ୍ମତ୍ତତା ମୋଗଲ ସେନାଙ୍କୁ କିଂକର୍ତ୍ତବ୍ୟବିମୁଢ଼ କରିଦେଇଥିଲା। ଅସ୍ତ୍ରଚାଳନା କରିବାକୁ ଯେମିତି ସେମାନେ ବିସ୍ମୃତ ହୋଇଯାଇଥିଲେ। ସ୍ତବ୍ଧ ଚକିତ ହୋଇ ସେମାନେ କେବଳ ଦେଖୁଥିଲେ ଓଡ଼ିଆମାନଙ୍କର ଉଦ୍ଦାମତା। ଉଚ୍ଛ୍ୱସିତ ପ୍ରାଣଶକ୍ତି।

ପଥ ଏବେ ନିଷ୍କଣ୍ଟକ। ନୂଆ ନୂଆ ସାଥୀ ଓ ସହଯାତ୍ରୀ ହଜାର ହଜାର ଲୋକଙ୍କ ପାଇଁ କେଉଁଠୁ ଆସୁଛି ଖାଦ୍ୟ। କେଉଁଠୁ ପଣାପାଣି ପାନୀୟ। ଶ୍ରୀଜୀଉଙ୍କ

ପାଇଁ ନୈବେଦ୍ୟ କିଛି ଜଣା ପଡୁନାହିଁ। ପଥକ୍ଲାନ୍ତି ନାହିଁ। ମନରେ ଅସରନ୍ତି ଉତ୍ସାହ। ପ୍ରାଣରେ ଉନ୍ମାଦନା ଶରୀରରେ ଉଦ୍ଦୀପନା। ଏ ଭାବ ବିହ୍ୱଳ ଜନତାଙ୍କର କିଏ ବା ପଥରୋଧ କରିବ ? ଏମାନଙ୍କ ପ୍ରାଣ ଶକ୍ତି ଯେ ଜଗନ୍ନାଥ ଚେତନାରେ ଜାଗ୍ରତ। ଦୀର୍ଘଦିନ ଧରି ଲାଞ୍ଛିତ ଓ ନିପୀଡିତ ଶିଥିଳିକୃତ ରକ୍ତରେ ଆଜି ଅପୂର୍ବ ପ୍ରାଣପ୍ରବାହ। ସ୍ୱେଚ୍ଛା ବନବାସ ପରେ ଆଜି ମହାପ୍ରଭୁ ସ୍ୱଇଚ୍ଛାରେ ରତ୍ନସିଂହାସନରେ ବିଜେ ହେଉଛନ୍ତି। ସେ ଯାତ୍ରାରେ ସାମିଲ ହେବା ମାତ୍ରେ ହିଁ ଓଡ଼ିଆ ଜାତିର ସବୁ ନିର୍ବେଦତା ଜଡ଼ତା ସ୍ଥାଣୁତା ଦୂରୀଭୂତ ହୋଇଯାଇଛି। ସେ ଅଲଂଘନୀୟ ହୋଇପଡିଛି। ତା ଆତ୍ମାରେ ପରମ ପୁଲକ। ସେ ଅନୁଭବ ଅନନ୍ୟ ଅବର୍ଣ୍ଣନୀୟ। ଭାଷାରେ ବ୍ୟକ୍ତି କରିହୁଏ ନାହିଁ, ଗୀତରେ ଗାଇ ହୁଏ ନାହିଁ। ଆଙ୍କି ହୁଏ ନାହିଁ ତୁଳୀରେ। ସେ ଭାବରେ କେବଳ ଭିଜି ହୁଏ। ସେ ପ୍ରୀତିରେ ପଖାଳି ହେଇ ହୁଏ।

ଲଳିତା ମହାଦେଇ ଅମୀନ ଚାନ୍ଦ ଓ ମୁଦିଗ୍ରସ୍ତ ଗୌରୀ ରାଜଗୁରୁଙ୍କ ଶାଳଗ୍ରାମ ଗର୍ଭିତ ଦାରୁ ଦେବତା ନିର୍ମାଣାଧୀନ। ବିଶ୍ୱକର୍ମା ମହାରାଣାମାନେ ଦିନରାତି ଏକାକାର କରିଦେଇଛନ୍ତି। ସ୍ନାନ ପୂର୍ଣ୍ଣମୀ ପରିଦିନ ଠାରୁ ଦଶମୀ ପର୍ଯ୍ୟନ୍ତ ଠାକୁର ରହିବେ ଅଣସର ଘରେ। ଏଥର ପୁଣି ମହାଅଣସର। ଏ ଅଣସର ପରେ ଠାକୁରଙ୍କର ନବକଳେବର। ଦଶମୀଦିନ ଠାକୁରଙ୍କର ଚକାବିଜେ, ଚନ୍ଦନଲାଗି। ଦଇତା ପତି ଓ ପତି ମହାପାତ୍ରମାନଙ୍କର ଗୁପ୍ତ ସେବାର ଇଯେ ବି ଗୋଟାଏ ଅଂଶ। କର୍ପୁର ଓ କେଶର ମିଶା ଚନ୍ଦନ ଲେପିହେବେ ଦିଅମାନେ। ଚତୁର୍ଦ୍ଦଶୀ ଦିନ ନବ ଯୌବନ ଦର୍ଶନ। ସେହିଦିନ ଶ୍ରୀ ଜୀଉଙ୍କୁ ରତ୍ନସିଂହାସନାରୁଢ଼ କଲେ ନିର୍ଦ୍ୱନ୍ଦରେ ସ୍ୱୀକାର କରିନେବେ ଶ୍ରଦ୍ଧାଳୁ ଭକ୍ତ। ଆଉ ଦ୍ୱିଧା ରହିବ ନାହିଁ। ପାତାଳୀ ହୋଇଥିବା ପୁରୁଣା ଦିଅଁଙ୍କୁ ସଂପୂର୍ଣ୍ଣ ବିସ୍ମୃତ ହୋଇଯିବେ। ସବୁ ଦୈବୀ ଲୀଳାକୁ ସହଜ ଭାବରେ ଗ୍ରହଣ କରେ ଭକ୍ତପ୍ରାଣ ଓଡ଼ିଆ। ସୃଷ୍ଟିକୁ ବି ପ୍ରଳୟକୁ ବି। ଆବାହନୀ ତାପାଇଁ ଯେତିକି ଆବେଗମୟ ବିସର୍ଜନ ବି ସେତିକି ମର୍ଯ୍ୟାଦାବନ୍ତ। ସେ ସଂର୍ପକରେ ସଂପୂର୍ଣ୍ଣ ନିଶ୍ଚିତ ଥିଲେ ମହାରାଣୀ।

କିନ୍ତୁ ଅକସ୍ମାତ୍ ଜଗନ୍ନାଥଙ୍କର ବାହୁଡା ବିଜୟ ସମ୍ବାଦ ମହାରାଣୀଙ୍କୁ ବ୍ୟତିବ୍ୟସ୍ତ କରିଦେଲା। ଲଜ୍ଜା, ଅପମାନ, ଆତ୍ମଗ୍ଳାନି, ଅସହିଷ୍ଣୁତା ଓ ଈର୍ଷା ଅସୂୟାରେ ସେ ମାନସିକ ଭାରସାମ୍ୟ ହରେଇ ବସିଲେ। ପାଗଳୀଙ୍କ ପରି ଦ୍ରୁତ ପଦପାତରେ ନିଜ କୋଠରୀକୁ ପ୍ରବେଶ କରି ଭିତର ପଟୁ ରୁଦ୍ଧ କରିଦେଲେ। ତଥାପି ରୁଦ୍ଧ ଦ୍ୱାର ଭେଦ କରି ତଥାପି ବଡଦାଣ୍ଡର କୋଳାହଳ ତାଙ୍କ କର୍ଣ୍ଣକୁହରକୁ

ପ୍ରବେଶ କରୁଥିଲା। ଦୁଇ ପାପୁଲି ଦୁଇ କର୍ଣ୍ଣରେ ଦେଇ ସେଇ ଅବାଞ୍ଛିତ କୋଳାହଳରୁ ସେ ଶକ୍ତି ପାଇବାର ନିଷ୍ଫଳ ପ୍ରଚେଷ୍ଟା କରୁଥିଲେ। ଏଥର ଆଉ ନିୟନ୍ତ୍ରଣ କରିପାରିଲେ ନାହିଁ ନିଜକୁ। ଦକ୍ଷିଣ ପାପୁଲିର ମଧ୍ୟମା ଆଙ୍ଗୁଳସ୍ଥିତ ହୀରକ ମୁଦ୍ରିକାଟିକୁ ଉନ୍ମତ୍ତଙ୍କ ପରି ତୀବ୍ର ଚୁମ୍ବନ ଦେବାରେ ଲାଗିଲେ। କେଇଟି ମୁହୂର୍ତ୍ତ ମାତ୍ର। ସବୁ ସ୍ତବ୍ଧ ହୋଇଗଲା। ବଡଦାଣ୍ଡର କୋଳାହଳ, ଇନ୍ଦ୍ରିୟାସକ୍ତ ଭାଗିରଥୀ ଦେବଙ୍କର ଉଚ୍ଛୁଙ୍ଖଳତା। ରାମଚନ୍ଦ୍ର ଦେବଙ୍କର ଅବଜ୍ଞା ଓ ବିଶ୍ୱାସଘାତକା। ଏଗୁଡିକ ତାଙ୍କୁ ଆଉ ଅତିଷ୍ଠ କରୁନଥିଲା। ସାରାଜୀବନ ପ୍ରତିଶୋଧର କୁହୁଳା ନିଆଁରେ ଛଟପଟ ହେଉଥିବା ତାଙ୍କର ଅତୃପ୍ତ ଆତ୍ମା ସ୍ୱଇଚ୍ଛାରେ ଚିରଦିନ ପାଇଁ ମହାନିଦ୍ରା ବରଣ କରିନେଇଗଲା।

ମହାରାଣୀଙ୍କର ଏ ମର୍ମନ୍ତୁଦ ପରିଣତି ସେ ପର୍ଯ୍ୟନ୍ତ ପହଞ୍ଚିପାରି ନଥିଲା ମହାରାଜା ରାମଚନ୍ଦ୍ର ଦେବଙ୍କ ନିକଟରେ। ଜଗମୋହନ ମଣ୍ଡପର ପତିତପାବନ ମୂର୍ତ୍ତି ପାଖରେ ହାତଯୋଡି ଦଣ୍ଡାୟମାନ ଥିଲେ ଓ ଦେଖିଥିଲେ ଗୋଟାଏ ଜାତିର ଆତ୍ମାକୁ। ତାର ହର୍ଷ ଉଲ୍ଲାସ, ଆନନ୍ଦ ବେଦନା ଓ ଜୟ ପରାଜୟର ଇସ୍ତାହାରକୁ। ଗୋଟାଏ ବର୍ଷର ବ୍ୟବଧାନ। ମନେ ହେଉଥିଲା ଯେମିତି ଅୟୁତ ଯୁଗ ଧରି ଜଗନ୍ନାଥ ଓଡ଼ିଆ ଜାତିଠୁଁ ଯୋଜନ ଯୋଜନ ଦୂରରେ ଗୋପ୍ୟ ହୋଇ ରହିଯାଇଛନ୍ତି। ଆଜି ସେ ବାହୁଡି ଆସିଛନ୍ତି। ଓଡ଼ିଆ ତାର ପ୍ରାଣସ୍ପନ୍ଦନ ଫେରି ପାଇଛି। ଯାହାର ଦର୍ଶନ ମାତ୍ରକେ ମୁମୂର୍ଷୁ ପ୍ରାଣରେ ଜୀଇବାର ଇଚ୍ଛା ଜାଗ୍ରତ ହୋଇ ଉଠେ ପୁଣି ତାରି ରଥଚକ୍ର ତଳେ ପଡି ମରିବାର କାମନା ନେଇ ଯୋଜନ ଯୋଜନ ଦୂରରୁ ସେ ଧାଇଁ ଆସେ। ଅଦ୍ଭୁତ ଏ ଦେବତା। ଅଶ୍ରୁତ ପୂର୍ବ ଏ ଜାତି। ଯେତେଦିନ ପର୍ଯ୍ୟନ୍ତ ଏ ଜୀବ ଅଛି ଏ ପିଣ୍ଡ ଅଛି, ଏ ଜାତିର ପରାଜୟ ନାହିଁ। ଏ ଜାତିର ମୃତ୍ୟୁ ନାହିଁ। ସେ ନିଜକୁ ଦୁର୍ବାର ଦୁର୍ବିନୀତ ଦୁର୍ଜେୟ ସାବ୍ୟସ୍ତ କରିଆସିଛି।

ରାମଚନ୍ଦ୍ର ଦେବଙ୍କ ମୁଗ୍ଧ କଣ୍ଠରୁ ସ୍ୱତଃ ନିସୃତ ହୋଇ ଆସିଲା -

ଏ ଜାତିକୁ ତମେ ଶଙ୍ଖରେ ପୁରେଇ ଚକ୍ର ଉହାଡ କରି ରଖ ହେ ମହାପ୍ରଭୁ।

*(ସୁରେନ୍ଦ୍ର ମହାନ୍ତିଙ୍କ 'ନୀଳଶୈଳ' ଓ 'ନୀଳାଦ୍ରି ବିଜୟ' ଆଧାରରେ ରଚିତ)*



**ଡ. ବାସନ୍ତୀ ମହାନ୍ତି** ଓଡ଼ିଆ କଥାସାହିତ୍ୟର ଅନ୍ୟତମ ପ୍ରଖର ଶିଳ୍ପୀ। ଛାଇ ଓ ଅନ୍ଧାରରେ ଥିବା ଦୁଃଖୀ ମଣିଷର କଥା କହିବାକୁ ତାଙ୍କ ଗଳ୍ପ ବ୍ୟାକୁଳ। ସମାଜର ନିମ୍ନବର୍ଗର ସଂଘର୍ଷ, ସନ୍ତାପ ଓ ସ୍ୱପ୍ନଭଂଗର କାହାଣୀରେ ଭରପୂର ତାଙ୍କର ଏହି ଗଳ୍ପଗୁଡ଼ିକ ଆମ ସମାନ୍ତରାଳ ଜୀବନର ଏକଏକ ଦସ୍ତାବିଜ୍।

ରାଜଜେମା ବିଲେଇ ଓ ଜୁଲି ପ୍ରସଙ୍ଗ, ପିତୃଋଣ, ଅଭିଯୁକ୍ତା, ସୁଲିଅପାର ଭାତୁଡ଼ି, ମା, ବାସନ୍ତୀ ମହାନ୍ତିଙ୍କ ନିର୍ବାଚିତ ଗଳ୍ପ, ଗୀତ୍ କୁଡ଼ିଆଣୀ, କୁନ୍ତୀ, ଉତ୍ତରଣ ଆଦି ଗଳ୍ପପୁସ୍ତକର ରଚୟିତା ଭାବେ ସେ ନିଜର ସ୍ୱତନ୍ତ୍ର ପାଠକଗୋଷ୍ଠୀ ନିର୍ମାଣ କରିଛନ୍ତି ।

ପ୍ରଗତି ଓ ପରମ୍ପରା, ପ୍ରଳୟ ପରର ଜୀବନ, ଦୃଷ୍ଟି ଓ ଦିଗନ୍ତ, ନାରୀ ନୀତି ନିୟତି, ଭୋକ ବିଳାସ ଆଦି ପ୍ରବନ୍ଧ ଓ ସ୍ତମ୍ଭରଚନା ପୁସ୍ତକର ମଧ୍ୟ ସେ ସ୍ରଷ୍ଟା।

ଅନ୍ୟ ପୁସ୍ତକଗୁଡ଼ିକ ମଧ୍ୟରେ ତାଙ୍କର ରହିଛି: ନୀଳଶୈଳର ପଦଚାରୀ, ସୁରେନ୍ଦ୍ର ମହାନ୍ତିଙ୍କ କଥାକୋଣାର୍କ, ଓଡ଼ିଶାର ଜାଲିଆନାୱାଲାବାଗ୍ ପାପଡ଼ାହାଣ୍ଡିରେ ଭାରତଛାଡ଼ ଆନ୍ଦୋଳନ, କଳାହାଣ୍ଡିର ଲୋକକଥା, ଭୂମିପୁତ୍ର ବଗା ପୂଜାରୀ, ଗାନ୍ଧୀଙ୍କୁ ଫେରାଇଆଣିବା... ଇତ୍ୟାଦି।


ISBN 978-93-89163-04-9



a timepass publication
SHORT STORY
cover design : saroj bal